

ଭଞ୍ଜବିହାର ବିଶ୍ୱବିଦ୍ୟାଳୟଠାରେ ଆୟୋଜିତ ପୂର୍ବାଞ୍ଚଳ ଯୁବ ଉତ୍ସବରେ ମାନ୍ୟବର ରାଜ୍ୟପାଳ, ଶ୍ରୀ ଯଜ୍ଞଦତ୍ତ ଶର୍ମା ଭାଷଣ ଦେଉଛନ୍ତି ।



ବିରୋଧିଳା ସାଇଫନ୍ ଓ ସେତୁ ଶିଳାନ୍ୟାସ ଉତ୍ସବରେ ସାଲେପୁର ହରିଚନ୍ଦନପୁରଠାରେ ଆୟୋଜିତ ଏକ ସାଧାରଣ ସଭାରେ ମୁଖ୍ୟମନ୍ତ୍ରୀ, ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ବୋଧନ ଦେଉଛନ୍ତି ।

# ଉତ୍କଳ ପ୍ରସଙ୍ଗ

୪୮ ଭାଗ ୬ଷ୍ଠ ସଂଖ୍ୟା ପୌଷ ୧୯୧୩ ଶକାବ୍ଦ ଜାନୁୟାରୀ ୧୯୯୨

## ସମ୍ପାଦନା ମଣ୍ଡଳୀ



ପ୍ରକାଶନ : ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଓଡ଼ିଶା ସରକାର, ଭୁବନେଶ୍ୱର ।

ବାର୍ଷିକ ଦେୟ : ଟ ୨୦.୦୦
ପ୍ରତି ଖଣ୍ଡ : ଟ ୨.୦୦

ମୁଦ୍ରଣ : ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ

(ଫଟୋଟାଇପ୍‌ସେଟିଂ ପଦ୍ଧତିରେ ଅକ୍ଷର ସଂଯୋଜିତ)

# ସୂଚୀ

# ଜାତୀୟ ସଙ୍ଗୀତ

"ଜନ-ଗଣ-ମନ-ଅଧିନାୟକ ଜୟ ହେ

ଭାରତ-ଭାଗ୍ୟ-ବିଧାତା

ପଞ୍ଜାବ-ସିନ୍ଧୁ-ଗୁଜୁରାଟ-ମରାଠା

ଦ୍ରାବିଡ଼-ଉତ୍କଳ-ବଙ୍ଗ

ବିନ୍ଧ୍ୟ-ହିମାଚଳ-ଯମୁନା-ଗଙ୍ଗା

ଉଚ୍ଛଳ ଜଳଧି ତରଙ୍ଗ

ତବ ଶୁଭ ନାମେ ଜାଗେ

ତବ ଶୁଭ ଆଶୀଷ ମାଗେ

ଗାହେ ତବ ଜୟ ଗାଥା

ଜନଗଣ-ମଙ୍ଗଳଦାୟକ ଜୟ ହେ,

ଭାରତ-ଭାଗ୍ୟ-ବିଧାତା

ଜୟ ହେ ଜୟ ହେ ଜୟ ହେ,

ଜୟ ଜୟ ଜୟ ଜୟ ହେ ।"

# ଭାରତର ସଂଶୋଧିତ ପ୍ରସ୍ତାବନା

ଭାରତୀୟ ସମ୍ବିଧାନର ପ୍ରସ୍ତାବନା (PREAMBLE) ବା ଉପକ୍ରମଣିକା ୪୨ତମ ସମ୍ବିଧାନ ସଂଶୋଧନ ବିଲ୍ ଅନୁଯାୟୀ ୧୯୭୬ ଡିସେମ୍ବର ୧୮ ତାରିଖରୁ ସଂଶୋଧିତ ହୋଇ କାର୍ଯ୍ୟକାରୀ ହେଉଛି ।

ତାହା ହେଲା :

"ଆମେ ଭାରତର ଜନସାଧାରଣ ଭାରତକୁ ଗୋଟିଏ ସାର୍ବଭୌମ, ଗଣତାନ୍ତ୍ରିକ, ଧର୍ମ ନିରପେକ୍ଷ, ସମାଜବାଦୀ, ସାଧାରଣତନ୍ତ୍ର ରୂପେ ଗଠନ କରିବା ନିମିତ୍ତ ଏବଂ ଏ ଦେଶର ସମସ୍ତ ନାଗରିକଙ୍କ ପାଇଁ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ନ୍ୟାୟ, ଚିନ୍ତା ଅଭିବ୍ୟକ୍ତି, ବିଶ୍ୱାସ, ଧର୍ମ ଓ ଉପାସନାର ସ୍ୱାଧୀନତା, ସାମାଜିକ ପ୍ରତିଷ୍ଠା ଓ ସୁଯୋଗ ଦିଗରେ ସମତା ହାସଲ କରିବା ତଥା ବ୍ୟକ୍ତି ବିଶେଷର ମର୍ଯ୍ୟାଦା ଓ ଜାତିର ଏକତା ଏବଂ ଅଖଣ୍ଡତା ପାଇଁ ନିଶ୍ଚିତ ବ୍ୟବସ୍ଥା କରି ସେମାନଙ୍କ ମଧ୍ୟରେ ଭ୍ରାତୃ ଭାବର ବିକାଶ ସାଧନ ନିମନ୍ତେ ଦୃଢ଼ ସଂକଳ୍ପ ହୋଇ ଆମ୍ଭମାନଙ୍କର ଏହି ସମ୍ବିଧାନ ସଭାରେ ଅଦ୍ୟ ୧୯୪୯ ମସିହା ନଭେମ୍ବର ମାସର ଷଡ଼ବିଂଶ ଦିବସରେ ଏତଦ୍ୱାରା ଏହି ସମ୍ବିଧାନକୁ ଅଙ୍ଗୀକୃତ, ଅଧିନିୟମିତ ଓ ଆତ୍ମାର୍ପିତ କରିଛୁ ।"



# ସାଧାରଣତନ୍ତ୍ର ଦିବସ ଉପଲକ୍ଷେ ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମାଙ୍କ ବାର୍ତ୍ତା

୪୩ତମ ସାଧାରଣତନ୍ତ୍ର ଦିବସ ପାଳନ ଉପଲକ୍ଷେ ଓଡ଼ିଶାର ଜନସାଧାରଣଙ୍କୁ ମୁଁ ମୋର ହାର୍ଦ୍ଦିକ ଅଭିନନ୍ଦନ ଓ ଶୁଭେଚ୍ଛା ଜ୍ଞାପନ କରୁଛି । ଏହି ରାଜ୍ୟର ଜନସାଧାରଣ ସବୁ ସମୟରେ ଭାରତବର୍ଷର ଐକ୍ୟ ପାଇଁ ଅଙ୍ଗୀକାରବଦ୍ଧ ହୋଇ ଆସିଛନ୍ତି । ଯୁଗ ଯୁଗ ଧରି ରାଷ୍ଟ୍ରୀୟ ଐକ୍ୟର ମହାନ୍ ଆଦର୍ଶରେ ଉଦ୍‌ବୁଦ୍ଧ ଓଡ଼ିଶାବାସୀ ଏହି ଆଦର୍ଶର ବିରୁଦ୍ଧାଚରଣ କରୁଥିବା ସମସ୍ତ ଶକ୍ତିକୁ ସବୁ ସମୟରେ ଦୃଢ଼ ଭାବରେ ପ୍ରତ୍ୟାଖ୍ୟାନ କରିଛନ୍ତି । ଆଞ୍ଚଳିକ ସଂହତି ପାଇଁ ଅତୀତରେ କୌଣସି ଲିଖିତ ସମ୍ବିଧାନ ନ ଥିଲେ ମଧ୍ୟ ଏହି ଭାବଧାରା ଆମର ହୃଦୟପଟରେ ଏପରି ଗଭୀର ଭାବରେ ଲିପିବଦ୍ଧ ହୋଇ ଆସିଛି ଯେ, ତାହା ଆମ ପାଇଁ ଅତି ପବିତ୍ର ଓ ଅଲଂଘନୀୟ । ଆଜି ଆମ ରାଷ୍ଟ୍ରର ଏକ ଲିଖିତ ସମ୍ବିଧାନ ରହିଛି । ଆଗାମୀ ବର୍ଷମାନଙ୍କରେ ଏହି ସମ୍ବିଧାନକୁ ସୁରକ୍ଷିତ ରଖିବାକୁ ଓ ସେଥିପାଇଁ ସର୍ବାନ୍ତଃକରଣରେ ଉଦ୍ୟମ କରିବାକୁ ହେବ ।

ଏହା କେବେହେଲେ ଏକ ଲଘୁ ଦାୟିତ୍ୱ ନୁହେଁ । ଦେଶର ସଂହତିକୁ ବ୍ୟାହତ କରିବା ଲାଗି କେତେକ ଅବାଞ୍ଛିତ ବ୍ୟକ୍ତି ଗଣତନ୍ତ୍ର–ଲବ୍ଧ ବ୍ୟକ୍ତି ସ୍ୱାଧୀନତାର ଅପପ୍ରୟୋଗ କରୁଛନ୍ତି । ବିଭିନ୍ନ ସଂସ୍କୃତି, ଧର୍ମ ଏବଂ ଭାଷାଭାଷୀ ସମସ୍ତ ବ୍ୟକ୍ତି ଏହି ଦେଶରେ ସବୁ ସମୟରେ ଏକ ବନ୍ଧୁତ୍ୱ–ପୂର୍ଣ୍ଣ ପରିବେଶ ମଧ୍ୟରେ ରହିଆସିଛନ୍ତି । ଏହାହିଁ ଭାରତବର୍ଷର ଶକ୍ତି ଏବଂ ବିଶ୍ୱ ସଭ୍ୟତା ପ୍ରତି ଆମର ଅନବଦ୍ୟ ଅବଦାନ । ଭାରତବାସୀ କ୍ଷୁଦ୍ର ଓ କ୍ଷଣିକ ଉନ୍ମାଦନାର ବଶବର୍ତ୍ତୀ ନ ହୋଇ ସବୁ ସମୟରେ ସତ୍ୟ, ଶାନ୍ତି ଏବଂ ବିଶ୍ୱର ଶାଶ୍ୱତ ନୀତି ଅନୁସରଣ କରି ଆସିଛନ୍ତି । ଆମର ମହାନ୍ ପୂର୍ବ–ସୂରୀମାନଙ୍କ ଦ୍ୱାରା ଅନୁସୃତ ଏହି ପରମ୍ପରାକୁ ବଜାୟ ରଖିବା ପାଇଁ ଆଜି ଆମକୁ ଦୃଢ଼ ସଂକଳ୍ପ ନେବାକୁ ହେବ ଏବଂ ଯେଉଁ ଶକ୍ତି କ୍ଷୁଦ୍ର ସ୍ୱାର୍ଥ ଏବଂ ଅଣବନ୍ଧୁଭାବାପନ୍ନ ବହିଃଶକ୍ତିର ପ୍ରଭାବରେ ଏହି ପରମ୍ପରାର ବିରୁଦ୍ଧାଚରଣ କରୁଛନ୍ତି, ସେମାନଙ୍କୁ ସମ୍ପୂର୍ଣ୍ଣ ରୂପେ ବିଲୋପ କରିବାକୁ ହେବ ।

ଭାରତବର୍ଷକୁ ଏପରି ଏକ ରାଷ୍ଟ୍ରରେ ପରିଣତ କରିବାକୁ ହେବ ଯେଉଁଠାରେ ଦାରିଦ୍ର୍ୟ ରହିବ ନାହିଁ, ସମସ୍ତଙ୍କ ପାଇଁ ଅଧିକ ସ୍ୱାସ୍ଥ୍ୟ ସେବା ଓ ଶିକ୍ଷାର ସମାନ ସୁବିଧା ସୁଯୋଗ ରହିବ, ସବୁ ଶ୍ରେଣୀର ନାଗରିକ ସମାନ ଅଧିକାର ଉପଭୋଗ କରିପାରିବେ, ମହିଳାମାନେ କୌଣସି ପକ୍ଷପାତ ବିଗ୍ରହର ଶିକାର ହେବେ ନାହିଁ ଏବଂ ସର୍ବୋପରି ଯୁବକ ଓ ଶିଶୁମାନେ ବର୍ତ୍ତମାନ ଅପେକ୍ଷା ସେମାନଙ୍କର ଉଜ୍ଜ୍ୱଳ ଭବିଷ୍ୟତ ସମ୍ପର୍କରେ ନିଶ୍ଚିତ ରହିପାରିବେ । ଏହି ଲକ୍ଷ୍ୟ ସାଧନ ପାଇଁ ଜନସାଧାରଣଙ୍କର ଅକୁଣ୍ଠ ସମର୍ଥନ ରାଜ୍ୟ ସରକାରଙ୍କୁ ମିଳିବା ଆବଶ୍ୟକ । ଏପରି ଜନସମର୍ଥନ ମିଳିବା ସମ୍ପର୍କରେ ମୁଁ ନିଃସନ୍ଦେହ । ଏହାଫଳରେ ଅଦୂର ଭବିଷ୍ୟତରେ ଏହି ରାଜ୍ୟର ଉଚ୍ଚ ସାଂସ୍କୃତିକ ପରମ୍ପରାର ସଂରକ୍ଷଣ ସହ ଜନସାଧାରଣଙ୍କର ସମୃଦ୍ଧି ଓ କଲ୍ୟାଣ ସାଧିତ ହୋଇପାରିବ ।

ଜୟହିନ୍ଦ୍

# ସାଧାରଣତନ୍ତ୍ର ଦିବସ ଉପଲକ୍ଷେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ବାର୍ତ୍ତା



ପବିତ୍ର ସାଧାରଣତନ୍ତ୍ର ଦିବସ ଉପଲକ୍ଷେ ରାଜ୍ୟବାସୀ ଭାଇ ଭଉଣୀମାନଙ୍କୁ ମୋର ଆନ୍ତରିକ ଶ୍ରଦ୍ଧା, ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି ।

ବୟାଳିଶ ବର୍ଷ ପୂର୍ବେ ଆଜିର ଏହି ଦିନରେ ଆମ ଦେଶର ସମ୍ବିଧାନ ଗୃହୀତ ହୋଇଥିଲା । ଏଥିରେ ବ୍ୟବସ୍ଥା ଖଞ୍ଜା ଯାଇଥିଲା ଯେ, ଗଣତାନ୍ତ୍ରିକ ଶାସନ ପ୍ରଣାଳୀ ମାଧ୍ୟମରେ ଜାତି, ଧର୍ମ ନିର୍ବିଶେଷରେ ଦେଶର ସବୁ ଲୋକ ସମାନ ସୁଖ ସୁବିଧା, ସମାନ ଅଧିକାର ଓ ସମାନ ନ୍ୟାୟ ପାଇବେ । ମାତ୍ର ସମ୍ବିଧାନ ଲାଗୁ ହେବାଠାରୁ ୪୨ ବର୍ଷ ବିତିଯାଇଥିଲେ ମଧ୍ୟ ଏ ସ୍ୱପ୍ନ ସ୍ୱପ୍ନରେ ହିଁ ରହିଛି । ଦେଶର ବହୁ ଅଞ୍ଚଳ ପଛୁଆ ହୋଇ ପଡ଼ିଛି । କୋଟି କୋଟି ଲୋକେ ଦାରିଦ୍ର୍ୟ ଓ ଅଶିକ୍ଷାରେ ସଢୁଥିଲା ବେଳେ, ଅନେକ ଲୋକଙ୍କ ପାଖରେ ସାମାନ୍ୟତମ ସୁବିଧା ଟିକକ ମଧ୍ୟ ପହଞ୍ଚିପାରିନାହିଁ । ଫଳରେ, ଆମ ଦେଶର ଶାସନ ବ୍ୟବସ୍ଥା ଏକ ହାସ୍ୟାସ୍ପଦ ଓ ଲଜ୍ଜାଜନକ ଅବସ୍ଥାରେ ପହଞ୍ଚିଛି । ଉନ୍ନୟନମୂଳକ କାର୍ଯ୍ୟ ଦ୍ୱାରା ଲୋକଙ୍କର ପୁଞ୍ଜିଭୂତ ଅସନ୍ତୋଷକୁ ଦୂର କରିବାକୁ ପଡ଼ିବ । ନଚେତ୍ ଏହା ଦେଶର ଶାସନ ବ୍ୟବସ୍ଥା ପ୍ରତି ଅନାସ୍ଥା ଭାବ ସୃଷ୍ଟି କରିବ । ପୃଥିବୀର ଅନ୍ୟତମ ଶକ୍ତିଶାଳୀ ରାଷ୍ଟ୍ର ସୋଭିଏତ୍ ୟୁନିୟନ୍‌ରେ ଏଇମାତ୍ର ଘଟିଯାଇଥିବା ଘଟଣା ସମସ୍ତଙ୍କର ଆଖି ଖୋଲି ଦେଇଛି ।

ମୁଁ ସବୁବେଳେ ମୋ ନିଜ ରାଜ୍ୟ ଓଡ଼ିଶାର ଉଦାହରଣ ଦେଇଥାଏ । ଏ ରାଜ୍ୟଟି ଏପରି ଏକ ରାଜ୍ୟ, ଯାହା ଏକ ପକ୍ଷରେ ଦେଖିବାକୁ ଗଲେ, ପ୍ରଚୁର ପ୍ରାକୃତିକ ସମ୍ପଦରେ ପରିପୂର୍ଣ୍ଣ । ଖଣିଜ ସମ୍ପଦ, ବନ ସମ୍ପଦ ଓ ଜଳ ସମ୍ପଦ ଭରପୂର ହୋଇ ରହିଛି ଏ ରାଜ୍ୟରେ । ପରିଶ୍ରମୀ ଓ ବୁଦ୍ଧିମାନ୍ ଲୋକଙ୍କର ମଧ୍ୟ ଅଭାବ ନାହିଁ । ଏ ସବୁ ସତ୍ତ୍ୱେ, ଓଡ଼ିଶା ଭାରତର ଏକ ପଛୁଆ ଗରିବ ରାଜ୍ୟ । ସ୍ୱାଧୀନତାର ୪୫ ବର୍ଷ ପରେ ଓଡ଼ିଶାରେ ଗରିବ ଲୋକଙ୍କ ସଂଖ୍ୟା ୨ କୋଟିକୁ ଟପିଗଲାଣି ।

ଓଡ଼ିଶାରେ ଯେଉଁ ବିକାଶର ଧାରା ଆରମ୍ଭ ହୋଇଥିଲା, ପରବର୍ତ୍ତୀ କାଳରେ ତାହା ଆଗେଇ ପାରିନାହିଁ । ଗତ ୩୦ ବର୍ଷ ଧରି ରାଜ୍ୟର ଉନ୍ନତି ପାଇଁ ବିଶେଷ ଆଖିଦୃଶିଆ କାମ ହୋଇପାରିନାହିଁ । ଭାରତୀୟ ସ୍ତରରେ ବିଗତ ବର୍ଷମାନଙ୍କରେ କ୍ରମାଗତ ଶାସନଗତ କୁପରିଚାଳନା ଯୋଗୁଁ ଦେଶ ଋଣ ଯନ୍ତାରେ ପଡ଼ିଯାଇଛି । ବୈଦେଶିକ ମୁଦ୍ରା ପରିସ୍ଥିତି ଅତ୍ୟନ୍ତ ଉତ୍କଟ ଓ ଦେଶ ଘୋର ଆର୍ଥିକ ସଙ୍କଟର ସମ୍ମୁଖୀନ । ମାତ୍ର ଏଥିରେ ହତାଶ ଭାବର ସ୍ଥାନ ନାହିଁ । ଆମକୁ ଏହିଠାରୁ ହିଁ ଆରମ୍ଭ କରିବାକୁ ପଡ଼ିବ । ଓଡ଼ିଶାର ଜନସାଧାରଣ ରାଜ୍ୟର ସମୃଦ୍ଧ ବିକାଶ ପାଇଁ ଚିନ୍ତା ଆରମ୍ଭ କଲେଣି । ରାଜ୍ୟରେ ଶିଳ୍ପ ବିକାଶ ଦ୍ୱାରା ହିଁ ମୋର ଅଗଣିତ ପୁଅ ଝିଅମାନଙ୍କ ପାଇଁ ନିଯୁକ୍ତିର ସୁଯୋଗ ସୃଷ୍ଟି ହୋଇପାରିବ ।

ଏ ଦିଗରେ ସଫଳତା ପାଇଁ ଆନ୍ତରିକ ପ୍ରଚେଷ୍ଟା ଆରମ୍ଭ ହୋଇଛି । ଏହାର ଫଳ ସ୍ୱରୂପ, ମୋର ବିଦେଶ ଗସ୍ତ କାଳରେ ଓଡ଼ିଶାରେ ଦ୍ୱିତୀୟ ବିରାଟ ଇସ୍ପାତ କାରଖାନା ପ୍ରତିଷ୍ଠା ପାଇଁ ହୋଇଥିବା ରାଜିନାମା ବାସ୍ତବ ରୂପରେଖ ନେବାକୁ ଯାଉଛି । ରାଜ୍ୟରେ ଉଭୟ କୃଷି ଓ ଶିଳ୍ପର ବିକାଶ ପାଇଁ ବିଦ୍ୟୁତ୍ ଶକ୍ତିର ଆବଶ୍ୟକତାକୁ ଆଖି ଆଗରେ ରଖିବାକୁ ପଡ଼ିବ । ଏଥିପାଇଁ, ଆମେରିକାର ଏକ ପ୍ରସିଦ୍ଧ କମ୍ପାନୀର ସହଯୋଗରେ ଓଡ଼ିଶାରେ ଅତି ବଡ଼ ଧରଣର ତାପଜ ଶକ୍ତି ପ୍ରକଳ୍ପ ସ୍ଥାପନ କରିବା ପାଇଁ କାର୍ଯ୍ୟକ୍ରମ ମଧ୍ୟ ଆଗେଇ ଯାଇଛି । ଏହାଛଡ଼ା, କଳାହାଣ୍ଡି ଜିଲ୍ଲାରେ ଏକ ଆଲୁମିନା–ଆଲୁମିନିୟମ୍ କମ୍ପ୍ଲେକ୍ସ, ପାରାଦ୍ୱୀପ ବନ୍ଦରର ସମୂହ ଉନ୍ନତି, ତୈଳ ବିଶୋଧନାଗାର ପ୍ରତିଷ୍ଠା ଓ ଯଖପୁରା–ବାଂଶପାଣି ରେଳପଥର ନିର୍ମାଣ ପାଇଁ ସବୁ ପ୍ରକାରର କାର୍ଯ୍ୟକ୍ରମ ଆରମ୍ଭ ହୋଇଛି । ଆପଣମାନଙ୍କ ସଦିଚ୍ଛା ଓ ସହଯୋଗରେ ଏହି ସବୁ କାର୍ଯ୍ୟକ୍ରମ ପୂର୍ଣ୍ଣାଙ୍ଗ ହେଲେ ଭାରତର ଶିଳ୍ପ ମାନଚିତ୍ରରେ ଓଡ଼ିଶା ଏକ ଗୌରବମୟ ସ୍ଥାନ ଅଧିକାର କରିପାରିବ ।

ଏ ସବୁ ଉନ୍ନତି ସାଙ୍ଗକୁ ଆମକୁ ସାମାଜିକ ଉନ୍ନତି ଉପରେ ବିଶେଷ ନଜର ଦେବାକୁ ପଡ଼ିବ । ମୁଁ ସବୁବେଳେ କହିଆସିଛି, ଆମର ମା' ଭଉଣୀମାନଙ୍କର ଉନ୍ନତି ନହେଲା ପର୍ଯ୍ୟନ୍ତ ଏ ସବୁ ଉନ୍ନତିର କିଛି ମୂଲ୍ୟ ନାହିଁ । ସେଥିପାଇଁ ନୂତନ ପଞ୍ଚାୟତିରାଜ ବ୍ୟବସ୍ଥାରେ ମହିଳାମାନଙ୍କ ପାଇଁ ଶତକଡ଼ା ୩୦ ଭାଗ ସ୍ଥାନ ସଂରକ୍ଷଣ ରଖାଯାଇଛି । ଯେଉଁ ମା' ଭଉଣୀମାନେ ଏତେ ଦକ୍ଷତାର ସହିତ ଘର ଚଳାଇପାରୁଛନ୍ତି, ମୋର ଦୃଢ଼ ବିଶ୍ୱାସ, ସେମାନେ ଦକ୍ଷତାର ସହିତ ପଞ୍ଚାୟତ ସମିତି ଓ ଜିଲ୍ଲା ପରିଷଦ ମଧ୍ୟ ଚଳାଇପାରିବେ । ନାରୀମାନେ ପୁରୁଷମାନଙ୍କ ସହ ସବୁ କ୍ଷେତ୍ରରେ ସମକକ୍ଷ ହୋଇପାରିବେ । ଦେଶର ମହିଳାମାନଙ୍କ ସଂଖ୍ୟା ଅଧାଅଧି ହୋଇଥିବାରୁ, ସେମାନଙ୍କୁ ଅଧିକ କାଳ ଅବହେଳିତ ଅବସ୍ଥାରେ ରଖାଯିବା ସମାଜ ପାଇଁ ହାନିକାରକ ହେବ । ତେଣୁ ସେମାନଙ୍କ ଭିତରେ ଜାଗରଣ ଆଣି ତାଙ୍କୁ ନ୍ୟାଯ୍ୟ ଅଧିକାର ଓ ସୁଯୋଗ ଯୋଗାଇ ଦେବା ପାଇଁ ସର୍ବାଧିକ ଗୁରୁତ୍ୱ ଦିଆଯାଉଛି ।

ବନ୍ଧୁଗଣ, ଆମେ ବହୁ ପଥ ଅତିକ୍ରମ କରିସାରିଛୁ । ତଥାପି ଚାଲିବା ପାଇଁ ବହୁ ପଥ ବାକି ରହିଛି । ବହୁ ବାଧାବିଘ୍ନ ଆସିବ । ଆସନ୍ତୁ, ଆମେ ସମସ୍ତେ ସାଙ୍ଗହୋଇ ପାଦରେ ପାଦ ମିଳାଇ ଏକ ଉଜ୍ଜ୍ୱଳ ଭବିଷ୍ୟତ ଆଡ଼କୁ ଆଗେଇ ଚାଲିବା ।

ଜୟହିନ୍ଦ୍ ।



# ଜନରାଜ୍ୟ ଦିବସ ଉପଲକ୍ଷେ ରାଜ୍ୟ କ୍ରୀଡ଼ା, ସଂସ୍କୃତି, ଯୁବ କଲ୍ୟାଣ ଏବଂ ସୂଚନା ଓ ଲୋକ ସମ୍ପର୍କ ବିଭାଗ ମନ୍ତ୍ରୀ ଶ୍ରୀ ଶରତ କୁମାର କରଙ୍କ

# ବାର୍ତ୍ତା

ପବିତ୍ର ୪୩ତମ ଜନରାଜ୍ୟ ଦିବସ ଉପଲକ୍ଷେ ଓଡ଼ିଶାବାସୀଙ୍କୁ ମୁଁ ମୋର ହାର୍ଦ୍ଦିକ ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉ ଅଛି ।

ଗଣତାନ୍ତ୍ରିକ ପରମ୍ପରା ଓ ମାନବିକ ମୂଲ୍ୟବୋଧର ପ୍ରତୀକ ରୂପେ ପରିଗଣିତ ହୋଇ ଆସିଛି ଆମର ଏହି ପବିତ୍ର ଜନରାଜ୍ୟ ଦିବସ । ଆଜକୁ ୪୨ ବର୍ଷ ପୂର୍ବେ ଆମେ ଶପଥ ନେଇଥିଲେ ଯେ, ଗଣତାନ୍ତ୍ରିକ ଭିତ୍ତିରେ ଆମ ଦେଶକୁ ଏକ ସ୍ୱୟଂ ସମ୍ପୂର୍ଣ୍ଣ ରାଷ୍ଟ୍ର ରୂପେ ଗଢ଼ି ତୋଳିବାକୁ । ଆଜି ଆସମାନଙ୍କୁ ଯେଉଁ ସାଧାରଣ ଲକ୍ଷ୍ୟ ହାସଲ କରିବାକୁ ହେବ, ତାହା ହେଲା ଏକ ପ୍ରଗତିଶୀଳ, ସାର୍ବଜନୀନ ସଂହତି ଓ ସମନ୍ୱୟର ସୁରକ୍ଷା । ଏହାକୁ ହାସଲ କରିବାକୁ ହେଲେ ଆମ ସୁପ୍ତ ଜାତୀୟତାବୋଧକୁ ଜାଗ୍ରତ କରାଯିବା ଆବଶ୍ୟକ । ବର୍ତ୍ତମାନ ଦେଶରେ ଦେଖାଦେଇଥିବା ସାମ୍ପ୍ରଦାୟିକ ଦଙ୍ଗା ଓ ହିଂସାର ବିଭୀଷିକା ଯେପରି ଆମର ପୂର୍ବ ଗୌରବ, ପ୍ରାଚୀନ ସଂସ୍କୃତି, ଆଦର୍ଶ ଓ ମୈତ୍ରୀ ଭାବକୁ କ୍ଷୁର୍ଣ୍ଣ ନକରିବ ସେଥିପାଇଁ ଯୁବ ଓ ଛାତ୍ର ସମାଜ ସଦା ଜାଗ୍ରତ ରହିବା ଆବଶ୍ୟକ ।

ଅତଏବ ଆଜିର ଏହି ପ୍ରତିକୂଳ ପରିସ୍ଥିତିରେ ନୈତିକ ମୂଲ୍ୟବୋଧକୁ ରକ୍ଷା କରି, ନୂତନ ଭାରତ ନିର୍ମାଣ କରିବା ସଙ୍ଗେ ସଙ୍ଗେ ଦେଶର ସ୍ୱାଭିମାନକୁ ସମ୍ମାନ ଦେବାକୁ ଏହି ପୁଣ୍ୟ ତିଥିରେ ସମସ୍ତେ ପୁଣି ଥରେ ଶପଥ ନିଅନ୍ତୁ ।

ଜୟହିନ୍ଦ୍ ।

ସମ୍ପାଦକୀୟ.....

# ସାଧାରଣତନ୍ତ୍ର ଦିବସର ଅନୁଚିନ୍ତା

ପୃଥିବୀରୁ ରାଜତନ୍ତ୍ର ଲୋପ ପାଇଯାଇଛି । ମାର୍କସ୍‌ବାଦ ମଧ୍ୟ ପ୍ରାୟତଃ ସମାଧି ନେଇଛି ଏବଂ ଗଣତନ୍ତ୍ର ହିଁ ସର୍ବୋତ୍କୃଷ୍ଟ ପନ୍ଥା ରୂପେ ବିଶ୍ୱ ଦରବାରରେ ଆଜି ପ୍ରମାଣିତ ହୋଇଯାଇଛି । ୧୯୫୦ ମସିହା ଜାନୁଆରୀ ୨୬ ତାରିଖରେ ସ୍ୱାଧୀନ ଭାରତବର୍ଷର ସମ୍ବିଧାନ ପ୍ରଣୟନ ହୋଇ ଭାରତବର୍ଷକୁ ଏକ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ର ରୂପେ ଘୋଷଣା କରାଯାଇଥିଲେ ହେଁ ଗଣତାନ୍ତ୍ରିକ ଚେତନା ଆମ ଦେଶରେ ବହୁ ପୁରାତନ କାଳରୁ ରହିଆସିଛି । ସେଥିପାଇଁ ଆମର ମୁନି ଋଷିମାନେ କହିଯାଇଛନ୍ତି — 'ଲୋକାପବାଦଂ ଯଦି ବା ସିଦ୍ଧଂ, ନାଦରଣୀୟଂ, ନାଚରଣୀୟମ୍' ଅର୍ଥାତ୍ ଲୋକମାନଙ୍କ ଦ୍ୱାରା ଯାହା ସ୍ୱୀକୃତ ଓ ଗୃହୀତ ନୁହେଁ ତାହା ଭଲ କାମ ହେଲେ ମଧ୍ୟ କରିବା ଅବାଞ୍ଛନୀୟ । ଏପରିକି ସେଭଳି ଚିନ୍ତାଧାରାକୁ ଆଦର କରିବା ମଧ୍ୟ ଉଚିତ ନୁହେଁ ।

ଏହି ଲୋକାପବାଦ ଓ ଗଣତାନ୍ତ୍ରିକ ଚିନ୍ତାଧାରାକୁ ସମ୍ମାନ ଦେଇ ପ୍ରଜାନୁରଞ୍ଜନ ରାଜା ରାମଚନ୍ଦ୍ର ନିଜର ପ୍ରାଣପ୍ରିୟା ପତ୍ନୀ ସତୀ ଶିରୋମଣି ସୀତାଙ୍କୁ ତ୍ୟାଗ କରିଥିଲେ । ପୁଣ୍ୟଭୂମି ଭାରତବର୍ଷରେ ବହୁ ପୁରାତନ କାଳରୁ ରାଜତନ୍ତ୍ରରେ ମଧ୍ୟ ଗଣତାନ୍ତ୍ରିକ ପଦ୍ଧତିର ଶାସନ ପ୍ରଚଳିତ ଥିଲା । ଏହା ସେଥିର ଏକ ନମୁନା ମାତ୍ର । ଏତଦ୍ ବ୍ୟତୀତ ଲୋକ ପ୍ରତିନିଧି ନିର୍ବାଚିତ ହୋଇ ବିଭିନ୍ନ ଅଞ୍ଚଳ ଶାସନ କରିବା ଦୃଷ୍ଟାନ୍ତ ମଧ୍ୟ ରହିଛି । ଅତଏବ୍ ଭାରତବର୍ଷକୁ ପୃଥିବୀର ପ୍ରାଚୀନତମ ଗଣତନ୍ତ୍ର ରାଷ୍ଟ୍ର କହିବା କିଛି ଅତିରଞ୍ଜିତ ହେବ ନାହିଁ ।

ଏ ସବୁକୁ ବିଚାର କରି ଓଡ଼ିଶାରେ ରାମ ରାଜ୍ୟ ପ୍ରତିଷ୍ଠା କରିବା ଲକ୍ଷ୍ୟ ନେଇ ଆମ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ବର୍ତ୍ତମାନ କ୍ଷମତାର ବିକେନ୍ଦ୍ରୀକରଣ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି ।

କ୍ଷମତାର ବିକେନ୍ଦ୍ରୀକରଣ ନିମନ୍ତେ ଜିଲ୍ଲା ପରିଷଦ ଗଠନ କରିବା ପାଇଁ ବିଜୁବାବୁ ନିଷ୍ପତ୍ତି ନେଇ ପଞ୍ଚାୟତ ଓ ପୌରସଭାଗୁଡ଼ିକର ନିର୍ବାଚନ ପ୍ରକ୍ରିୟା ଆରମ୍ଭ କରିଛନ୍ତି । ମହିଳାମାନଙ୍କୁ ଉପଯୁକ୍ତ ପ୍ରତିନିଧିତ୍ୱ ଦେବା ନିମନ୍ତେ ତିରିଶ ଭାଗ ସ୍ଥାନ ସଂରକ୍ଷଣ କରି ଏକ ଐତିହାସିକ ନିଷ୍ପତ୍ତି ନେଇଛନ୍ତି । ଏଭଳି ଭାବରେ କ୍ଷମତାର ବିକେନ୍ଦ୍ରୀକରଣ ଦ୍ୱାରା ଲୋକଙ୍କ କ୍ଷମତା ଲୋକଙ୍କୁ ଦେଇ ଲୋକ ଶାସନ ପ୍ରତିଷ୍ଠା ପାଇଁ ବିଜୁବାବୁ ଉଦ୍ୟମ କରୁଥିବା ବେଳେ ଜାତୀୟ ସଂହତି ଆଜି ବିପନ୍ନ । ପଞ୍ଜାବ, ଜାମ୍ମୁ—କାଶ୍ମୀର ଓ ଆସାମରେ ଆଜି ବିଚ୍ଛିନ୍ନତାବାଦ ମୁଣ୍ଡ ଟେକିଛି । କାବେରୀ ଜଳ ବଣ୍ଟନକୁ କେନ୍ଦ୍ର କରି କର୍ଣ୍ଣାଟକ ଓ ତାମିଲନାଡୁ ମଧ୍ୟରେ ଗୁରୁତର ମତଭେଦ ହୋଇ ହିଂସାତ୍ମକ କାଣ୍ଡମାନ ସଙ୍ଘଟିତ ହେବାରେ ଲାଗିଛି । ଆନ୍ଧ୍ରପ୍ରଦେଶ, ମହାରାଷ୍ଟ୍ର, ମଧ୍ୟପ୍ରଦେଶ ଓ ଦକ୍ଷିଣ ଓଡ଼ିଶାରେ ନକ୍ସାଲପନ୍ଥୀମାନେ ସକ୍ରିୟ ହୋଇ ଉଠିଛନ୍ତି । ଝାଡ଼ଖଣ୍ଡ ଓ ବୋଡ଼ୋ ରାଜ୍ୟ ପାଇଁ ମଧ୍ୟ ଆନ୍ଦୋଳନ ଅବ୍ୟାହତ ରହିଛି । ଏ ସବୁ ସମସ୍ୟାର ମୁଖ୍ୟ କାରଣ ହେଲା ଅର୍ଥନୈତିକ ଓ ଆଞ୍ଚଳିକ ବୈଷମ୍ୟ । ତେଲିଆ ମୁଣ୍ଡରେ ତେଲ ଢାଳିବା ପରି ଉନ୍ନତ ରାଜ୍ୟଗୁଡ଼ିକ କେନ୍ଦ୍ରରୁ ଅଧିକ ସହାୟତା ପାଉଥିବା ବେଳେ ପଛୁଆ ରାଜ୍ୟଗୁଡ଼ିକ ଆବଶ୍ୟକୀୟ ଆର୍ଥିକ ସହାୟତା ପାଇପାରୁନାହାନ୍ତି । ସେଥିପାଇଁ ଆମ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ କେନ୍ଦ୍ର ନିକଟରେ ଯଥାର୍ଥ ଦାବୀ ଉପସ୍ଥାପନ କରି ଖଣିଜ ସମ୍ପଦ ବାବଦ ରୟାଲଟି ଅର୍ଥ ନିୟନ୍ତ୍ରଣ କରିବାର ଅଧିକାର ରାଜ୍ୟ ସରକାରମାନଙ୍କୁ ମିଳିବା ଉଚିତ ବୋଲି କହିଛନ୍ତି । ରାଜ୍ୟଗୁଡ଼ିକୁ କେନ୍ଦ୍ରର ଉପଗ୍ରହ ବୋଲି ବିଚାର ନକରି ରାଷ୍ଟ୍ର ସଙ୍ଘୀୟ ବ୍ୟବସ୍ଥା କିପରି ସୁଚାରୁ ରୂପେ କାର୍ଯ୍ୟ କରିବ ଏବଂ ରାଜ୍ୟମାନେ ପ୍ରାକୃତିକ ସମ୍ପଦ ଓ ସମ୍ବଳକୁ ବିନିଯୋଗ କରି ନିଜ ନିଜର ଉନ୍ନତି ସାଧନ କରିପାରିବେ, ତା' ଉପରେ ବିଜୁବାବୁ ଗୁରୁତ୍ୱ ଆରୋପ କରିଛନ୍ତି । ଏ ସବୁ ବିଷୟ ପ୍ରତି ଦୃଷ୍ଟି ଦେଇ ଆମ ସମ୍ବିଧାନରେ ଆବଶ୍ୟକୀୟ ପରିବର୍ତ୍ତନ ଆଣି ବିଭିନ୍ନତା ଭିତରେ ଐକ୍ୟ ପ୍ରତିଷ୍ଠା କରିବାକୁ ହେବ । ବିଜୁବାବୁଙ୍କର ଏହି ବାସ୍ତବ ଚିନ୍ତାକୁ ଏଡ଼େଇ ଦେଲେ ଭବିଷ୍ୟତରେ ଆମକୁ ଅନୁତାପ କରିବାକୁ ହେବ, ସେଥିରେ ସନ୍ଦେହ ନାହିଁ ।

ଏହା ସାଙ୍ଗକୁ ଆଉ ଏକ ମୁଖ୍ୟ ବିଷୟ ହେଉଛି, ଆମେ ସମସ୍ତେ କେବଳ ଆମର ସାମ୍ବିଧାନିକ ଅଧିକାର ସାବ୍ୟସ୍ତ କରିବା ପାଇଁ ଗୁରୁତ୍ୱ ଦେଉଛୁ । ଆମେ ଆମର ଅଧିକାର ସାଙ୍ଗରେ ଆମର କର୍ତ୍ତବ୍ୟ ସମ୍ପର୍କରେ ମଧ୍ୟ ସଚେତନ ହେବା ଆବଶ୍ୟକ । ଆମେ ଆମର ଦାୟିତ୍ୱ ସମ୍ପର୍କରେ ସଚେତନ ହୋଇ ଏକ ନୂତନ ବାତାବରଣ ସୃଷ୍ଟି କରିବାକୁ ହେବ ଏବଂ ଗଣତନ୍ତ୍ରର ସୁରକ୍ଷା ପାଇଁ ଉତ୍ସର୍ଗୀକୃତ ଉଦ୍ୟମ କରିବାକୁ ହେବ, — ଏହା ହିଁ ଆଜିର ଏହି ପବିତ୍ର ଦିବସର ଅନୁଚିନ୍ତା ।

# ଅଷ୍ଟମ ଯୋଜନା ଓ ଆଞ୍ଚଳିକ ବୈଷମ୍ୟ ଦୂରୀକରଣ

ଶ୍ରୀ ବିଜୁ ପଟ୍ଟନାୟକ

ଜାତୀୟ ଅର୍ଥନୀତି ଓ ଏହାର ପୁନର୍ବିନ୍ୟାସ ସମ୍ପର୍କରେ ଜାତୀୟ ଉନ୍ନୟନ ପରିଷଦରେ ଆଲୋଚନା କଲାବେଳେ ସାଧାରଣତଃ ଦୃଷ୍ଟି ଆଢୁଆଳରେ ରହି ଯାଉଥିବା କେତେକ ବିଷୟରେ ଆମେ ସଚେତନ ହେବା ଆବଶ୍ୟକ । ଶୀତଳ ଯୁଦ୍ଧର ଅବସାନ ତଥା ୟୁରୋପ ଏବଂ ସୋଭିଏତ୍ ୟୁନିଅନ୍‌ରେ ରାଜନୈତିକ ଓ ଅର୍ଥନୈତିକ ପରିବର୍ତ୍ତନ ସମ୍ପ୍ରତି ଭାରତୀୟ ଅର୍ଥନୀତି ସମ୍ପର୍କୀୟ ପ୍ରତ୍ୟେକ ଆଲୋଚନାର ମୌଳିକ ଭିତ୍ତି ହେବା ସ୍ୱାଭାବିକ । ଶୀତଳ ଯୁଦ୍ଧର ଅବସାନ ଆକସ୍ମିକ ବା ଅପରିକଳ୍ପିତ ନୁହେଁ । ଫ୍ରାନ୍‌ସିସ୍ ଫୁକୁୟାମାଙ୍କର ୧୯୮୯ ମସିହାରେ ପ୍ରକାଶିତ ଏକ ସାରଗର୍ଭକ ନିବନ୍ଧରେ ସେ ଲେଖିଥିଲେ ଯେ ବାସ୍ତବ ଦୃଷ୍ଟିକୋଣରୁ ମାର୍କସ୍‌ବାଦ ଓ ଲେନିନ୍‌ବାଦ ଏକ ମୃତ ଆଦର୍ଶ ଓ ଭବିଷ୍ୟତରେ ଆନ୍ତର୍ଜାତିକ ସମ୍ପର୍କ ପରିବର୍ଦ୍ଧିତ ବାଣିଜ୍ୟିକ ସମ୍ପର୍କ ଉପରେ ହିଁ ନିର୍ଭରଶୀଳ ହେବ । ସେ ପୁଣି ଲେଖିଥିଲେ ଯେ ମାର୍କସ୍‌ବାଦ ଓ ଲେନିନ୍‌ବାଦର ବିଲୋପ ଫଳ ସୃଷ୍ଟି ହେବା ଶୂନ୍ୟ ସ୍ଥାନ ଧର୍ମାନ୍ଧ ମୌଳିକବାଦ ଅଥବା ଜାତିବାଦ ସମର୍ଥକଙ୍କ ଦ୍ୱାରା ପରିପୂରଣ ହେବାର ଆଶଙ୍କା ରହିଛି । ବାସ୍ତବରେ ସମଗ୍ର ବିଶ୍ୱରେ ଆଜି ଏହା ହିଁ ଘଟୁଛି । ତେଣୁ କମ୍ୟୁନିଜିମ୍ ଏକ ରାଜନୈତିକ ପଦ୍ଧତି ରୂପେ ବିଲୁପ୍ତ ହୋଇଥିବା ଯୋଗୁଁ ପୃଥିବୀର ଅବସ୍ଥା ଯେ ଆଜି ଅପେକ୍ଷାକୃତ ଉତ୍ତମ ହୋଇଯାଇଛି, ଏହା ଭାବିବା ଭୁଲ୍ । ଏହା ବଦଳରେ ଉଦାରତା ଓ ମାନବବାଦର ବିରୋଧୀ ଶକ୍ତିମାନେ ଅଧିକ ଶକ୍ତିଶାଳୀ ହୋଇ ଗୁରୁତର ସମସ୍ୟା ସୃଷ୍ଟି କରିବାକୁ ଯାଉଛନ୍ତି । ଯୋଜନା କମିଶନ୍‌ର ଦିଗ୍‌ଦର୍ଶକ ପତ୍ରରେ ଉଲ୍ଲିଖିତ ସାମ୍ପ୍ରତିକ ଘଟଣାବଳୀକୁ କେବଳ ଅର୍ଥନୈତିକ ଦୃଷ୍ଟିକୋଣରୁ ବିଶ୍ଳେଷଣ କରିବା ସମୀଚୀନ ନୁହେଁ । ଆମକୁ ସ୍ମରଣ କରିବାକୁ ହେବ ଯେ ଆମକୁ ଏହି ନୂତନ ରାଜନୈତିକ ଶକ୍ତିର ମୁକାବିଲା କରିବାକୁ ହେବ । ନୂତନ ଅର୍ଥନୈତିକ ନୀତି, ରାଜନୈତିକ ପରିଚାଳନାର ନୂତନ କୌଶଳ ସହ ସମତାଳରେ ଗତି କରିବା ଏକାନ୍ତ ଆବଶ୍ୟକ । ନୂତନ ରାଜନୈତିକ କୌଶଳକୁ ଗୁରୁତ୍ୱ ନଦେଲେ ଭାରତୀୟ ରାଷ୍ଟ୍ରୀୟତା ପ୍ରତି ଆହ୍ୱାନର ଉପଯୁକ୍ତ ମୁକାବିଲା କରିବା ସମ୍ଭବପର ହେବ ନାହିଁ । କେବଳ ଅର୍ଥନୈତିକ ମତବାଦ ବା ସିଦ୍ଧାନ୍ତ ଯୋଗୁଁ ନୁହେଁ, ସଙ୍ଘୀୟ ରାଷ୍ଟ୍ର ବ୍ୟବସ୍ଥା ପରିଚାଳନାର ରାଜନୈତିକ ବିଫଳତା ଯୋଗୁଁ ସୋଭିଏତ୍ ୟୁନିଅନ୍ ଆଜି ଭୁଶୁଡ଼ି ପଡ଼ିଛି । ସାମ୍ପ୍ରତିକ ଘଟଣାବଳୀକୁ ଗୌଣ ମନେ ନକରି ଏପରି ଏକ ନୂତନ କୌଶଳ ଆମକୁ ଅବଲମ୍ବନ କରିବାକୁ ପଡ଼ିବ, ଯାହା ଫଳରେ କି ବିଭିନ୍ନ ଅଞ୍ଚଳରେ ବାସ କରୁଥିବା ବିଭିନ୍ନ ଭାଷାଭାଷୀ ଲୋକ ଓ ବିଭିନ୍ନ ଧର୍ମାବଲମ୍ବୀମାନେ ନିଜକୁ ଭାରତୀୟ ରୂପେ ପରିଚିତ କରିବାକୁ ଉଦ୍‌ବୁଦ୍ଧ ଏବଂ ଅନୁପ୍ରାଣିତ ହେବେ । ଆମେ ସମ୍ପୂର୍ଣ୍ଣ ରୂପେ ଏକ ନୂତନ ଅର୍ଥନୈତିକ ବ୍ୟବସ୍ଥା ଅବଲମ୍ବନ କରିବାକୁ ଯାଉଥିବା ଶୁଭଙ୍କର, କିନ୍ତୁ ଆମର ଜାତୀୟ ସଂହତିକୁ ବିପନ୍ନ କରିଥିବା ଆଞ୍ଚଳିକ ବୈଷମ୍ୟ, ଏହି ନୂତନ ଅର୍ଥନୈତିକ ପଦ୍ଧତି ଦ୍ୱାରା ଯେପରି ବୃଦ୍ଧି ନପାଏ, ସେ ଦିଗରେ ଆମକୁ ନିର୍ଦ୍ଦିଷ୍ଟ ନିଷ୍ପତ୍ତି ଗ୍ରହଣ କରିବାକୁ ହେବ ।

ନୀତିଗତ ଭାବରେ, ଆମର ଯୋଜନା ପ୍ରଣୟନ କଲାବେଳେ ଆଞ୍ଚଳିକ ଉନ୍ନୟନର ସମତା ରକ୍ଷା ପ୍ରତି ଆମକୁ ଅଗ୍ରାଧିକାର ଦେବାକୁ ହେବ । ଏ ଦିଗରେ ଆମେ ବିଫଳ ହେଲେ, ଅଷ୍ଟମ ଯୋଜନା ଶେଷ ବେଳକୁ ବିଭିନ୍ନ ରାଜ୍ୟର ଅର୍ଥନୈତିକ ଅଭିବୃଦ୍ଧି କ୍ଷେତ୍ରରେ ଗୁରୁତର ବୈଷମ୍ୟ ସୃଷ୍ଟି ହେବ । ଆପେକ୍ଷିକ ଭାବେ ଯେଉଁ ରାଜ୍ୟଗୁଡ଼ିକର ପ୍ରଗତି ମନ୍ଥର ହେବ ସେହି ସବୁ ରାଜ୍ୟବାସୀଙ୍କର ପ୍ରତି ଯେ କୌଣସି ଅନ୍ୟାୟ ଆଚରଣ କରାଯାଇ ନାହିଁ, ସେ ବିଷୟରେ ସେମାନଙ୍କର ହୃଦ୍‌ବୋଧ କରାଇବା କଷ୍ଟସାଧ୍ୟ ହେବ । ସମୃଦ୍ଧିର ହାର ପ୍ରାକୃତିକ ସମ୍ପଦଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ହେବା ସମ୍ଭବପର ନୁହେଁ । କିନ୍ତୁ ପ୍ରାକୃତିକ ବୈଭବର ଉପଯୁକ୍ତ ବିନିଯୋଗ ପାଇଁ ଆବଶ୍ୟକୀୟ ଅର୍ଥ ବ୍ୟବସ୍ଥା ନହୋଇପାରିଲେ ଅଥବା ଉନ୍ନତ ଯୋଗାଯୋଗ ବ୍ୟବସ୍ଥା ଅଭାବ ଯୋଗୁଁ କେତେକ ଅଞ୍ଚଳର ଅଧିବାସୀଙ୍କୁ ଏହି ସମ୍ପଦର ସୁଫଳ ନମିଳିଲେ ବା ସମୃଦ୍ଧ ଓ ଉନ୍ନତ ରାଜ୍ୟଗୁଡ଼ିକର ସୁବିଧା ଓ ଉତ୍ପାଦନ ଭିତ୍ତିଭୂମି ସହ ପଛୁଆ ରାଜ୍ୟଗୁଡ଼ିକ ତୁଳନୀୟ ହୋଇନଥିବାରୁ ସେଗୁଡ଼ିକର ଉନ୍ନୟନ ଉପେକ୍ଷିତ ହେଲେ ଭବିଷ୍ୟତରେ ରାଷ୍ଟ୍ରର ସଂହତି ଓ ଏକତା ବିପର୍ଯ୍ୟସ୍ତ ହେବ ।

ସରକାରୀ ଉଦ୍ୟୋଗର ଅର୍ଥ ବିନିଯୋଗ ମୁଖ୍ୟତଃ ଭିତ୍ତିଭୂମି ପର୍ଯ୍ୟବସିତ ହେବା ଉଚିତ — ଏ ସମ୍ପର୍କରେ ଯୋଜନା କମିଶନଙ୍କ

ହ ମୁଁ ସମ୍ପୂର୍ଣ୍ଣ ଏକମତ । କିନ୍ତୁ ପ୍ରକୃତ ସମସ୍ୟା ହେଉଛି, ଜ୍ୟଗୁଡ଼ିକର ଉନ୍ନୟନ ଶକ୍ତି ବିଷୟ ବିସ୍ତାର କରି ଅର୍ଥ ଆବଣ୍ଟନ ଯିବ ନା ରୀତିଗତ ନିୟମାବଳୀ ଭିତ୍ତିରେ ଅର୍ଥ ମଞ୍ଜୁର ଯିବ । ଭିତ୍ତିଭୂମିର ବିକାଶ ପାଇଁ ଆବଶ୍ୟକୀୟ ମୁଖ୍ୟ ଭାଗ ଯଥା–ଜଳସେଚନ, ଶକ୍ତି ଓ ଯୋଗାଯୋଗର ଉନ୍ନୟନ ଶି ରାଜ୍ୟମାନଙ୍କୁ କେନ୍ଦ୍ରୀୟ ସହାୟତା ନିର୍ଦ୍ଧାରଣର ପୁରୁଣା ପଦ୍ଧତି କାମୀ ହୋଇଗଲାଣି । ବର୍ତ୍ତମାନ ଖାଦ୍ୟ ଉତ୍ପାଦନ ବହୁଗୁଣିତ ହବା ଆବଶ୍ୟକ । ସେହିପରି ଦେଶରେ ବହୁ ଅଧିକ ମେଗାୱାଟ୍ ଦ୍ୟୁତ୍ ଶକ୍ତି ଉତ୍ପାଦନ ଓ ଯଥେଷ୍ଟ ଅଧିକ କିଲୋମିଟରର ରାସ୍ତା ଓ ଲପଥ ନିର୍ମାଣର ଆବଶ୍ୟକତା ରହିଛି । ତେଣୁ ପ୍ରଶ୍ନ ହେଉଛି ଶର ବୃହତ୍ତମ କଲ୍ୟାଣ ସାଧନ ପାଇଁ ଆବଶ୍ୟକ ହେଉଥିବା ହି ଅଭିବୃଦ୍ଧି ସ୍ୱଳ୍ପ ସମୟ ଏବଂ କମ୍ ଖର୍ଚ୍ଚରେ କିପରି ସମ୍ଭବପର ହବ । ଯଦି ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ଉନ୍ନୟନକୁ ଅଧିକ ବ୍ୟାପକ ରିବା ଅଥଚ ଏହା ସର୍ବାଧିକ ମୂଲ୍ୟ ପ୍ରଭାବକ ହୋଇପାରିବା ଭଳି ମଦର କ୍ଷେତ୍ର ଚିହ୍ନଟ କରାଯାଇ ପାରିବ ତେବେ ଏହାକୁ ରାଜ୍ୟ ଇଁ ଅନୁମୋଦିତ ଯୋଜନା ମଧ୍ୟରେ ସୀମିତ ନରଖି ଏଥିପାଇଁ ବଶ୍ୟକ ଅର୍ଥ ବିନିଯୋଗ ପାଇଁ ପନ୍ଥା ନିର୍ଦ୍ଧାରଣ କରିବାକୁ ଡ଼ିବ । ଏହି ପ୍ରସ୍ତାବକୁ ଅଧିକ ବିଶ୍ଳେଷଣ କରାଯାଇପାରେ । ଥା–ମୁଁ ଦୁଃଖର ସହ ପ୍ରକାଶ କରୁଛି ଯେ କୃଷି ଉତ୍ପାଦନ ର୍କରେ ଯୋଜନା କମିଶନ୍‌ଙ୍କର ଆଶାବାଦ ସହ ମୁଁ ସମ୍ପୂର୍ଣ୍ଣ କମତ ହୋଇପାରୁନି । ଧାନ ଓ ଗହମ ଉତ୍ପାଦନ କ୍ଷେତ୍ରରେ । ଯଥେଷ୍ଟ ଅଗ୍ରଗତି ସମ୍ଭବପର ହୋଇଛି ଏହା ସ୍ୱୀକାର୍ଯ୍ୟ, କିନ୍ତୁ ଗାମୀ ଦିନଗୁଡ଼ିକରେ କୃଷି ଉତ୍ପାଦନ କ୍ଷେତ୍ରରେ ପଛରେ ହିଥିବା ରାଜ୍ୟଗୁଡ଼ିକର କୃଷି ଉତ୍ପାଦନ ବୃଦ୍ଧି ନହେଲେ ଏହି ତୀୟ ଅଭିବୃଦ୍ଧି ନିଶ୍ଚିତ ରୂପେ ବ୍ୟାହତ ହେବ । ପଞ୍ଜାବ ଓ ରିଆନାରେ କୃଷି ଉତ୍ପାଦନର ସାଫଲ୍ୟ ସହ ପୂର୍ବାଞ୍ଚଳ ଜ୍ୟଗୁଡ଼ିକର ଏ ଦିଗରେ ବିଫଳତାକୁ ତୁଳନା କରିବା ଆଜିର ଏକ ଫ୍ୟାସନ୍‌ରେ ପରିଣତ ହୋଇଛି । କିନ୍ତୁ ଏପରି ସମାଲୋଚନା ଲାବେଳେ ଗୋଟିଏ ବିଷୟ ସମସ୍ତେ ଭୁଲି ଯାଆନ୍ତି ଯେ ଏହି ଭୟ ରାଜ୍ୟର ପ୍ରାୟ ସମସ୍ତ ଚାଷ ଜମି ଜଳସେଚିତ । ଅବିଭକ୍ତ ଞ୍ଜାବରେ ଜଳସେଚନକୁ ଅଗ୍ରାଧିକାର ଦିଆଯାଇଥିଲା ଏବଂ ଭାଜନ ପରେ ମଧ୍ୟ ଏହା ଅବ୍ୟାହତ ରହିଲା । କିନ୍ତୁ ତୁଳନାତ୍ମକ ବେ ପୂର୍ବାଞ୍ଚଳ ରାଜ୍ୟଗୁଡ଼ିକର କୃଷି କ୍ଷେତ୍ରର ମାତ୍ର ଶତକଡ଼ା ୦ ଭାଗରେ ଜଳସେଚନର ସୁବିଧା ରହିଛି । ଜଳସେଚିତ ଓ ଜଳସେଚିତ ଜମିର ଉତ୍ପାଦିକା ଶକ୍ତି ସମତୁଲ ହେବା ମ୍ଭବପର ନୁହେଁ । ଜଳସେଚନ କ୍ଷେତ୍ରରେ ଥିବା ଅସାମଞ୍ଜସ୍ୟକୁ ରୀକରଣ ଏପରିକି ହ୍ରାସ କରିଦେଲେ ଆଗାମୀ ଦ୍ୱିଦଶନ୍ଧି ମଧ୍ୟରେ ର୍ବାଞ୍ଚଳ ରାଜ୍ୟଗୁଡ଼ିକର ପରିବର୍ଦ୍ଧିତ ଉତ୍ପାଦନ କ୍ଷେତ୍ରରେ ଏକ ମୁଖ୍ୟ ମିକା ଗ୍ରହଣ କରିପାରିବେ । କିନ୍ତୁ ଜଳସେଚନ ବ୍ୟବସ୍ଥାର ମ୍ପ୍ରସାରଣକୁ ରାଜ୍ୟ ଯୋଜନା ମଧ୍ୟରେ ସୀମିତ ରଖି ଏହାର ଉନ୍ନୟନ ପାଇଁ ଫଳପ୍ରଦ ଉଦ୍ୟମ ଗ୍ରହଣ ନକଲେ ଦାରିଦ୍ର୍ୟ ଓ ବୈଷମ୍ୟ ଦୀର୍ଘସ୍ଥାୟୀ ହୋଇ ରହିବ । ଅଧିକନ୍ତୁ ବର୍ଦ୍ଧିତ ଜନସଂଖ୍ୟା ଫଳରେ ଆବଶ୍ୟକ ହେବା ଅଧିକ ଖାଦ୍ୟଶସ୍ୟ ଉତ୍ପାଦନ କ୍ଷେତ୍ରରେ ଆମେ ପୁରାପୁରି ବିଫଳ ହେବା । ଅତି ଉତ୍ତମ ପାଳକ ହେବା ଅଥବା ପରିସଂଖ୍ୟାନ ଚାତୁରୀ ଯୋଗୁଁ ଅଭୂତପୂର୍ବ ଉତ୍ପାଦନ ବୃଦ୍ଧି ପାଇଥିବା କେତୋଟି ବର୍ଷକୁ ବାଦ ଦେଇ ଯଦି ସମୀକ୍ଷା କରାଯାଏ, ଏହା ସ୍ପଷ୍ଟ ରୂପେ ପ୍ରତୀୟମାନ ହେବ ଯେ ୧୯୮୦–୮୧ ଠାରୁ ୧୯୮୭–୮୮ ମଧ୍ୟରେ ଗହମ ଉତ୍ପାଦନ ବୃଦ୍ଧିର ହାର ଜନସଂଖ୍ୟା ବୃଦ୍ଧି ହାର ସହ ପ୍ରାୟ ସମାନ ହୋଇଥିବା ବେଳେ ଧାନ ଉତ୍ପାଦନ ହାର ସମତୁଲ୍ୟ ଭାବେ ବୃଦ୍ଧି ପାଇନାହିଁ । ଡାଲି ଜାତୀୟ ଶସ୍ୟର ଉତ୍ପାଦନ ଗତ କିଛି ବର୍ଷ ଧରି ଅପରିବର୍ତ୍ତିତ ରହିଥିବା ବେଳେ ନୀରସ ଖାଦ୍ୟଶସ୍ୟର ଉତ୍ପାଦନ ହ୍ରାସ ପାଉଛି । ଧାନ ଓ ଗହମର ସାମ୍ପ୍ରତିକ ଉତ୍ପାଦନ ପରିସଂଖ୍ୟାନ ଆମ ମନରେ ଏହି ଭ୍ରାନ୍ତ ଧାରଣା ସୃଷ୍ଟି କରିବା ଉଚିତ ନୁହେଁ ଯେ ଆଗାମୀ ଦୀର୍ଘକାଳ ପାଇଁ କୃଷି ଉତ୍ପାଦନ ବୃଦ୍ଧିର ହାର ସୁନିଶ୍ଚିତ ଭାବେ ବଜାୟ ରହିବ ।

କୃଷି କ୍ଷେତ୍ରରେ ଯାହା ସତ୍ୟ ତାହା ଅନ୍ୟାନ୍ୟ ଉନ୍ନୟନ ଭିତ୍ତିଭୂମି ସୃଷ୍ଟି ଓ ଅର୍ଥନୈତିକ ଅଭିବୃଦ୍ଧି କ୍ଷେତ୍ରରେ ମଧ୍ୟ ପ୍ରଯୁଜ୍ୟ । ୧୯୮୮–୮୯ ମସିହାରେ ଓଡ଼ିଶାର ମୁଣ୍ଡ ପିଛା ନିଟ୍ ଘରୋଇ ଉତ୍ପାଦନ ଥିଲା ୨,୫୩୮ ଟଙ୍କା । ସର୍ବ ଭାରତୀୟ ମୁଣ୍ଡ ପିଛା ଉତ୍ପାଦନଠାରୁ ଏହା ୧,୪୦୦ ଟଙ୍କା କମ୍ ଥିଲା । ଅନ୍ୟାନ୍ୟ ଉନ୍ନୟନର ତୁଳନାତ୍ମକ ପରିସଂଖ୍ୟାନ ଏହି ଆଞ୍ଚଳିକ ବୈଷମ୍ୟକୁ ଅଧିକ ପ୍ରତିଭାତ କରିବ । ଯଥା–୧,୦୦୦ ବର୍ଗ କିଲୋମିଟର ପାଇଁ ଓଡ଼ିଶାରେ ୧୨୨ କିଲୋମିଟର ରାସ୍ତା ନିର୍ମିତ ହୋଇଥିଲା ବେଳେ ସେତିକି ଅଞ୍ଚଳ ପାଇଁ ସର୍ବ ଭାରତୀୟ ସ୍ତରରେ ୨୬୯ କିଲୋମିଟର, ପଞ୍ଜାବରେ ୮୧୬ କିଲୋମିଟର ଏବଂ ହରିଆନାରେ ୫୨୬ କିଲୋମିଟର ରାସ୍ତା ଥିଲା, ସେହିପରି ୧,୦୦୦ ବର୍ଗ କିଲୋମିଟର ପିଛା ଓଡ଼ିଶାରେ ୧୨.୬ କିଲୋମିଟର ରେଳପଥ ନିର୍ମିତ ହୋଇଥିଲା ବେଳେ ସର୍ବ ଭାରତୀୟ ସ୍ତରରେ ଏହା ଆନୁପାତିକ ଦୈର୍ଘ୍ୟ ୧୯.୯ କିଲୋମିଟର ଥିଲା । ୧,୦୦୦ ବର୍ଗ କିଲୋମିଟର ପିଛା ପଞ୍ଜାବରେ ୪୩ କିଲୋମିଟର ଏବଂ ଉତ୍ତର ପ୍ରଦେଶ, ତାମିଲନାଡୁ ଓ ବିହାରରେ ପ୍ରାୟ ୩୦ କିଲୋମିଟର ଲେଖାଏଁ ରେଳପଥ ନିର୍ମିତ ହୋଇ ସାରିଥିଲା । ଉନ୍ନୟନ କ୍ଷେତ୍ରରେ ଏହି ଅବହେଳା ଫଳରେ ଓଡ଼ିଶା ଆଜି ସମଗ୍ର ଦେଶର ଦରିଦ୍ରତମ ରାଜ୍ୟ, ଦାରିଦ୍ର୍ୟ ସୀମାରେଖା ତଳେ ବାସ କରୁଥିବା ଆନୁପାତିକ ଜନସଂଖ୍ୟା ରାଜ୍ୟର ଏହି ଦାରିଦ୍ର୍ୟକୁ ପ୍ରତିପାଦନ କରୁଛି । ପରିସଂଖ୍ୟକମାନେ ପ୍ରସ୍ତୁତ କରିଥିବା ପରିସଂଖ୍ୟାନ ଅପେକ୍ଷା ବାସ୍ତବ କ୍ଷେତ୍ରରେ ଏହି ଦରିଦ୍ର ଲୋକମାନଙ୍କର ସଂଖ୍ୟା ଯଥେଷ୍ଟ ଅଧିକ । ଗୁନାର ମାଇରଡାଲ୍‌ଙ୍କ ଭାଷାରେ ଏପରି ଅସାମଞ୍ଜସ୍ୟ ଓ ଗୁରୁତର ଅବହେଳାର ଅନ୍ୟ ନାମ ହେଉଛି ଅର୍ଥନୈତିକ ଉପନିବେଶବାଦ । ଆମେ ଯେଉଁମାନେ ଉପନିବେଶବାଦ ବିରୁଦ୍ଧରେ ଉତ୍କର୍ଷୀକୃତ ସଂଗ୍ରାମ କରିଛେ, ସେମାନେ ଏହି ଅର୍ଥନୈତିକ ଉପନିବେଶବାଦର ବିଲୋପ ପାଇଁ ଉଦ୍ୟମ କରିବା ବାଞ୍ଛନୀୟ । ଯୋଜନା କମିଶନ୍ ଏବଂ କେନ୍ଦ୍ର ସରକାର ଏହି ବିଷୟ ଗୁରୁତ୍ୱର ସହ ବିଚାର କରିବେ ବୋଲି ମୁଁ ଅନୁରୋଧ କରୁଛି । ନ୍ୟାୟ ପ୍ରଦାନ ପାଇଁ ଆମର ନୈତିକ ଚେତନା ଜାଗ୍ରତ ହେଲେ ଏହି ଗୁରୁତର ବୈଷମ୍ୟ ଦୂରୀକରଣ

ପାଇଁ ଉପାୟ ଉଦ୍ଭାବନ ଓ ଅର୍ଥ ସଂଗ୍ରହ ପାଇଁ ବିଶେଷ ଅସୁବିଧା ଦେଖା ଦେବନି ।

ଅନୁନ୍ନତ ରାଜ୍ୟମାନଙ୍କର ଆବଶ୍ୟକତା ସମ୍ପୂର୍ଣ୍ଣ ଭାବେ ପରିପୂରଣ ପାଇଁ କେନ୍ଦ୍ର ସରକାର ଯେ ସମର୍ଥ ନୁହନ୍ତି ଏହା ମୁଁ ଭଲ ଭାବରେ ଉପଲବ୍ଧି କରୁଛି । ସାଧାରଣ କେନ୍ଦ୍ରୀୟ ସହାୟତା ବାଦ୍ କୌଣସି ରାଜ୍ୟକୁ ସ୍ୱତନ୍ତ୍ର ସାହାଯ୍ୟର ପରିମାଣ ଯେ ସ୍ୱଳ୍ପ ହେବ ସେ ବିଷୟରେ ମୁଁ ସଚେତନ । ତେବେ ଏ ଦିଗରେ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି ଯେ ଏପରି ସ୍ୱତନ୍ତ୍ର ସହାୟତା ପାଇଁ ନୀତିଗତ ନିଷ୍ପତ୍ତି ଗ୍ରହଣ କରିବା ଓ କେତେକ ମୁଖ୍ୟ ପ୍ରକଳ୍ପ ଚିହ୍ନଟ କରି ସେଗୁଡ଼ିକ ପାଇଁ ଏପରି ସ୍ୱତନ୍ତ୍ର ଅର୍ଥନୈତିକ ମଞ୍ଜୁରୀ ପ୍ରଦାନ କରିବା । ଅନୁମୋଦିତ ଜାତୀୟ ନୀତିର ପରିସୀମା ମଧ୍ୟରେ ରାଜ୍ୟ ସରକାରମାନେ ବୈଦେଶିକ ସହାୟତା ସଂଗ୍ରହ କରିବା ପାଇଁ ମଧ୍ୟ ଅନୁମତି ପାଇବା ଆବଶ୍ୟକ । ଖଣିଜ ସମ୍ପଦର ବିକାଶ ଓ ଶକ୍ତି ଉତ୍ପାଦନ କ୍ଷେତ୍ରରେ ବହିଃ ସମ୍ବଳ ସଂଗ୍ରହ ପାଇଁ ମୁଁ ଉଦ୍ୟମ କରୁଛି । ଏ ଦିଗରେ ପ୍ରଧାନମନ୍ତ୍ରୀ ତଥା ତାଙ୍କର ସହକର୍ମୀମାନଙ୍କ ନିକଟରୁ ମୁଁ ପୂର୍ଣ୍ଣ ସହଯୋଗ ଓ ସମର୍ଥନ ପାଉଥିବା ଯୋଗୁଁ କୃତଜ୍ଞତା ଜ୍ଞାପନ କରୁଛି । କେନ୍ଦ୍ର ରାଜ୍ୟ ସମ୍ପର୍କକୁ ଏକ ନୂତନ ଦିଗନ୍ତ ଦେବା ଓ ଦୀର୍ଘକାଳ ଧରି ଏ ସଂକ୍ରାନ୍ତରେ ରାଜ୍ୟମାନଙ୍କର ଅଭିଳାଷକୁ ବାସ୍ତବତାରେ ରୂପାନ୍ତରିତ କରିବା ପାଇଁ ପ୍ରଧାନମନ୍ତ୍ରୀଙ୍କର ପ୍ରଚେଷ୍ଟା ନିଶ୍ଚିତ ରୂପେ ପ୍ରଶଂସନୀୟ । ଏହା ଭାରତବର୍ଷର ସଙ୍ଘୀୟ ବ୍ୟବସ୍ଥାକୁ ନିଶ୍ଚିତ ରୂପେ ଉଜ୍ଜୀବିତ କରିବ ।

ପରିଶେଷରେ କେତେକ କେନ୍ଦ୍ରୀୟ ପ୍ରକଳ୍ପ ରାଜ୍ୟମାନଙ୍କୁ ହସ୍ତାନ୍ତରିତ ହେଉଥିବା ଆନନ୍ଦର ବିଷୟ । ଏହା ଅବଶ୍ୟ ନିଶ୍ଚିତ ଯେ ବେଶୀ ସଂଖ୍ୟକ ପ୍ରକଳ୍ପକୁ କେନ୍ଦ୍ର ସରକାର ନିଜ ହାତରେ ରଖିବେ ଓ ଏ ସବୁ ପାଇଁ ରାଜ୍ୟମାନଙ୍କୁ ହସ୍ତାନ୍ତର କରାଯାଉଥିବା ପ୍ରକଳ୍ପ ତୁଳନାରେ ଅଷ୍ଟମ ଯୋଜନା କାଳ ମଧ୍ୟରେ ଯଥେଷ୍ଟ ଅଧିକ ଅର୍ଥ ବରାଦ କରାଯିବ । ରାଜ୍ୟମାନଙ୍କର ଭାଗ ସମ୍ପର୍କରେ ଯୁକ୍ତି ନକରି ଦୀର୍ଘକାଳ ପୂର୍ବରୁ ଯେଉଁ ପ୍ରକଳ୍ପ ସବୁ ରାଜ୍ୟମାନଙ୍କୁ ହସ୍ତାନ୍ତରିତ ହେବା ଉଚିତ ଥିଲା ତାହାର ଅସ୍ୱୀକାରପତ୍ରକୁ ସ୍ୱାଗତ କରାଯିବା ଆବଶ୍ୟକ । ଏହି ସବୁ କାର୍ଯ୍ୟକ୍ରମ ପାଇଁ କେନ୍ଦ୍ରୀୟ ସହାୟତା ରାଜ୍ୟ ଯୋଜନା ପାଇଁ କେନ୍ଦ୍ରୀୟ ସାହାଯ୍ୟ ପାଇଁ ନିର୍ଦ୍ଧାରିତ ନୀତି ନିୟମ ଭିତ୍ତିରେ କରିବା ପାଇଁ ଯେଉଁ ସୁପାରିଶ କରାଯାଇଛି ତାହାକୁ ସାମାନ୍ୟ ପରିବର୍ତ୍ତନ ସହ ମୁଁ ସମର୍ଥନ କରୁଛି । ମୋର ପ୍ରସ୍ତାବିତ ପରିବର୍ତ୍ତନ ହେଉଛି ଯେ ଆଗାମୀ ୫ ବର୍ଷ ପାଇଁ ଏହି ଆର୍ଥିକ ଅନୁଦାନ ସମ୍ପୂର୍ଣ୍ଣ ସାହାଯ୍ୟ ରୂପେ ମଞ୍ଜୁର କରାଯିବା ଆବଶ୍ୟକ ଓ ଏହାର କୌଣସି ଅଂଶ ଋଣ ରୂପେ ବିଚାର କରାଯିବା ଉଚିତ ନୁହେଁ ।

କେନ୍ଦ୍ରୀୟ ସହାୟତା ପାଇଁ ପ୍ରସ୍ତାବିତ ଅଭିନବ ସୂତ୍ର ଓ ବଜାର ଋଣ ସମ୍ପର୍କରେ ଆମର ମତାମତ ମଗାଯାଇଛି । ପ୍ରାୟ ବର୍ଷକ ତଳେ ଜାତୀୟ ଉନ୍ନୟନ ପରିଷଦରେ ଏଥିପାଇଁ ଏକ ସର୍ବ ସମ୍ମତ ସୂତ୍ର ନିର୍ଦ୍ଧାରଣ କରାଯାଇଥିଲା । ମୋର ଦୃଢ଼ବୋଧ ହେଉଛି ଯେ କୌଣସି ନିଷ୍ପତ୍ତି ଗ୍ରହଣ କରିବା ଦିଗରେ ଅକ୍ଷମତା ସମ୍ଭବତଃ ଆମର ଏକ ଚାରିତ୍ରିକ ଦୁର୍ବଳତା । ଆମେ କୌଣସି ନିଷ୍ପତ୍ତି ଗ୍ରହଣ କରି ନପାରିବା ଫଳରେ ଆମର ପ୍ରଗତି ମଧ୍ୟ ବ୍ୟାହତ ହୁଏ । ୧୯୯୦ ଅକ୍ଟୋବର ମାସରେ କେନ୍ଦ୍ରୀୟ ସହାୟତା ସମ୍ପର୍କରେ ଗୃହୀତ ସୂତ୍ର ଅନୁମୋଦନ କରିବା ପାଇଁ ମୁଁ ଦୃଢ଼ ଦାବୀ ଉପସ୍ଥାପନ କରୁଛି ଓ ଏହାର ସଂଶୋଧନ ପାଇଁ ଦିଆଯାଇଥିବା ପ୍ରସ୍ତାବର ବିରୋଧ କରୁଛି । ସ୍ୱତନ୍ତ୍ର ସମସ୍ୟାର ସମାଧାନ ପାଇଁ ଉଦ୍ଦିଷ୍ଟ ଅନୁଦାନକୁ ଶତକଡ଼ା ୧୫ ଭାଗରୁ ୧୦ ଭାଗକୁ ହ୍ରାସ କରିବା ପାଇଁ କରାଯାଇଥିବା ପ୍ରସ୍ତାବ ସହ ମୁଁ ଏକମତ ନୁହେଁ । ଏହି ଅନୁଦାନ ବୃଦ୍ଧି କରାଯିବା ସପକ୍ଷରେ ମୁଁ ଏହା ପୂର୍ବରୁ ଯୁକ୍ତି ଉପସ୍ଥାପନ କରି ସାରିଛି । ଅର୍ଥ ଅନୁଦାନ ବ୍ୟବସ୍ଥାକୁ ଗୋଳିଆ କରି ଅର୍ଥନୈତିକ ପରିଚାଳନା ତଥା ଜନସଂଖ୍ୟା ନିୟନ୍ତ୍ରଣ, ମାତୃ ଓ ଶିଶୁ ମଙ୍ଗଳ, ସାର୍ବଜନୀନ ପ୍ରାଥମିକ ଶିକ୍ଷା, ପ୍ରୌଢ଼ ଶିକ୍ଷା ପ୍ରଭୃତି କ୍ଷେତ୍ରରେ ସାଫଲ୍ୟ ସହ ଏହାକୁ ସଂଶ୍ଳିଷ୍ଟ କରିବା ସମ୍ପୂର୍ଣ୍ଣ ରୂପେ ଅସମୀଚୀନ । ଏପରି କୌଣସି ରାଜ୍ୟ ଅଛି କି ଯେ ପ୍ରାଥମିକ ଶିକ୍ଷା ଅଥବା ଶିଶୁ ଓ ମହିଳାମାନଙ୍କର ସ୍ୱାସ୍ଥ୍ୟ ବ୍ୟବସ୍ଥାକୁ ଅଧିକ ଉନ୍ନତ କରିବା ଦିଗରେ ଆଗ୍ରହୀ ନୁହେଁ ? ଯଦି ଏହି ସବୁ କ୍ଷେତ୍ରରେ କେତେକ ରାଜ୍ୟର ସାଫଲ୍ୟ ଅନ୍ୟ ରାଜ୍ୟ ତୁଳନାରେ ଉଲ୍ଲେଖନୀୟ ହୋଇପାରୁନି, ଏହାର କାରଣ ସମ୍ପର୍କରେ ଅନୁଧ୍ୟାନ କରାଯିବା ଆବଶ୍ୟକ । ଐତିହାସିକ ଭିତ୍ତିଭୂମି ବା ଅନୁରୂପ କୌଣସି ଅସୁବିଧା ଯୋଗୁଁ ଏ ସବୁ କ୍ଷେତ୍ରରେ ପ୍ରଗତି ବ୍ୟାହତ ହେଉଛି କି ନାହିଁ ତାହା ବିଚାର କରାଯିବା ଆବଶ୍ୟକ । ଯେଉଁ ସବୁ ରାଜ୍ୟର ବିସ୍ତୀର୍ଣ୍ଣ ଅଞ୍ଚଳ ପୂର୍ବରୁ ଅର୍ଦ୍ଧ ଶିକ୍ଷିତ ତଥା ଖାମଖିଆଲି ରାଜାମାନଙ୍କର ଶାସନାଧୀନ ଥିଲା ଅଥବା ଯେଉଁ ସବୁ ରାଜ୍ୟର ଜନସଂଖ୍ୟାର ଏକ ମୁଖ୍ୟ ଅଂଶ ଆଦିବାସୀ ବହୁଳ ସବୁ ରାଜ୍ୟ ଦେଶର ଯେଉଁ ରାଜ୍ୟମାନେ ପୂର୍ବରୁ ଅପେକ୍ଷାକୃତ ଅଧିକ ଆଧୁନିକ ଶାସନାଧୀନ ହେବାର ସୁଯୋଗ ପାଇଥିଲେ ବା ଯେଉଁ ରାଜ୍ୟର ଅଧିବାସୀମାନେ ଜାତୀୟ ସଭ୍ୟତାର ମୁଖ୍ୟ ସ୍ରୋତରେ ପୂର୍ବରୁ ସାମିଲ ହୋଇଥିଲେ ସେମାନଙ୍କ ସହ ସମକକ୍ଷ ହେବା ସମୟ ସାପେକ୍ଷ । ଏହା ମଧ୍ୟ ଏକ ସାଧାରଣ କଥା ଯେ ଯେଉଁ ରାଜ୍ୟର ଆର୍ଥିକ ସ୍ଥିତି ଅଧିକ ସୁଦୃଢ଼ ସେମାନେ ସ୍ୱାସ୍ଥ୍ୟ ସେବା ଏବଂ ଶିକ୍ଷା ନିମନ୍ତେ ଅଧିକ ଅର୍ଥ ବ୍ୟୟ କରିପାରିବେ । ଜନସଂଖ୍ୟା ନିୟନ୍ତ୍ରଣ, ସାର୍ବଜନୀନ ପ୍ରାଥମିକ ଶିକ୍ଷା ପ୍ରଭୃତି କାର୍ଯ୍ୟକ୍ରମ ଜାତୀୟ ସ୍ତରରେ ଅଗ୍ରାଧିକାର ପାଇବା ଉଚିତ, କିନ୍ତୁ ଯେଉଁ ସବୁ କାରଣ ଯୋଗୁଁ ଏ ସବୁ କ୍ଷେତ୍ରରେ ଆମେ ପଛରେ ପଡ଼ିଯାଇଛୁ ତାହା ଉତ୍ତରାଧିକାର ସୂତ୍ରରେ ପାଇଥିବା ଏକ ଅଭିଶାପର ଫଳ । ଏଥିପାଇଁ ମୋର ରାଜ୍ୟବାସୀ ଦାୟୀ ନୁହନ୍ତି ଅଥବା ସେମାନେ ଏଥିପାଇଁ ଶାସ୍ତି ପାଇବାର କୌଣସି ଯୁକ୍ତିଯୁକ୍ତ କାରଣ ନାହିଁ । ପରନ୍ତୁ ଏହି ସବୁ କ୍ଷେତ୍ରରେ ଅବସ୍ଥାର ପରିବର୍ତ୍ତନ ପାଇଁ ବର୍ତ୍ତମାନ ଆମେ ଉଦ୍ୟମ କରୁଛୁ । ଏହି ପରିପ୍ରେକ୍ଷୀରେ ଅନୁନ୍ନତ ରାଜ୍ୟମାନଙ୍କର କାର୍ଯ୍ୟକ୍ରମ ଓ ପ୍ରକଳ୍ପ ପାଇଁ ଆବଶ୍ୟକୀୟ ଆର୍ଥିକ ଅନୁଦାନ ହ୍ରାସ କରି ଉପଯୁକ୍ତ ନୀତି ଅବଲମ୍ବନରେ ଅର୍ଥ ମଞ୍ଜୁର କରିବା ସମ୍ପୂର୍ଣ୍ଣ ରୂପେ ଏକ ଅନ୍ୟାୟ ଏବଂ ଅଯୌକ୍ତିକ ପଦ୍ଧତି ହେବ ।

ବିଭିନ୍ନ ରାଜ୍ୟର ମୁଖ୍ୟମନ୍ତ୍ରୀମାନେ ଅଷ୍ଟମ ଯୋଜନାର ଦିଗ୍‌ଦର୍ଶନ ସମ୍ପର୍କରେ ଯୋଜନା କମିଶନ୍ ପକ୍ଷରୁ ପ୍ରସ୍ତୁତ ପତ୍ର ବିଷୟରେ ନିଜର ମତାମତ ଦେଇଛନ୍ତି । ଏଥି ମଧ୍ୟରୁ ମୁଖ୍ୟ ପ୍ରସ୍ତାବଗୁଡ଼ିକ ଚିହ୍ନଟ କରି ଯୋଜନା କମିଶନ୍‌ରଙ୍କ ମତାମତ ସହ ଅତିଶୀଘ୍ର ଜାତୀୟ ଉନ୍ନୟନ କାଉନ୍‌ସିଲ୍‌ର ବିଚାର ପାଇଁ ଉପସ୍ଥାପନ କରାଯିବା ଉଚିତ, ତାହାହେଲେ ଅଷ୍ଟମ ଯୋଜନାରେ ଜାତୀୟ ସହମତି ପ୍ରତିଫଳିତ ହେବା ସଙ୍ଗେ ସଙ୍ଗେ ଏହା ଅଧିକ ରାଜନୈତିକ ସମର୍ଥନ ଲାଭ କରିପାରିବ । ଅବଶ୍ୟ ଏଥିପାଇଁ ନୀତି ନିୟମର ପୁନର୍ବିଚାର ଓ କେତେକ ପରିବର୍ତ୍ତନ ଆବଶ୍ୟକ ହୋଇପାରେ । କିନ୍ତୁ ମୋର ବିଶ୍ୱାସ ଆମେ ଏପରି ଏକ ସ୍ତରରେ ପହଞ୍ଚିଛେ ଯେ ଉପର ଠାଉରିଆ ଗୋଷ୍ଠୀ ପରିବର୍ତ୍ତନରେ ଏକ ନୂତନ ବାସ୍ତବ ଧର୍ମୀ ଚିନ୍ତାଧାରାର ଉଦ୍ରେକ ହେଉଛି ଓ ଆଧୁନିକ ସଙ୍ଘୀୟ ରାଷ୍ଟ୍ରର କ୍ରମଶଃ ଉଦ୍ରେକ ହେଉଛି ।

(ଜାତୀୟ ଉନ୍ନୟନ ପରିଷଦରେ ମୁଖ୍ୟମନ୍ତ୍ରୀଙ୍କ ଭାଷଣରୁ ଉଦ୍ଧୃତ ।)



ଭୁବନେଶ୍ୱରଠାରେ ସଂସ୍କୃତି ନିର୍ଦ୍ଦେଶାଳୟ ଆନୁକୂଲ୍ୟରେ ଆୟୋଜିତ ଗୁରୁ ଗଙ୍ଗାଧର ପ୍ରଧାନଙ୍କ ଦ୍ୱାରା ପରିବେଷିତ 'ଗ୍ଳାନି ସଂହାର' ନାମକ ଏକ ନୃତ୍ୟନାଟିକା ଶ୍ରୀ ବି: କେ: ନେହେରୁ, ଶ୍ରୀମତୀ ନେହେରୁ, ରାଜ୍ୟପାଳ, ଶ୍ରୀ ଯଜ୍ଞଦତ୍ତ ଶର୍ମା ଓ ସଂସ୍କୃତି ମନ୍ତ୍ରୀ, ଶ୍ରୀ ଶରତ କୁମାର କର ଦେଖୁଛନ୍ତି ।



ଭୁବନେଶ୍ୱରଠାରେ ଜୁନିଅର ରେଡ୍‌କ୍ରସ୍ ଦିବସ ପାଳନ ଅବସରରେ ରାଜ୍ୟପାଳ, ଶ୍ରୀ ଯଜ୍ଞଦତ୍ତ ଶର୍ମା ଏକ ଅନ୍ଧ ବାଳିକାକୁ ଆଶୀର୍ବାଦ ସହ ପୁରସ୍କାର ପ୍ରଦାନ କରୁଛନ୍ତି ।



ଭୁବନେଶ୍ୱରଠାରେ ରାଷ୍ଟ୍ରୀୟ ଲଳିତକଳା ଏକାଡେମୀ ଦ୍ୱାରା ଆୟୋଜିତ ପ୍ରଦର୍ଶନୀକୁ ସୂଚନା ଓ ଲୋକ ସମ୍ପର୍କ ବିଭାଗ ମନ୍ତ୍ରୀ, ଶ୍ରୀ ଶରତ କୁମାର କର ବୁଲି ଦେଖୁଛନ୍ତି ।



ଓଡ଼ିଶାରେ ଇସ୍ପାତ କାରଖାନା ପ୍ରତିଷ୍ଠା ସମ୍ପର୍କରେ କାପରୋ ଗ୍ରୁପ୍‌ର ଶିଳ୍ପପତି, ଡକ୍ଟର ସ୍ୱରାଜ ପାଲ, ମୁଖ୍ୟମନ୍ତ୍ରୀ, ଶ୍ରୀ ବିଜୁ ପଟ୍ଟନାୟକଙ୍କ ସହିତ ଆଲୋଚନା କରୁଛନ୍ତି ।



ରାଜ୍ୟ ସୂଚନା ଭବନଠାରେ ଆୟୋଜିତ ଏକ ପୁଷ୍ପ ପ୍ରଦର୍ଶନୀକୁ କୃଷି ମନ୍ତ୍ରୀ, ଶ୍ରୀ ଜଗନ୍ନାଥ ମଲ୍ଲିକ ବୁଲି ଦେଖୁଛନ୍ତି ।



ଭାରତୀୟ ତେଲ ନିଗମର ପରିଚାଳନା ନିର୍ଦ୍ଦେଶକ ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିକୁ ପାଞ୍ଚଲକ୍ଷ ଟଙ୍କାର ଏକ ଚେକ୍ ପ୍ରଦାନ କରୁଛନ୍ତି ।



ସମବାୟ ବିଭାଗ ମନ୍ତ୍ରୀ, ଶ୍ରୀ ଅଦ୍ୱୈତ ପ୍ରସାଦ ସିଂହ ତାଲିମପ୍ରାପ୍ତ ପଦାଧିକାରୀମାନଙ୍କ ଉଦ୍‌ଯାପନ ଉତ୍ସବରେ ଉଦ୍‌ବୋଧନ ଦେଉଛନ୍ତି ।



ଜର୍ମାନୀ କନସଲ୍ ଜେନେରାଲ ସଚିବାଳୟସ୍ଥ ଅଫିସ୍ ପ୍ରକୋଷ୍ଠରେ ମୁଖ୍ୟମନ୍ତ୍ରୀ, ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ସାକ୍ଷାତ କରୁଛନ୍ତି ।



ରାଜନଗରଠାରେ ସବ୍ ଟ୍ରେଜେରୀ ଉଦ୍‌ଘାଟନ ଉତ୍ସବରେ ନଗର ଉନ୍ନୟନ ମନ୍ତ୍ରୀ, ଶ୍ରୀ ନଳିନୀକାନ୍ତ ମହାନ୍ତି ସାଧାରଣ ସଭାରେ ଉଦ୍‌ବୋଧନ ଦେଉଛନ୍ତି ।

# କେନ୍ଦ୍ର ରାଜ୍ୟ ସମ୍ପର୍କର ପୁନର୍ବିନ୍ୟାସ

ଶ୍ରୀମତୀ ସୁଷମା ମହାପାତ୍ର

ଓଡ଼ିଶାର ମୁଖ୍ୟମନ୍ତ୍ରୀ ଜଣେ ବରିଷ୍ଠ ଜନ ନାୟକ ଏବଂ ସ୍ୱନାମଧନ୍ୟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ବିଜୁ ପଟ୍ଟନାୟକ ବିଭିନ୍ନ ରାଜ୍ୟ ମଧ୍ୟରେ ଥିବା ଆଞ୍ଚଳିକ ବୈଷମ୍ୟ ଦୂରୀକରଣ ଓ ପଛୁଆ ରାଜ୍ୟଗୁଡ଼ିକର ଅର୍ଥନୈତିକ ଅଭିବୃଦ୍ଧିକୁ ତ୍ୱରାନ୍ୱିତ କରିବା ପାଇଁ କେନ୍ଦ୍ର ରାଜ୍ୟ ସମ୍ପର୍କର ପୁନର୍ବିନ୍ୟାସ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । କେବଳ ଅର୍ଥନୈତିକ ସ୍ୱାତନ୍ତ୍ର୍ୟ ନୁହେଁ, ଏଥିପାଇଁ ଭାରତୀୟ ସମ୍ବିଧାନର ସଂଶୋଧନ କରି ସଂଘୀୟ ଢାଞ୍ଚାରେ (Federal Structure) ଭାରତବର୍ଷକୁ "ଯୁକ୍ତରାଷ୍ଟ୍ର ଭାରତବର୍ଷ"ରେ ପରିଣତ କରିବା ପାଇଁ ସମ୍ବିଧାନର ମୌଳିକ ଢାଞ୍ଚାର ପରିବର୍ତ୍ତନ କରିବା ପାଇଁ ସେ ପରାମର୍ଶ ଦେଇଛନ୍ତି ।

ସମସ୍ତ ପ୍ରକାର ପ୍ରାକୃତିକ ସମ୍ପଦରେ ପରିପୂର୍ଣ୍ଣ ହୋଇ ମଧ୍ୟ ଓଡ଼ିଶା ଆଜି ଦରିଦ୍ର କାହିଁକି ? ଖଣିଜ ସମ୍ପଦର ଉପଯୁକ୍ତ ବିନିଯୋଗ, ଶିଳ୍ପ ପ୍ରତିଷ୍ଠା ପ୍ରଭୃତି ବିଭିନ୍ନ ବିଷୟରେ ରାଜ୍ୟ ସରକାର ବା ରାଜ୍ୟବାସୀଙ୍କର ନିଷ୍ପତ୍ତି ନେବାର ଅଧିକାର ଅତି ସୀମିତ । ଖଣିଜ ପଦାର୍ଥର ରୟାଲ୍‌ଟି ନିର୍ଦ୍ଧାରଣ କରିବାର ଅଧିକାର ମଧ୍ୟ ରାଜ୍ୟ ସରକାରଙ୍କର ନାହିଁ । କୋଇଲା ରୟଲ୍‌ଟି ସମ୍ପର୍କରେ କେନ୍ଦ୍ର ସରକାରଙ୍କର ନିଷ୍ପତ୍ତି ବିରୁଦ୍ଧରେ ଓଡ଼ିଶା, ବିହାର ଓ ପଶ୍ଚିମବଙ୍ଗ ସରକାର କେବଳ ସ୍ୱର ଉତ୍ତୋଳନ କରି ନାହାନ୍ତି ଆମ ରାଜ୍ୟର କେତେକ ବିଶିଷ୍ଟ ନାଗରିକ ଏହାଦ୍ୱାରା ଓଡ଼ିଶା ବାର୍ଷିକ ଅନ୍ୟୂନ ଦୁଇଶହ କୋଟି ଟଙ୍କା ହରାଉଥିବାରୁ ଏହାର ପ୍ରତିବାଦରେ ସୁପ୍ରିମ୍‌କୋର୍ଟରେ ଏକ ଜନସ୍ୱାର୍ଥ ମାମଲା ଦାୟର କରିଛନ୍ତି । ଏହା ଉପରେ ଆଇନଗତ ନିଷ୍ପତ୍ତି ଯାହା ହେଉନା କାହିଁକି, କେନ୍ଦ୍ର ରାଜ୍ୟ ସମ୍ପର୍କକୁ ଆଉ ଖାମଖିଆଲ୍ ଭାବରେ ବିଶ୍ଳେଷଣ କରିବା ଅସମୀଚୀନ ମନେ ହୁଏ ।

ଆଜି ପୃଥିବୀର ଅନ୍ୟତମ ଶକ୍ତିଶାଳୀ ରାଷ୍ଟ୍ର ସୋଭିଏତ୍ ୟୁନିୟନ୍‌ର ବିଲୟ ଘଟିଛି । ଯୁଗୋସ୍ଲୋଭିଆ ଖଣ୍ଡ ବିଖଣ୍ଡିତ ହୋଇ ସାରିଛି । ଆମ ଦେଶରେ ପଞ୍ଜାବ, ଜାମୁ ଓ କାଶ୍ମୀର, ଆସାମ ପ୍ରଭୃତି ରାଜ୍ୟର ଅବସ୍ଥା ନିଶ୍ଚିତ ରୂପେ ଆମ ପାଇଁ ଏକ କଠୋର ଚେତାବନୀ । ଆମ ଦେଶ ବହୁ ଧର୍ମାବଲମ୍ବୀ, ବହୁ ଭାଷାଭାଷୀ ଲୋକ ଓ ବହୁ ସଂସ୍କୃତିର ଏକ ସମାବେଶ । ଏହି ସବୁ ପାର୍ଥକ୍ୟ ମଧ୍ୟରେ ଐକ୍ୟ ହିଁ ଭାରତବର୍ଷର ଐତିହ୍ୟର ମୂଳ ମନ୍ତ୍ର । ଯେତେବେଳେ ଏହି ଐକ୍ୟ ବ୍ୟାହତ ହୋଇଛି, ଦେଶ ଦୁର୍ବଳ ହୋଇ ବାହ୍ୟ ଶତ୍ରୁ ଦ୍ୱାରା ପରାହତ ହୋଇଛି । ତେଣୁ ଏକ ଦୃଢ଼ କେନ୍ଦ୍ରୀୟ ଶାସନର ଆବଶ୍ୟକତା ସମ୍ପର୍କରେ ଯେଉଁ ମତ ପ୍ରକାଶ ପାଉଛି ତାହାକୁ ଲଘୁ ଭାବରେ ଚିନ୍ତା କରାଯାଇ ପାରିବନି । ସମ୍ଭବତଃ ସମ୍ବିଧାନ ପ୍ରଣୟନ କଲାବେଳେ ଏହି ଚିନ୍ତାଧାରା ବିଶେଷ ଭାବରେ ପ୍ରଭାବିତ କରିଥିଲା । କିନ୍ତୁ ଗତ ୫୨ ବର୍ଷର ଅଭିଜ୍ଞତା ଓ ଅନୁଭୂତି ଆମକୁ ଆଜି ସ୍ପଷ୍ଟ ରୂପେ ସୂଚନା ଦେଇପାରିଛି ଯେ ଦେଶର ଅଖଣ୍ଡତାକୁ ରକ୍ଷା କରିବା ପାଇଁ ସମ୍ବିଧାନର ମୌଳିକ ଢାଞ୍ଚାରେ ପରିବର୍ତ୍ତନ ଆଣି ସଂଘୀୟ ବିନ୍ୟାସକୁ ପରିବର୍ଦ୍ଧିତ କରିବାକୁ ହେବ । ରାଜ୍ୟମାନେ ଶକ୍ତିଶାଳୀ ହେବା ଫଳରେ କେନ୍ଦ୍ର ଦୁର୍ବଳ ହେବ ବୋଲି ଭାବିବା ଉଚିତ ନୁହେଁ ବରଂ ଏହା ଏକ ଶକ୍ତିଶାଳୀ କେନ୍ଦ୍ର ଗଠନ ଦିଗରେ ସହାୟକ ହେବ ।

ଭୂତପୂର୍ବ ରାଷ୍ଟ୍ରପତି ଶ୍ରୀ ସଞ୍ଜୀବ ରେଡ୍ଡି ଆନ୍ଧ୍ରପ୍ରଦେଶର ମୁଖ୍ୟମନ୍ତ୍ରୀ ଥିବାବେଳେ ଯୁଗୋସ୍ଲୋଭିଆର ତତ୍‌କାଳୀନ ରାଷ୍ଟ୍ରପତି ମାର୍ଶାଲ୍ ଟିଟୋଙ୍କ ସହ ତାଙ୍କର ଆଲୋଚନା ସମୟରେ ଟିଟୋ କହିଥିଲେ ଯେ "ଶ୍ରୀଯୁକ୍ତ ରେଡ୍ଡି, ଆପଣଙ୍କର ରାଜ୍ୟ ମୋ ରାଜ୍ୟର ଦୁଇଗୁଣ" । ଏହି ଆଲୋଚନାର ସ୍ମୃତି ରୋମନ୍ଥନ କରି ଶ୍ରୀ ରେଡ୍ଡି ରାଷ୍ଟ୍ରପତି ଥିବାବେଳେ ପ୍ରକାଶ କରିଥିଲେ ଯେ ଏହା ସତ୍ତ୍ୱେ ଓ ଜଣେ ମୁଖ୍ୟମନ୍ତ୍ରୀ ଏପରି କି ସ୍ୱାସ୍ଥ୍ୟ ବା ବନ ସମ୍ପଦର ବିକାଶ ପରି ଛୋଟ ଛୋଟ ବିଷୟରେ ମଧ୍ୟ ସ୍ୱାଧୀନ ନିଷ୍ପତ୍ତି ନେବାକୁ ଅକ୍ଷମ । କେନ୍ଦ୍ର ସରକାରଙ୍କର ପ୍ରଶାସନିକ ଅଧିକାରୀମାନେ ଏ ସବୁ ବିଷୟ ପରୀକ୍ଷା କରି ନିଷ୍ପତ୍ତି ନେବେ ।

ସ୍ୱାଧୀନତାର ପ୍ରଥମ କୋଡ଼ିଏ ବର୍ଷ ବିଶେଷ ସମସ୍ୟା ସୃଷ୍ଟି କରିନଥିଲା । ସମସ୍ତ ରାଜ୍ୟରେ କଂଗ୍ରେସ ସରକାର ଥିବାରୁ ଦଳୀୟ ଶୃଙ୍ଖଳା ମାନି କେନ୍ଦ୍ରରେ ଥିବା କଂଗ୍ରେସ ସରକାରର କ୍ଷମତା ସଙ୍କୁଚିତ କରିବା ପ୍ରସ୍ତାବ ଉପସ୍ଥାପନ କରିବାକୁ ରାଜ୍ୟମାନେ ସାହସ କରିପାରିନଥିଲେ । ଭାରତବର୍ଷର ପ୍ରଥମ ଗଭର୍ଣ୍ଣର

ଜେନେରାଲ୍ ଶ୍ରୀ ସି: ରାଜଗୋପାଳଚାରୀଙ୍କର ଭାଷାରେ ସେହି ସମୟରେ କେନ୍ଦ୍ର ରାଜ୍ୟ ସମ୍ପର୍କ କଂଗ୍ରେସ ଦଳର କେନ୍ଦ୍ରୀୟ ସଙ୍ଗଠନ ଓ ରାଜ୍ୟ ଶାଖାର ସମ୍ପର୍କ ସହ ତୁଳନୀୟ । କିନ୍ତୁ ୧୯୬୭ ମସିହାରେ ବିଭିନ୍ନ ରାଜ୍ୟରେ ଅଣ କଂଗ୍ରେସ ସରକାର ଗଠିତ ହେବା ପରେ ପରେ ହିଁ ଏହି ସମ୍ପର୍କର ପୁନର୍ବିନ୍ୟାସ ପାଇଁ ସ୍ୱର ଉତ୍ତୋଳିତ ହେଲା । ତାମିଲନାଡୁର ଡି: ଏମ୍: କେ: ସରକାର ଏ ସମ୍ପର୍କରେ ଅନୁଧ୍ୟାନ କରିବା ପାଇଁ ରାଜମାନ୍ନାର କମିଟି ଗଠନ କଲେ । ରାଜମାନ୍ନାର କମିଟି ସମ୍ବିଧାନର ଆବଶ୍ୟକୀୟ ମୌଳିକ ଢାଞ୍ଚାକୁ ବଜାୟ ରଖିବା ସହ ଦେଶର ଐକ୍ୟର ସୁରକ୍ଷା ପାଇଁ କେନ୍ଦ୍ର ଓ ରାଜ୍ୟ ସମ୍ପର୍କର ପୁନର୍ବିନ୍ୟାସ କରିବାକୁ ପରାମର୍ଶ ଦେଇଥିଲେ । ସମ୍ବିଧାନର ସଙ୍ଘୀୟ ଢାଞ୍ଚା ସମ୍ପର୍କରେ ସୂଚନା ଦେଇ ବିଭିନ୍ନ କ୍ଷେତ୍ରରେ ରାଜ୍ୟର ଉନ୍ନୟନ ଓ ପ୍ରଶାସନରେ ଅଯଥା କେନ୍ଦ୍ରୀୟ ହସ୍ତକ୍ଷେପକୁ ସୀମିତ କରିବା ପାଇଁ କମିଟି ସୁପାରିଶ କରିଥିଲେ ।

୧୯୭୭ ମସିହାରେ ପଶ୍ଚିମବଙ୍ଗ ସରକାର ସମ୍ବିଧାନର ବ୍ୟାପକ ପରିବର୍ତ୍ତନ କରି ରାଜ୍ୟଗୁଡ଼ିକୁ ଅଧିକ କ୍ଷମତା ଦେବା ପାଇଁ ଦାବି ଉପସ୍ଥାପନ କରିଥିଲେ । କେନ୍ଦ୍ର ସରକାର କେବଳ ପ୍ରତିରକ୍ଷା, ବହିଃବ୍ୟାପାର, ବହିଃବାଣିଜ୍ୟ, ଅର୍ଥ, ଅର୍ଥନୈତିକ ସମନ୍ୱୟ ଓ ଯୋଗାଯୋଗ ଦାୟିତ୍ୱରେ ରହିବା ଓ ଅନ୍ୟ ସମସ୍ତ କ୍ଷମତା ରାଜ୍ୟ ସରକାରଙ୍କୁ ହସ୍ତାନ୍ତର କରିବା ଉପରେ ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀ ଶ୍ରୀ ଜ୍ୟୋତିବସୁ ଗୁରୁତ୍ୱ ଆରୋପ କରିଥିଲେ । ରାଜ୍ୟ ମନ୍ତ୍ରୀମଣ୍ଡଳ ଦ୍ୱାରା ଗୃହୀତ ହୋଇ କେନ୍ଦ୍ର ସରକାରଙ୍କୁ ଦିଆଯାଇଥିବା ଏକ ଦାବିପତ୍ରରେ ସମ୍ବିଧାନର ଅନ୍ୟୁନ ୭ଟି ଧାରା ଉଚ୍ଛେଦ, ୯ଟି ଧାରା ପରିବର୍ତ୍ତନ, କେତେକ ନୂତନ ଧାରା ପ୍ରବର୍ତ୍ତନ ତଥା ଜାତୀୟ ଉନ୍ନୟନ କାଉନସିଲ୍ ଓ ଯୋଜନା କମିଶନ୍‌ର କାର୍ଯ୍ୟ ଧାରାର ପରିବର୍ତ୍ତନ ବିଷୟ ଉଲ୍ଲେଖ କରାଯାଇଥିଲା ।

ଶ୍ରୀ ରାଜୀବ ଗାନ୍ଧୀ ପ୍ରଧାନମନ୍ତ୍ରୀ ଥିବା ସମୟରେ କେନ୍ଦ୍ର ରାଜ୍ୟ ସମ୍ପର୍କ ବିଷୟରେ ଅନୁଧ୍ୟାନ କରି ଆବଶ୍ୟକୀୟ ସୁପାରିଶ କରିବା ପାଇଁ ସରକାରିଆ କମିଶନ୍ ନିଯୁକ୍ତ କରିଥିଲେ । ଏହି କମିଶନ୍‌ର ବିସ୍ତାର ଓ କାର୍ଯ୍ୟ ପରିସୀମା ଥିଲା ସୀମିତ । ତଥାପି ମଧ୍ୟ ଏହି କମିଶନ୍‌ର ସୁପାରିଶ ଉପରେ କୌଣସି ପ୍ରଶାସନିକ କାର୍ଯ୍ୟ ଗ୍ରହଣ କରାଗଲା ନାହିଁ । ଏପରି କି ଦେଶର ପାର୍ଲାମେଣ୍ଟ୍‌ରେ ମଧ୍ୟ ଏହି ରିପୋର୍ଟ ସମ୍ପର୍କରେ କୌଣସି ଆଲୋଚନା କରାଗଲା ନାହିଁ । ଦୁଃଖର ବିଷୟ ଜାତୀୟ ସାମ୍ମୁଖ୍ୟ ସରକାର ପ୍ରତିଷ୍ଠିତ ହେବା ପରେ ଏକ ଆନ୍ତଃରାଜ୍ୟ କାଉନ୍‌ସିଲ୍ ଗଠନ କରାଯାଇଥିଲେ ମଧ୍ୟ ଏ ସମସ୍ୟାର ସ୍ଥାୟୀ ପ୍ରତିକାର ହେବା ପୂର୍ବରୁ ଜାତୀୟ ସାମ୍ମୁଖ୍ୟ ସରକାରର ପତନ ଘଟିଲା ।

ବର୍ତ୍ତମାନ ଭାରତୀୟ ରାଜନୀତି ଏକ ନୂଆ ମୋଡ଼ରେ ପହଞ୍ଚିଛି । ସମଗ୍ର ଦେଶରେ ଏକ ଦଳୀୟ ଶାସନ ପ୍ରତିଷ୍ଠା ହୁଏତ ଆଉ ସମ୍ଭବପର ନୁହେଁ । ବିଜୁ ବାବୁଙ୍କର ମତରେ କେନ୍ଦ୍ରରେ ଏକ ମିଳିତ ସରକାର ଆଜିର ଆବଶ୍ୟକତା । ସମ୍ଭବତଃ ଏହି ବାସ୍ତବଭିତ୍ତିକ ଉପଦେଶକୁ ଆମକୁ ଗ୍ରହଣ କରିବାକୁ ହେବ । ତେଣୁ ସମ୍ବିଧାନର ଐକିକ ନୀତିକୁ ରାଜ୍ୟମାନଙ୍କ ଉପରେ ଲଦି ଦେବା ପରିବର୍ତ୍ତେ ସମ୍ବିଧାନର ଉପଯୁକ୍ତ ସଂଶୋଧନ କରି ଏକ ବୃହତ୍ତମ ସଙ୍ଘୀୟ ଢାଞ୍ଚା ସୃଷ୍ଟି କରିବାକୁ ହେବ । ଦେଶର ବିଭିନ୍ନ ଅଞ୍ଚଳରେ ଦେଖାଦେଉଥିବା ଅଶାନ୍ତିମୟ ବାତାବରଣ ଓ ଉଗ୍ରବାଦର ସମାଧାନ ବଳ ପ୍ରୟୋଗ ଦ୍ୱାରା ସମ୍ଭବପର ନୁହେଁ । ସାମରିକ ବଳ ପ୍ରୟୋଗ ସମ୍ଭବତଃ ଏହି ସବୁ ସମସ୍ୟାକୁ ଅଧିକ ଜଟିଳ କରିଦେବ ବରଂ ରାଜ୍ୟମାନଙ୍କୁ ସଙ୍ଘୀୟ ସ୍ୱାତନ୍ତ୍ର୍ୟ ଦେଲେ ଏହି ସବୁ ସମସ୍ୟା ବହୁ ପରିମାଣରେ ସମାଧାନ କରିବା ସମ୍ଭବପର ହେବ । ଆଜି ସମଗ୍ର ବିଶ୍ୱରେ ଏକଛତ୍ରବାଦ ଲୋପ ପାଉଥିବାବେଳେ ଦେଶର ଅଖଣ୍ଡତା ଓ ଦୃଢ଼ କେନ୍ଦ୍ର ସରକାରର ଦୁହାଇ ଦେଇ ରାଜ୍ୟ ସରକାର ତଥା ଜନସାଧାରଣଙ୍କର ଆକାଂକ୍ଷାକୁ ଚାପି ଦେବା ନିଶ୍ଚିତ ରୂପେ ଯେ ଏକ ଭ୍ରାନ୍ତ ପଦକ୍ଷେପ ଏହା ସମସ୍ତେ ଉପଲବ୍ଧି କରିବା ଉଚିତ । ଏହି ପରିପ୍ରେକ୍ଷୀରେ ବିଜୁ ବାବୁଙ୍କର ପରାମର୍ଶ ଉପରେ ବୁଦ୍ଧିଜୀବୀ ମହଲରେ ଆଲୋଚନା ହେବା ବାଞ୍ଛନୀୟ । ଓଡ଼ିଶା ମୁଖ୍ୟମନ୍ତ୍ରୀଙ୍କର ଏହି ସମୟୋପଯୋଗୀ ପରାମର୍ଶ ଆଜି ଦେଶର ବିଭିନ୍ନ ମହଲରେ ସମର୍ଥନ ଲାଭ କରିସାରିଛି । ଆଜି ସବୁ ସ୍ତରରେ କେନ୍ଦ୍ର ଓ ରାଜ୍ୟ ସରକାରଙ୍କର ସମ୍ପର୍କର ପୁନର୍ବିନ୍ୟାସର ଆବଶ୍ୟକତା ଉପଲବ୍ଧ ହୋଇସାରିଛି । ରାଜ୍ୟମାନଙ୍କୁ ଅଧିକ କ୍ଷମତା ଦେଇ ନିଜର ସମ୍ପଦର ପୂର୍ଣ୍ଣ ବିନିଯୋଗ କରିବା ସଙ୍ଗେ ସଙ୍ଗେ ଉନ୍ନୟନ ପ୍ରକ୍ରିୟା ଓ ଅର୍ଥନୈତିକ ଅଭିବୃଦ୍ଧିକୁ ତ୍ୱରାନ୍ୱିତ କରିବା ପାଇଁ ସାମ୍ବିଧାନିକ ବ୍ୟବସ୍ଥା ରହିବା ଉଚିତ । ଏ ଦିଗରେ କେନ୍ଦ୍ରୀୟ ହସ୍ତକ୍ଷେପ ଦୂର କରାଯିବା ଆବଶ୍ୟକ ।

ସମ୍ବିଧାନର ପରିବର୍ତ୍ତନର ଧାରା ଆମର ପାର୍ଲାମେଣ୍ଟ୍‌ରେ ନିର୍ଦ୍ଧାରିତ ହେବା ଉଚିତ । ଆବଶ୍ୟକ ହେଲେ ସମଗ୍ର ଦେଶରେ ଏ ସମ୍ପର୍କରେ ଜନମତ ସଂଗ୍ରହ କରାଯାଉ । ସମ୍ବିଧାନର ମୌଳିକ ଢାଞ୍ଚାର ପରିବର୍ତ୍ତନ ପାଇଁ ସମ୍ବିଧାନ ପରିଷଦ ଗଠନ କରିବାର ଆବଶ୍ୟକତା ଥିଲେ ତାହା କରାଯାଉ । ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କର ଦାବି ଆମ ରାଜ୍ୟର ସମୃଦ୍ଧି ଓ ରାଜ୍ୟବାସୀଙ୍କର ଦାରିଦ୍ର୍ୟ ଦୂରୀକରଣ ପାଇଁ କେବଳ ଉଦ୍ଦିଷ୍ଟ ନୁହେଁ, ଦେଶର ଅଖଣ୍ଡତା ଓ ସଂହତି ରକ୍ଷା ପାଇଁ ମଧ୍ୟ ଏକାନ୍ତ ଆବଶ୍ୟକ । ଆଜି ପ୍ରତ୍ୟେକ ନାଗରିକ ଏହି ସୁପରାମର୍ଶକୁ କାର୍ଯ୍ୟକାରୀ କରିବା ନିମନ୍ତେ ଦାବି କରିବା ଉଚିତ ହେବ । ଏହା ସହ ପୌର ସଂସ୍ଥା, ଗ୍ରାମ ପଞ୍ଚାୟତ, ପଞ୍ଚାୟତ ସମିତି ଓ ଜିଲ୍ଲା ପରିଷଦ ପ୍ରଭୃତିକୁ ମଧ୍ୟ ଅଧିକ ଶକ୍ତିଶାଳୀ କରାଯିବା ଆବଶ୍ୟକ । କ୍ଷମତାର ବିକେନ୍ଦ୍ରୀକରଣ ଆଜିର ଆହ୍ୱାନ ।

ଡି-୯/୧ (ଫ୍ଲାଟ୍),
ୟୁନିଟ୍-୯, ଭୁବନେଶ୍ୱର ।

# ଆମେ ଓ ଆମ ଗଣତନ୍ତ୍ର

ଅଧ୍ୟାପକ ବସନ୍ତ କୁମାର ମଲ୍ଲିକ

୧୯୫୦ ମସିହା ଜାନୁଆରୀ ୨୬ ତାରିଖରେ ସାମ୍ବିଧାନିକ ଭାବେ ଆମ ଦେଶରେ ଗଣତାନ୍ତ୍ରିକ ଶାସନ ପଦ୍ଧତିର ପ୍ରତିଷ୍ଠା କରାଗଲା । ବ୍ରିଟିଶ୍ ସାମ୍ରାଜ୍ୟବାଦ ଓ ଉପନିବେଶବାଦ ବିରୁଦ୍ଧରେ ସଂଗ୍ରାମ କରି ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ଭାରତୀୟ ଜନସାଧାରଣ ସ୍ୱାଧୀନତା ପାଇଲେ ଏବଂ ଏହି ସ୍ୱାଧୀନତାକୁ ସମସ୍ତେ ଉପଲବ୍ଧି କରିବା ନିମନ୍ତେ ତତ୍କାଳୀନ ରାଷ୍ଟ୍ରନାୟକମାନେ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାର ପ୍ରଣୟନ କଲେ । ଅର୍ଥାତ୍ ରାଜା ପ୍ରଜା ଓ ଧନୀ ଦରିଦ୍ର ନିର୍ବିଶେଷରେ ସମସ୍ତେ ସମାନ ଅଧିକାର ପାଇଲେ ଏବଂ ଭୋଟ ଦାନ ଦ୍ୱାରା ନିଜ ନିଜର ପ୍ରତିନିଧି ନିର୍ବାଚିତ କଲେ । ଗଣତନ୍ତ୍ର ଦ୍ୱାରା ଫଳପ୍ରଦ ଶାସନ ପ୍ରବର୍ତ୍ତିତ ହେଲା । ଲୋକମାନେ ନିଜେ ନିଜକୁ ଶାସନ କରୁଛନ୍ତି ବୋଲି ଅନୁଭବ କଲେ ।

## ଗଣତନ୍ତ୍ରର ଐତିହ୍ୟ :

ଗଣତନ୍ତ୍ର ଭାରତବର୍ଷ ପାଇଁ ଏକ ଆଧୁନିକ ଦର୍ଶନ ନୁହେଁ । ବ୍ରିଟିଶ୍ ଶାସନ କାଳରେ ଯଦିଓ ଭାରତୀୟମାନେ ପାଶ୍ଚାତ୍ୟ ଗଣତନ୍ତ୍ରର ସଂସ୍ପର୍ଶରେ ଆସିଥିଲେ, ଏହାର ଉତ୍ପତ୍ତି ବହୁ ପ୍ରାଚୀନ କାଳରୁ ବୈଦିକ ଯୁଗର ଆଦ୍ୟ ଭାଗରେ ରାଜତନ୍ତ୍ର ସୁଦୃଢ଼ ହୋଇ ନଥିଲା ଏବଂ ଏହି ସମୟରେ 'ସଭା' ଓ 'ସମିତି' ନାମକ ଦୁଇଟି ରାଜନୈତିକ ଅନୁଷ୍ଠାନର ସଦସ୍ୟମାନଙ୍କ ପରାମର୍ଶ କ୍ରମେ ରାଜା ଶାସନ କରୁଥିଲେ । ଗୋଟିଏ ଜନଜାତି (Tribe)ର ଦଳପତି ପରବର୍ତ୍ତୀ ସମୟରେ ରାଜା ହେଲେ । ସେ ସମୟରେ ଗୋଟିଏ ଜନଜାତିର ବୟସ୍କ ସଦସ୍ୟଙ୍କୁ ନେଇ 'ସଭା' ଓ ଜନଜାତିର ପ୍ରତ୍ୟେକ ସାଧାରଣ ସଦସ୍ୟଙ୍କୁ ନେଇ 'ସମିତି' ଗଠିତ ହେଉଥିଲା । ଦଳପତି ସାଧାରଣତଃ ନିର୍ବାଚିତ ହେଉଥିଲେ ଏବଂକ୍ରମଶଃ ସାମରିକ ଶକ୍ତି ବଳରେ ଦଳପତି ବଂଶାନୁକ୍ରମିକ ଭାବେ ଶାସନ କଲେ । ରାଜ୍ୟ ଶାସନ କ୍ଷେତ୍ରରେ "ସଭା ଓ ସମିତି"ର ସାହାଯ୍ୟ ଓ ଉପଦେଶ ଏକାନ୍ତ ଅପରିହାର୍ଯ୍ୟ ହେଉଥିବା ତତ୍କାଳୀନ ଗଣତାନ୍ତ୍ରିକ ଶାସନ ପଦ୍ଧତିରୁ ଜଣାଯାଏ । ଏହି ସମୟରେ ନାରୀମାନେ ମଧ୍ୟ "ସଭା ଓ ସମିତି"ର ସଦସ୍ୟା ଥିଲେ ।

ବୈଦିକ ଯୁଗର ପରବର୍ତ୍ତୀ ପର୍ଯ୍ୟାୟରେ ଦଳପତିମାନଙ୍କର ସାମରିକ ଶକ୍ତିର ବିକାଶ ଯୋଗୁଁ 'ସଭା' ଓ 'ସମିତି'ର ପ୍ରଭାବ ହ୍ରାସ ପାଇଲା ଏବଂ କ୍ରମଶଃ ଦଳପତିମାନେ ବଂଶାନୁକ୍ରମିକ ଶାସନ କରିବାରୁ ରାଜତନ୍ତ୍ର ଦୃଢ଼ୀଭୂତ ହେଲା । ରାଜା ଓ ରାଜ କର୍ମଚାରୀମାନେ ସ୍ୱେଚ୍ଛାଚାରୀ ହୋଇ ପଡ଼ିଲେ । ନାରୀମାନେ 'ସଭା ଓ ସମିତି'ରେ ଅଂଶ ଗ୍ରହଣ କରିବାରୁ ବଞ୍ଚିତା ହେଲେ । ଯଜ୍ଞ, ପଶୁବଳି ଓ ପୁରୋହିତ ପ୍ରଥା ଶୀର୍ଷ ସୀମାରେ ପହଞ୍ଚିଥିଲା ଏବଂ ଅନ୍ୟାୟ ଓ ଶୋଷଣ ହେଲା ପ୍ରାୟତଃ ଏକ ଧର୍ମନୈତିକ ବିଶ୍ୱାସ । ଏହି ସମୟରେ (ଖ୍ରୀଷ୍ଟିୟ ଷଷ୍ଠ ଶତାବ୍ଦୀରେ) ମହାତ୍ମା ଗୌତମ ବୁଦ୍ଧ ଏକ ସାମାଜିକ ପ୍ରତିବାଦମୂଳକ ଆନ୍ଦୋଳନର ସୂତ୍ରପାତ କରି ସମାଜରେ ମାନବିକ ଆଦର୍ଶ ଓ ରାଜନୀତିରେ ଗଣତାନ୍ତ୍ରିକ ମୂଲ୍ୟବୋଧ ପ୍ରତିଷ୍ଠା କରିବା ପାଇଁ ଉଦ୍ୟମ କରିଥିଲେ । କୌଣସି ଦେଶରେ ମତଦାନ ବା ଭୋଟ୍ ପ୍ରଥା ଆରମ୍ଭ ହେବା ପୂର୍ବରୁ ଗୌତମ ବୁଦ୍ଧ ପ୍ରଥମେ ଏଇ ପ୍ରଥା ପ୍ରବର୍ତ୍ତିତ କରିବାରୁ ଭାରତୀୟ ରାଜନୈତିକ ପରମ୍ପରା ପ୍ରତି ତାଙ୍କର ଅବଦାନ ମହାର୍ଘ । ଶାଳ ପତ୍ରକୁ ଭୋଟ୍ କାଗଜ (Ballat paper) ରୂପେ ବ୍ୟବହାର କରି ବୌଦ୍ଧ ସଂଘର ବିବାଦମାନ ସମସ୍ୟାର ସେ ଆଶୁ ସମାଧାନ କରୁଥିଲେ । ଗଣତନ୍ତ୍ରର ଏହି ମହାନ୍ ପରମ୍ପରା ଭାରତ ଭୂମିରେ ଆରମ୍ଭ ହୋଇଥିଲେ ସୁଦ୍ଧା କାଳକ୍ରମେ ରାଜତନ୍ତ୍ରର ସୁଦୃଢ଼ତା ଓ ବ୍ରାହ୍ମଣ୍ୟବାଦର ପ୍ରଭାବରେ ଏହା ବିଲୟ ହୋଇ ଯାଇଥିଲା । ସ୍ୱାଧୀନତା ପ୍ରାପ୍ତି ପରେ ଏହି ପରମ୍ପରାର ପୁନରୁଦ୍ଧାର କରାଗଲା । ସମ୍ବିଧାନରେ ବ୍ୟବହୃତ 'ସାମ୍ୟ, ମୁକ୍ତି ଓ ମୈତ୍ରୀ' ଏହି ତିନୋଟି ଗଣତାନ୍ତ୍ରିକ ଆଦର୍ଶ ବୌଦ୍ଧଧର୍ମର ରାଜନୈତିକ ତତ୍ତ୍ୱରୁ ଗୃହୀତ ହୋଇଛି ବୋଲି ସମ୍ବିଧାନ ପ୍ରଣେତା ବାବା ସାହେବ ଡକ୍ଟର ଆମ୍ବେଦକର ବିଶ୍ଳେଷଣ ଦ୍ୱାରା ଦର୍ଶାଇଛନ୍ତି ।

## ଗଣତନ୍ତ୍ର କ'ଣ ?

ଆଧୁନିକ ସମୟରେ ଗଣତନ୍ତ୍ରର ସଂଜ୍ଞା ପରିବର୍ତ୍ତନ ଶୀଳ । ଏଥିପାଇଁ ତିନିଜଣ ବିଜ୍ଞ ବ୍ୟକ୍ତିଙ୍କର ମତବାଦ ଉପରେ ଧ୍ୟାନ ଦିଆଯାଇପାରେ । Walter Begheotଙ୍କ ମତରେ ''Democracy is a Government by discussion''. ଆଲୋଚନା ଦ୍ୱାରା ଶାସନ ଭାରତବର୍ଷର ଏକ

ପୁରାତନ ପ୍ରଥା । Abraham Linconଙ୍କ ଅନୁଯାୟୀ Democracy is a Government of the people, by the people and for the people", ଭାରତର ସମ୍ବିଧାନ ପ୍ରଣେତା ଡକ୍ଟର ଆମ୍ବେଦକରଙ୍କ ଭାଷାରେ "Democracy is a form and method of Government where by revolutionary changes in the economic and social life of the people are brought about without bloodshed".

ଗଣତନ୍ତ୍ର ସଂଜ୍ଞା ଏହିପରି ଭାବେ ଯୁଗକୁ ଯୁଗ ପରିବର୍ତ୍ତିତ ହୋଇଛି । ସମଷ୍ଟିଗତ ଭାବେ ଏହା ବୁଝାଯାଇଛି ଯେ ଗଣତନ୍ତ୍ର କେବଳ ଏକ ସରକାର ଗଠନର ଶୈଳୀ ନୁହେଁ, ଏହା ସାମାଜିକ ଓ ଅର୍ଥନୈତିକ ଜୀବନର ଏକ ଅବିଚ୍ଛେଦ୍ୟ ଅଙ୍ଗ । ଗଣତନ୍ତ୍ରରେ ଅନ୍ୟାୟ ଓ ଶୋଷଣର ସ୍ଥାନ ନଥାଏ । ସାମ୍ୟ, ମୁକ୍ତି, ମୈତ୍ରୀ ଓ ନ୍ୟାୟର ଦର୍ଶନରେ ଉଦ୍‌ବୁଦ୍ଧ ଭାବଧାରା ହିଁ ଗଣତନ୍ତ୍ର । ଗଣତନ୍ତ୍ରର ଅନ୍ୟନାମ ପ୍ରଜାତନ୍ତ୍ର ବା ଲୋକତନ୍ତ୍ର । ଏଥିରେ ରାଜା ପ୍ରଜା ବା ଧନୀ ଗରିବ ଭେଦଭାବ ନଥାଏ କିମ୍ବା ଜାତି, ଧର୍ମ ଓ ସମ୍ପ୍ରଦାୟର ପ୍ରଭେଦ ନଥାଏ । ଆଇନ୍ ଦୃଷ୍ଟିରେ ସମସ୍ତେ ସମାନ ନିର୍ଦ୍ଦିଷ୍ଟ ଅପରାଧ ପାଇଁ ସମସ୍ତଙ୍କୁ ସମାନ ଦଣ୍ଡ ମିଳେ । ସମସ୍ତଙ୍କଠାରୁ ସମାନ କର ଆଦାୟ ହୁଏ । ତେଣୁ ଏକ ମାନବବାଦୀ ସାମାଜିକ ବ୍ୟବସ୍ଥା ଗଠନ କରିବା ଗଣତନ୍ତ୍ରର ପ୍ରଧାନ ଲକ୍ଷ୍ୟ ।

## ଗଣତନ୍ତ୍ରର ସୁରକ୍ଷା :

ଗଣତନ୍ତ୍ରର ସୁରକ୍ଷା ଗଣମାନଙ୍କ ଉପରେ ହିଁ ନିର୍ଭର କରେ । ଆମେ ଭାରତର ଇତିହାସ ପୃଷ୍ଠାକୁ ଫେରିଗଲେ ଦେଖିବା ଗଣତନ୍ତ୍ରର ପରାଜୟ ପରେ ରାଜତନ୍ତ୍ରର ଅଭ୍ୟୁଦୟ ଘଟିଛି । ଜନଜାତିର ଦଳପତିମାନେ ସାମରିକ ଶକ୍ତି ବଳରେ ବଂଶାନୁକ୍ରମେ ଶାସନ କରିଛନ୍ତି ଏବଂ ଏହା ରାଜତନ୍ତ୍ରକୁ ଦୃଢ଼ୀଭୂତ କରିଛି । ବଂଶାନୁକ୍ରମିକ ଶାସନ ଓ ଗଣତନ୍ତ୍ର ପରସ୍ପର ସର୍ବଦା ବିରୋଧୀ । ଗଣତନ୍ତ୍ରରେ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ବିଷୟ ହେଲା ବଂଶାନୁକ୍ରମିକ ଶାସନ ବ୍ୟବସ୍ଥାର ବିଲୋପ । ଏଥିପାଇଁ ଆମେରିକା ଇତିହାସରେ ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ରହିଛି । ଆମେରିକାର ପ୍ରଥମ ରାଷ୍ଟ୍ରପତି ଜର୍ଜ ୱାସିଂଟନ୍ ଆମେରିକାର ଲୋକମାନଙ୍କ ପାଇଁ ଦେବତା ଭଳି । ତାଙ୍କର କାର୍ଯ୍ୟକାଳ ପୂରିଗଲା ପରେ ଲୋକମାନେ ତାଙ୍କୁ ଦ୍ୱିତୀୟଥର ରାଷ୍ଟ୍ରପତି ଆସନ ଅଳଙ୍କୃତ କରିବା ପାଇଁ ଅନୁରୋଧ କଲେ । ୱାସିଂଟନ୍ କିନ୍ତୁ ଦ୍ୱିତୀୟଥର ରାଷ୍ଟ୍ରପତି କ୍ଷମତା ଗ୍ରହଣ କରିବାକୁ ମନା କରି କହିଥିଲେ,

"My dear people, you have forgotten the purpose for which we made the constitution because we did not want a hereditary ruler or a dictator. If after abandoing and swering away from the alliance of the English King you come to the country and stick to worship me year after year and turn after turn what happens to your principles ? Can you say that you have rightly revelled against the authority of the English King when you are substituting me in his place ? Even if your loyalty and fidelity compels you to plead that I should stand a second time I as one who enunciated that principle that we should not have hereditary authority, must not fall a prey to your emotion.

ଲୋକମାନଙ୍କ ଅନୁରୋଧ ରକ୍ଷାକରି ଯଦିଓ ୱାସିଂଟନ ଦ୍ୱିତୀୟଥର ରାଷ୍ଟ୍ରପତି ପଦ ଗ୍ରହଣ କଲେ, ତୃତୀୟଥର ପାଇଁ ସେ ଆଦୌ ରାଜି ହେଲେ ନାହିଁ । ଗଣତନ୍ତ୍ର ପାଇଁ ସେ ଏକ ମହାନ୍ ପରମ୍ପରା ସୃଷ୍ଟିକରି ଯାଇଛନ୍ତି । ତାଙ୍କ ମତରେ, ବଂଶାନୁକ୍ରମିକ ଶାସନ (ରାଜତନ୍ତ୍ର) ବିରୁଦ୍ଧରେ ସଂଗ୍ରାମ କରି ଯେଉଁ ଗଣତନ୍ତ୍ର ପ୍ରତିଷ୍ଠା କରାଯାଇଛି, ସେହି ଗଣତାନ୍ତ୍ରିକ ବ୍ୟବସ୍ଥାରେ ଜଣେ ବ୍ୟକ୍ତି ବାରମ୍ବାର ଉଚ୍ଚ କ୍ଷମତା ସମ୍ପନ୍ନ ପଦବୀ ଗ୍ରହଣ କଲେ ତାହା ରାଜତନ୍ତ୍ର ବା ସ୍ୱେଚ୍ଛାଚାରୀ ଶାସନ ସହ ସମାନ ହେବ ।

## ବ୍ୟକ୍ତିର ଭୂମିକା :

ଯେଉଁମାନଙ୍କର ସରକାର, ଯେଉଁମାନଙ୍କ ଦ୍ୱାରା ସରକାର ଏବଂ ଯେଉଁମାନଙ୍କ ପାଇଁ ସରକାର ସେମାନଙ୍କୁ ଆମେ ଗଣ ବୋଲି ବୁଝିବା । ସାବାଳକ ଗଣମତ ଦ୍ୱାରା ଆମ ଦେଶରେ ସରକାର ଗଠନ କରାଯାଇଥାଏ । ଗଣତନ୍ତ୍ରରେ ଜଣେ ଶିକ୍ଷିତ ନ ହୋଇ ପାରେ, କିନ୍ତୁ ଚେତନାଶୀଳ ହେବା ଆବଶ୍ୟକ । ଗଣଚେତନା ହିଁ ଗଣତନ୍ତ୍ରର ପୃଷ୍ଠଭୂମି । ଗଣଚେତନାର ଅଭାବରେ ସ୍ୱେଚ୍ଛାଚାରିତା ସୃଷ୍ଟି ହୁଏ ଏବଂ ଲୋକ ପ୍ରତିନିଧିମାନେ ନିଜକୁ ସେବକ ବୋଲି ନଭାବି ଶାସକ ବୋଲି ଭାବନ୍ତି । ଏହା ଦ୍ୱାରା ଗଣତନ୍ତ୍ରର ଉଦ୍ଦେଶ୍ୟ ପ୍ରତିହତ ହୋଇଥାଏ । ଅଧିକନ୍ତୁ ଉଦାସୀନତା ଗଣତନ୍ତ୍ରର ଶତ୍ରୁ । ଦେଶରେ ଶାସନ ବ୍ୟବସ୍ଥା, ଦୈନନ୍ଦିନ ରାଜନୈତିକ ପରିସ୍ଥିତି, ସମାଜ ମଙ୍ଗଳ ଓ ଉନ୍ନତି ପ୍ରତି ବ୍ୟକ୍ତିର ଉଦାସୀନତା ଗଣତନ୍ତ୍ରର ଉଦ୍ଦେଶ୍ୟକୁ ବିଫଳ କରିଥାଏ । ବ୍ୟକ୍ତିର ଭୂମିକା ଓ ମୂଲ୍ୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଯେ ପର୍ଯ୍ୟନ୍ତ ଗୋଟିଏ ବ୍ୟକ୍ତି – ଗୋଟିଏ ମୂଲ୍ୟର ଆଦର୍ଶରେ ଆମ୍ଭେମାନେ ଉଦ୍‌ବୁଦ୍ଧ ହୋଇ ନଥିବା, ସେପର୍ଯ୍ୟନ୍ତ ଆମ୍ଭେମାନେ ପ୍ରକୃତ ଗଣତନ୍ତ୍ରର ମୂଲ୍ୟ ବୁଝି ପାରିବା ନାହିଁ ।

## ଗଣତନ୍ତ୍ରର୍ ଚତୁର୍ଥ ସ୍ତମ୍ଭ :

ସମ୍ବାଦପତ୍ର ଗଣତନ୍ତ୍ରର ଚତୁର୍ଥ ସ୍ତମ୍ଭ । ଲୋକମାନଙ୍କୁ ସୂଚନା ଦେବା, ଶିକ୍ଷା ଦେବା, ସେମାନଙ୍କ ଚେତନା ବୃଦ୍ଧି କରିବା,

ସର୍ବସାଧାରଣଙ୍କର ମତାମତ ପ୍ରକାଶ କରିବା ଓ ସର୍ବୋପରି ପ୍ରତ୍ୟେକ କ୍ଷେତ୍ରରେ ନିରପେକ୍ଷତା ଅବଲମ୍ବନ କରିବା ସମ୍ବାଦପତ୍ରଗୁଡ଼ିକର ପ୍ରଧାନ ଲକ୍ଷ୍ୟ । କୌଣସି ବ୍ୟକ୍ତି ବିଶେଷ, ଗୋଷ୍ଠୀ କିମ୍ବା ରାଜନୈତିକ ଦଳର ସପକ୍ଷରେ ମତବାଦ ସୃଷ୍ଟି ନକରି ଦେଶର ଉନ୍ନତି ଓ ଗଣତନ୍ତ୍ରର ସୁରକ୍ଷା ଉଦ୍ଦେଶ୍ୟରେ ମତବାଦ ସୃଷ୍ଟି କରିବା ଏହାର ପ୍ରଧାନ କର୍ତ୍ତବ୍ୟ ହେବା ଉଚିତ । ନିର୍ଭୀକ ଓ ନିରପେକ୍ଷ ସମ୍ବାଦ ପରିବେଷଣ କରିବା ପାଇଁ ସମ୍ବାଦପତ୍ରଗୁଡ଼ିକର ସ୍ୱାଧୀନତା ରହିବା ଏକାନ୍ତ ଆବଶ୍ୟକ । ଗଣତନ୍ତ୍ରର ସୁରକ୍ଷା ଓ ଲୋକମତର ପ୍ରତିଷ୍ଠା ଦିଗରେ ସମ୍ବାଦପତ୍ରଗୁଡ଼ିକର ଭୂମିକା ମଧ୍ୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

## ଦଳ ଓ ବିରୋଧୀ ଦଳ

ଗଣତାନ୍ତ୍ରିକ ପଦ୍ଧତିରେ ସରକାର ଗଠନ ନିମନ୍ତେ ଆମ ଭାରତବର୍ଷରେ ବହୁ ଦଳ ବ୍ୟବସ୍ଥା ପ୍ରଚଳିତ ହୋଇଛି । ଏହି ବ୍ୟବସ୍ଥାରେ ସଂଖ୍ୟା ଗରିଷ୍ଠ ରାଜନୈତିକ ଦଳ ସରକାର ଗଢ଼ିଲାବେଳେ ସଂଖ୍ୟା ଲଘିଷ୍ଠ ଦଳ ବା ସଂଖ୍ୟା ଲଘିଷ୍ଠ ଦଳଗୁଡ଼ିକ ମିଶି ବିରୋଧୀ ଦଳ ଗଠନ କରିଥାନ୍ତି । ଗଣତାନ୍ତ୍ରିକ ଶାସନ ପଦ୍ଧତିରେ ଉଭୟ ଶାସକ ଦଳ ଓ ବିରୋଧୀଦଳର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ମଣ୍ଟେସ୍କ୍ୟୁଙ୍କ ମତବାଦ Checks and Balance ଏହା ଦ୍ୱାରା କାର୍ଯ୍ୟକାରୀ ହୋଇ କ୍ଷମତାରେ ଅଧିଷ୍ଠିତ ସରକାରଙ୍କର ସ୍ୱେଚ୍ଛାଚାରିତାକୁ ନିୟନ୍ତ୍ରିତ କରାଯାଇଥାଏ । କ୍ଷମତାରେ ଅଧିଷ୍ଠିତ ସଂଖ୍ୟାଗରିଷ୍ଠ ଦଳ କ୍ଷମତାରେ ନଥିବା ସଂଖ୍ୟା ଲଘିଷ୍ଠ ଦଳର ଅଧିକାରକୁ ଭୃକ୍ଷେପ ନକରି କୌଣସି କାର୍ଯ୍ୟକ୍ରମ (ଏପରିକି ଅଧିବେଶନରେ ମତବ୍ୟକ୍ତ, ବିଲ୍ ଆଲୋଚନା, ଆଇନ୍ ପ୍ରଣୟନ ଓ ଅନ୍ୟାନ୍ୟ ପ୍ରଶାସନିକ ନିଷ୍ପତ୍ତିରେ ଅଗ୍ରଗତି କରିବା ଅଗଣତାନ୍ତ୍ରିକ । ସେହିପରି ବିରୋଧୀଦଳ ମଧ୍ୟ ସରକାରଙ୍କ ଅଯଥା ବାରମ୍ବାର ବିରୋଧ ନକରି ସଂସଦୀୟ କାର୍ଯ୍ୟାବଳୀରେ ସହଯୋଗ କରିବା ଆବଶ୍ୟକ । ଯେଉଁ କାର୍ଯ୍ୟକ୍ରମରେ ଦେଶର ଉନ୍ନତି ଓ ଗଣତନ୍ତ୍ରର ସୁରକ୍ଷା ହୋଇ ପାରିବ ସେଥିରେ ବିରୋଧୀ ଦଳ ପୂର୍ଣ୍ଣ ସହଯୋଗ କରିବା ଉଚିତ ।

## ସାମ୍ବିଧାନିକ ନୈତିକତା

ସାମ୍ବିଧାନିକ ନୈତିକତା ଦ୍ୱାରା ଗଣତାନ୍ତ୍ରିକ ମୂଲ୍ୟବୋଧର ସୁରକ୍ଷା ହିଁ ହୋଇଥାଏ । ଡକ୍ଟର ଆମ୍ବେଦକରଙ୍କ ମତରେ ଆମ ସମ୍ବିଧାନରେ ଉଲ୍ଲିଖିତ "ବିଧିଗତ ବ୍ୟବସ୍ଥା" କେବଳ ଗୋଟିଏ କଙ୍କାଳ ଏବଂ "ସାମ୍ବିଧାନିକ ନୈତିକତା" ଏହାର ରକ୍ତ ମାଂସ ସଦୃଶ । ରକ୍ତ ମାଂସ ବିନା କଙ୍କାଳଟି ଯେପରି ନିର୍ଜୀବ ଓ ମୂଲ୍ୟହୀନ ସେହିପରି "ସାମ୍ବିଧାନିକ ନୈତିକତା" ବ୍ୟତୀତ ସମ୍ବିଧାନ (ବିଧିଗତ ବ୍ୟବସ୍ଥା)ଟି ଅସହାୟ ଓ ପଙ୍ଗୁ । ଅର୍ଥାତ୍ କ୍ଷମତାରେ ଆସୀନ ସରକାରଙ୍କ ଦାୟିତ୍ୱ ହେଲା ସାମ୍ବିଧାନିକ ନୈତିକତା ପ୍ରଦର୍ଶନ ସ୍ୱରୂପ ସମ୍ବିଧାନକୁ କାର୍ଯ୍ୟକାରୀ କରିବା । ପ୍ରଶାସନ ଅଯଥା ହସ୍ତକ୍ଷେପରୁ ମୁକ୍ତ ହେବା ଆବଶ୍ୟକ । ଦଳମତ ନିର୍ବିଶେଷରେ ସରକାର ସମସ୍ତଙ୍କ ପାଇଁ ସମାନ ସୁବିଧା ସୁଯୋଗ ଯୋଗାଇ ଦେବା ହିଁ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାର ପରିଚାୟକ ।

## ଜାତି ଓ ଶ୍ରେଣୀ ସଂଘର୍ଷ :

ଜାତି ଓ ଶ୍ରେଣୀ ସଂଘର୍ଷ ଗଣତନ୍ତ୍ରର ଶତ୍ରୁ । ଜାତି ଜାତି ଓ ଶ୍ରେଣୀ ଶ୍ରେଣୀ (ଧନୀ–ଦରିଦ୍ର) ମଧ୍ୟରେ ବିଭେଦ ଓ ପ୍ରଭେଦ ଯୋଗୁଁ ସମାଜରେ ହିଂସା, ଦ୍ୱେଷ ଓ ପରଶ୍ରୀକାତରତା ବ୍ୟାପୀ ଅରାଜକତା ସୃଷ୍ଟି କରେ । ବର୍ଣ୍ଣ ବିଦ୍ୱେଷ ନୀତି କେବଳ ଦକ୍ଷିଣ – ଆଫ୍ରିକାରେ ଦେଖାଯାଏ ନାହିଁ, ଏହି ନୀତି ମଧ୍ୟ ଭାରତର ପ୍ରତ୍ୟେକ ଗ୍ରାମରେ ଦେଖାଯାଏ । ଯଦିଓ ସମ୍ବିଧାନ ଦ୍ୱାରା ଅସ୍ପୃଶ୍ୟତା ନିବାରିତ ହୋଇଛି, ତଥାପି ଲକ୍ଷ ଲକ୍ଷ ଲୋକ ଏହି କଳଙ୍କିତ ପ୍ରଥାର ଶିକାର ହେଉଛନ୍ତି । ଶିକ୍ଷାର ପ୍ରସାର, ଚେତନାର ବିକାଶ ଓ ଅର୍ଥନୈତିକ ଉନ୍ନତି ଦ୍ୱାରା ଏହି କୁସଂସ୍କାର ଓ ଉଚ୍ଚ ନୀଚ ଭେଦଭାବ ଦୂର କରାଯାଇ ପାରିବ । ଏଥିପାଇଁ ସରକାରଙ୍କର ଯେତିକି ଦାୟିତ୍ୱ ରହିଛି, ସମାଜର ମଧ୍ୟ ସେତିକି କର୍ତ୍ତବ୍ୟ ରହିଛି । ଅନ୍ୟାୟକୁ ପ୍ରତିରୋଧ ଓ ଶୋଷଣକୁ ଉଚ୍ଛେଦ କରିବା ପାଇଁ ଆମ ସମାଜରେ ସାଧାରଣ ବିବେକ (public conscience) ସୃଷ୍ଟି ହେବା ଦରକାର । ଏହା ଦ୍ୱାରା ଜାତି ଓ ଶ୍ରେଣୀ ସଂଘର୍ଷ ବନ୍ଦ ହେବା ସଙ୍ଗେ ସଙ୍ଗେ ଏକ ସୁସ୍ଥ ଗଣତାନ୍ତ୍ରିକ ସମାଜର ପୁନର୍ଗଠନ ହୋଇପାରିବ ।

## ସାମାଜିକ ଓ ଅର୍ଥନୈତିକ ଗଣତନ୍ତ୍ର

ଆମ୍ଭେମାନେ ଭାରତ ବର୍ଷରେ ଯେଉଁ ଗଣତନ୍ତ୍ର ପାଇଛୁ, ତାହା କେବଳ "ରାଜନୈତିକ ଗଣତନ୍ତ୍ର" । କିନ୍ତୁ "ସାମାଜିକ ଓ ଅର୍ଥନୈତିକ ଗଣତନ୍ତ୍ର" ବିନା ରାଜନୈତିକ ଗଣତନ୍ତ୍ର ପୂର୍ଣ୍ଣାଙ୍ଗ ନୁହେଁ କିମ୍ବା ଏହାର ସ୍ଥାୟିତ୍ୱ ସମ୍ଭବ ନୁହେଁ । ସମାଜରେ ପୂର୍ବଭଳି ସାମାଜିକ ଓ ଅର୍ଥନୈତିକ ବୈଷମ୍ୟ ରହିଥିବା ସ୍ଥଳେ ସମସ୍ତେ ରାଜନୈତିକ ଗଣତନ୍ତ୍ର ଉପଭୋଗ କରି ପାରିବେ ନାହିଁ । ରାଜନୈତିକ କ୍ଷେତ୍ରରେ ଗୋଟିଏ ବ୍ୟକ୍ତି, ଗୋଟିଏ ଭୋଟ, ଗୋଟିଏ ମୂଲ୍ୟ'ର ଆଦର୍ଶ ଗୃହୀତ ହେଉଥିବା ସ୍ଥଳେ ସାମାଜିକ ଓ ଅର୍ଥନୈତିକ କ୍ଷେତ୍ରରେ ଗୋଟିଏ ବ୍ୟକ୍ତି, ଗୋଟିଏ ମୂଲ୍ୟ'ର ଆଦର୍ଶ ପ୍ରଚଳିତ ହେଉନଥିବା ଏକ ଦ୍ୱନ୍ଦ୍ୱପୂର୍ଣ୍ଣ ସମସ୍ୟା । ଏହି ଦ୍ୱନ୍ଦ୍ୱପୂର୍ଣ୍ଣ ସମସ୍ୟାର ସମାଧାନ ହେଉଛି ସାମାଜିକ ଓ ଅର୍ଥନୈତିକ ଗଣତନ୍ତ୍ରର ପ୍ରତିଷ୍ଠା କରିବା । ଏହାଦ୍ୱାରା ସମାଜରୁ ଜାତି ଓ ଶ୍ରେଣୀ ଭିତ୍ତିକ ଭେଦଭାବ ଦୂର ହେବ ଏବଂ ରାଜନୈତିକ ଗଣତନ୍ତ୍ର ସୁଦୃଢ଼ ଓ ସ୍ଥାୟୀ ହୋଇ ପାରିବ ।

ଆମ ଗଣତନ୍ତ୍ରର ସୁରକ୍ଷାର ଦାୟିତ୍ୱ ଆମ ଉପରେ । ଆମ୍ଭେମାନେ ଯେଉଁଭଳି ଗଣଶକ୍ତିକୁ ବିନିଯୋଗ କରିପାରିବା, ସେହିଭଳି ଶାସନ ପାଇବା । ଆମ୍ଭେମାନେ ଦକ୍ଷ ଓ ନୀତିବାନ ପ୍ରତିନିଧିଙ୍କୁ ନିର୍ବାଚିତ କଲେ ଗଣତନ୍ତ୍ରର ସୁରକ୍ଷା ହୋଇ ପାରିବ ଏବଂ ସୁଶାସନ ମିଳିପାରିବ । ଗଣତନ୍ତ୍ରରେ ନୈତିକତା ମୂଲ୍ୟବୋଧ ସମ୍ବନ୍ଧରେ Harold Laski କହିଛନ୍ତି ଯେ, ଗଣତାନ୍ତ୍ରିକ ଆଦର୍ଶ ଓ ନୈତିକ ମୂଲ୍ୟବୋଧ ପରସ୍ପର ପରିପୂରକ । ଗଣତନ୍ତ୍ରକୁ ନୈତିକତା ମୂଲ୍ୟବୋଧକୁ ଅଲଗା କରିଦେଲେ ଗଣତନ୍ତ୍ର ଖଣ୍ଡ ଖଣ୍ଡ ହୋଇଯିବ । ସମ୍ବିଧାନ ପ୍ରଣୟନ ଦ୍ୱାରା ଆମ୍ଭେମାନେ ଗଣତନ୍ତ୍ର ପାଇ ସାରିଛୁ ବୋଲି ଭାବିବା ଉଚିତ ନୁହେଁ । ଏହା ଦ୍ୱାରା ଗଣତନ୍ତ୍ର ପାଇବାର ପ୍ରକ୍ରିୟା ଆରମ୍ଭ ହୋଇଛି ମାତ୍ର ।

ଅଧ୍ୟାପକ, ଇତିହାସ ବିଭାଗ
ସାମନ୍ତ ଚନ୍ଦ୍ରଶେଖର କଲେଜ, ପୁରୀ ।

# ଗୋଦାବରୀଶଙ୍କ ବିଶ୍ୱଦୃଷ୍ଟି

ଅଧ୍ୟାପକ ତୀର୍ଥାନନ୍ଦ ମିଶ୍ର

ଯୁଗେ ଯୁଗେ କବି ମନୀଷୀ ବିଶ୍ୱର ଶୋକାପ୍ଲୁତ ପରିବେଶ ନେଇ ଆବେଗମୂର୍ଚ୍ଛିତ । କେଉଁ ଏକ ଆଲୋକୋଜ୍ଜ୍ୱଳ ମୁହୂର୍ତ୍ତର ବିଷାଦିତ ଚିତ୍ତବୃତ୍ତି ଯେତେବେଳେ ସର୍ଜନାତ୍ମକ ପ୍ରକ୍ରିୟାରେ ଜୀବନ୍ତ ହୋଇଉଠେ, ସେତେବେଳେ ତାହା ଏକ ମହାର୍ଘ ସୃଷ୍ଟିରେ ରୂପାନ୍ତରିତ ହୋଇଯାଏ । ଶରବିଦ୍ଧ କ୍ରୌଞ୍ଚର ରକ୍ତାକ୍ତ କଳେବର ଓ ନିଃସଙ୍ଗ କ୍ରୌଞ୍ଚିର ବ୍ୟଥାବିଧୁରିତ ବିଳାପଧ୍ୱନି ରାମାୟଣର ପ୍ରତିଷ୍ଠା ଉତ୍ସବ ପାଳନ କରିଥିଲା । ହୃଦୟର ଏହି ଏକାନ୍ତ ଆଲୋଡ଼ନ ଯୁଗେ ଯୁଗେ ଉନ୍ନତ କାବ୍ୟ-ସାହିତ୍ୟ ସୃଷ୍ଟି କରିଛି । ସେ ବେଦନାବୋଧର କୌଣସି ନିର୍ଦ୍ଦିଷ୍ଟ ସୀମା ନାହିଁ, ତାହା ବିଶ୍ୱର ଯେ କୌଣସି ଅତୁଳ ପରିବେଶର ପ୍ରତୀକ । ଏ ବେଦନାବୋଧ ମୁଖ୍ୟତଃ ଦୁଇଭାବରେ ଅନୁଭୂତ ହୁଏ । ପ୍ରଥମତଃ ନିଜର ନିଃସଙ୍ଗ ସ୍ଥିତାବସ୍ଥାକୁ ନେଇ ଓ ଦ୍ୱିତୀୟତଃ ନିଜର ପାର୍ଥିବ ଅନ୍ତଶୋବୋଧକୁ ନେଇ । ସଂସାରର ପ୍ରତିଟି ସ୍ତରରେ ଏକ ଅସ୍ୱାଭିର ବେଦନା ନିତ୍ୟ ବର୍ତ୍ତମାନ । ଏହାକୁ ପ୍ରାଜ୍ଞ ବ୍ୟକ୍ତି ସ୍ପଷ୍ଟ ଉପଲବ୍ଧି କରିପାରେ, ମାତ୍ର ସଂସାର ବିଳାସୀ ବ୍ୟକ୍ତି ତାକୁ ସହଜରେ ଉପଲବ୍ଧି କରିପାରେ ନାହିଁ । ମହର୍ଷି ପାତଞ୍ଜଳି ସମଗ୍ର ବିଶ୍ୱକୁ ଏକ ଦୁଃଖଦ ପରିବେଶ ରୂପେ ପରିକଳ୍ପନା କରିଛନ୍ତି । ତାଙ୍କ ପ୍ରସିଦ୍ଧ ଗ୍ରନ୍ଥ 'ଯୋଗସୂତ୍ର'ରେ ସେ 'ଦୁଃଖମେବ ସର୍ବ ବିବେକିନଃ' (୨।୧୫) କହିବା ମୂଳରେ ସାଂସାରିକ ଦୁଃଖ ଯନ୍ତ୍ରଣାର ହେତୁ ଓ ଏଥିରୁ ପରିତ୍ରାଣର ଉପାୟ ସମ୍ପର୍କରେ ଚିନ୍ତା କରିଛନ୍ତି ।

ପୃଥିବୀ ପୃଷ୍ଠରେ ମାନବର ସ୍ଥିତି ବାସ୍ତବିକ୍ ଆଶ୍ଚର୍ଯ୍ୟକର । ଲୌକିକ ପଦାର୍ଥ ପ୍ରତି ମୋହ ଏବଂ ସଂସାର ପ୍ରତି ଅହେତୁକ ଆସକ୍ତିହିଁ ଅବଶେଷରେ ତାର ଆସବାହର କାରଣ ହୋଇଥାଏ । ସବୁକ୍ଷେତ୍ରରେ ସେ ସନ୍ନ୍ୟାସକୁ ସ୍ୱୀକାର କରି ମଧ୍ୟ ନୈତିକ ପ୍ରତିଷ୍ଠା ଅର୍ଜନ କରିପାରେନି । ଲୁତିପାଣି ପରି ନିଜେ ନିଜ ଜାଲରେ ସେ ଛନ୍ଦି ହୋଇଯାଏ (୧) । ବନ୍ଧନର ହେତୁ ଖୋଜିବସେ, ମାତ୍ର କସ୍ତୁରୀମୃଗ ପରି ସଫଳ ହୋଇପାରେନାହିଁ । ମନୁଷ୍ୟର ଏହି ଯନ୍ତ୍ରଣା ବିଶ୍ୱର ଏକ ବହୁଚର୍ଚ୍ଚିତ ଅସମାହିତ ସମସ୍ୟା । ଏହାର ଏକମାତ୍ର ନିରାକରଣର ଉପାୟ ହେଉଛି ସମଗ୍ର ମାନବ ସମାଜ, ପ୍ରାଣୀ ଜଗତ ତଥା ପ୍ରକୃତି ପ୍ରତି ଶ୍ରଦ୍ଧା ଓ ସେବା ମନୋବୃତ୍ତି । ଯୁଗେ ଯୁଗେ ଭାରତୀୟ ଧର୍ମଧାରା ବିଶ୍ୱ ପ୍ରତି ସହୃଦୟତାର ସ୍ତୁତିଗାନ କରିଛି । ପର ପାଇଁ ଜୀବନ ଉତ୍ସର୍ଗ କରିବାର ଭାରତୀୟ ଦର୍ଶନ ମାନବ ସମାଜକୁ ପ୍ରୋତ୍ସାହନ ଦିଏ । ପରର ଉପକାର ପାଇଁ ବୃକ୍ଷ ଫଳ ଭାରରେ ଆନତ ହୋଇଯାଏ, ନଦୀ ନିଜ ଜଳଧାରାକୁ ନିଃଶେଷ କରିଦିଏ ଓ ଗାଈ କ୍ଷୀର ଦାନକରେ । ସୁତରାଂ ପରୋପକାର ପାଇଁ ଏ ଶରୀରର ସୃଷ୍ଟି (୨) । ପାଶ୍ଚାତ୍ୟ ଜଗତର ପ୍ରସିଦ୍ଧ ଚିନ୍ତାନାୟକ ଜୁଲିଆ କାର୍ଣ୍ଣେ (୧୮୨୩-୧୯୦୮) ଦୟା ତଥା ପରୋପକାରର ପ୍ରଶଂସା କରିବାକୁଯାଇ କହନ୍ତି, ଅନୁକମ୍ପାର କ୍ଷୁଦ୍ର କର୍ମ ଓ ଭଲ ପାଇବାର ସଂକ୍ଷିପ୍ତ ଶବ୍ଦ ପୃଥିବୀକୁ ସ୍ୱର୍ଗରେ ରୂପାନ୍ତରିତ କରିଦିଏ (୩) ।

॥୨॥

ଗୋଦାବରୀଶ (ଖ୍ରୀ: ୧୮୯୬-୧୯୫୬) ଙ୍କ କାବ୍ୟ ଚେତନାରେ ଏହି ସହୃଦୟ ପରୋପକାରୀ ଆତ୍ମସତ୍ତାଟି ଅତି ସହଜରେ ବାରି ହୋଇପଡ଼େ । ଆଜିର ଏହି ଦୁଃଖପୂର୍ଣ୍ଣ ସଂସାରରେ ନିଷ୍ପାପ ଓ ସରଳ ହୃଦୟ ପୂର୍ଣ୍ଣତଃ ଦୁର୍ଲଭପ୍ରାୟ । ତେଣୁ କବିଙ୍କ ଦରଦୀ ହୃଦୟ ସାଧାରଣ ଜନତାର ସେବା ମାଧ୍ୟମରେ ପରମାତ୍ମାଙ୍କ ସେବା ଜନିତ ଆନନ୍ଦକୁ ଉପଲବ୍ଧି କରିଛି । ତେଣୁ ଶିଶୁର ଅମୃତମୟ ହସ ସହ ସାମିଲ ହୋଇଯାଇ ସେ ମୃତ୍ୟୁକୁ ଅସ୍ୱୀକାର କରିବାକୁ ଗୁହିଁଛନ୍ତି ଓ ସମସ୍ତଙ୍କ ଦୁଃଖକୁ ଆପଣାର କରି ଏକ ସ୍ୱର୍ଗୀୟ ତ୍ୟାଗପୂତ ବିଷାଦରେ ଜୀବନଯାପନ କରିବାର ଶପଥ ଗ୍ରହଣ କରିଛନ୍ତି (୪) । ବିଶ୍ୱ ନିମିତ୍ତ ଆତ୍ମତ୍ୟାଗ କରିବାପାଇଁ ତାଙ୍କର ଏ ବ୍ୟାକୁଳ ଆତ୍ମୀୟତା ମୁଖ୍ୟତଃ ଦୁଇଟି କାରଣରୁ ହୋଇଥିଲା । ପ୍ରଥମଟି ଥିଲା ସମସାମୟିକ ତ୍ୟାଗପୂତ ବ୍ୟକ୍ତିସତ୍ତାର ପ୍ରଭାବରୁ ଓ ଦ୍ୱିତୀୟଟି ହେଉଛି ପ୍ରାଚୀନ ଭାରତର ଆଦର୍ଶ ସଂସ୍କୃତିର ପ୍ରଭାବରୁ । ତାଙ୍କ ଜୀବନ ଥିଲା ଜାତି ତଥା ଦେଶ ପ୍ରେମରେ ଉଦ୍‌ବେଳିତ ଏକ ଆଦର୍ଶମୟ ଜୀବନ । ଏକ୍ଷେତ୍ରରେ ତାଙ୍କର ଆଦର୍ଶ ଥିଲେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଯେ କି ସ୍ୱଦେଶପ୍ରୀତି ଓ ଜାତୀୟ ଭାବ ପାଇଁ ଏକ ବିଶ୍ୱପ୍ରୀତି ପୂର୍ଣ୍ଣ ପ୍ରାଣର ପକ୍ଷପାତୀ ଥିଲେ (୫) । ସମଗ୍ର ସଂସାରରେ ତାଙ୍କ ଦୃଷ୍ଟିରେ 'ଅନ୍ୟ' କେହି ନଥିଲେ ସମସ୍ତେ ଥିଲେ ଆପଣାର (୬) । ଗୋପବନ୍ଧୁଙ୍କର ଏହି ତ୍ୟାଗପୂତ ତଥା

ସର୍ବଗ୍ରାସୀ ଦରଦୀ ବ୍ୟକ୍ତିସତ୍ତା ଗୋଦାବରୀଶଙ୍କୁ ବହୁ ଭାବରେ ପ୍ରଭାବିତ କରିଥିଲା । ଗୋପବନ୍ଧୁ ହିଁ ଥିଲେ ତାଙ୍କ 'ଜୀବନତରୀ'ର ସାର୍ଥକ 'କାଣ୍ଡାରୀ' (୭) । କେବଳ ଆତ୍ମଜୀବନୀରେ ନୁହେଁ, ତାଙ୍କ କବିତାମାନଙ୍କରେ ମଧ୍ୟ ଉତ୍କଳମଣିଙ୍କ ପ୍ରତି ଏହି ଶ୍ରଦ୍ଧାଶିକ୍ତ ଦୃଷ୍ଟି ପୂର୍ଣ୍ଣତଃ ମୂର୍ଚ୍ଛିତ ହୋଇଛି । 'ସାକ୍ଷୀ ଗୋପାଳ' କବିତାରେ ଗୋପବନ୍ଧୁଙ୍କ ଆତ୍ମୋତ୍ସର୍ଗ (୮) ଭାବନାରେ ବର୍ଣ୍ଣନାରେ ଏହା ସହଜରେ ଲକ୍ଷଣୀୟ । ପୁରୀ ତଥା କଟକ ଜିଲ୍ଲାର ସମସ୍ତ ମମତା ଓ ଉଚ୍ଚ ଚାକିରୀ ପ୍ରତି ଲୋଭ ପରିହାର କରି ସୁଦୂର ଚକ୍ରଧରପୁରରେ ଓଡ଼ିଆ ଭାଷାର ଉନ୍ନତି ପାଇଁ ପଡ଼ି ରହିଥିବା ଗୋଦାବରୀଶଙ୍କ ମୁଖ୍ୟ ପ୍ରେରଣା ଥିଲେ ଗୋପବନ୍ଧୁ (୯) । ଗୋପବନ୍ଧୁଙ୍କ ବ୍ୟତୀତ ତାଙ୍କ ଜୀବନକୁ ପ୍ରଭାବିତ କରିବାଭଳି ଅନ୍ୟ ପ୍ରତିଭାମାନେ ମଧ୍ୟ କମ୍ ନଥିଲେ । ସେମାନଙ୍କ ମଧ୍ୟରେ ପ୍ରମୁଖ ଥିଲେ, ଚିକିତ୍ସକଙ୍କ ପରାମର୍ଶକୁ ଅସ୍ୱୀକାର କରି ପୁରୀ ଜିଲ୍ଲାର ବାଣପୁର ଅଞ୍ଚଳରେ ଦରିଦ୍ର କନ୍ଧମାନଙ୍କ ଦ୍ୱାରା ଭେଟି ଦିଆ ହୋଇଥିବା 'ଟଭା' ନାମକ ଫଳକୁ ନିଜ ରାତି ଭୋଜନ ପାଇଁ ସ୍ଥିର କରିଥିବା ମହାତ୍ମା ଗାନ୍ଧୀ (୧୦), ରାଜ ପ୍ରାସାଦର ସୁଖକୁ ଅସ୍ୱୀକାର କରି ସଂସାରରେ ଜ୍ଞାନର ବିକାଶ ଲାଗି ସେବାମାର୍ଗକୁ ଆପଣାର କରିନେଇଥିବା ସାମନ୍ତ ଚନ୍ଦ୍ରଶେଖର (୧୧) ଓ ମାତ୍ର ପଚିଶ ଟଙ୍କା ବେତନ ପାଇ ପୁରୀ ସହରରେ ସପରିବାର ବାସକରି ଦରିଦ୍ର ତଥା ମେଧାବୀ ଛାତ୍ରମାନଙ୍କୁ ମାସିକ ପାଞ୍ଚ, ସାତ ଟଙ୍କା ଦେଉଥିବା ଶିକ୍ଷକ ମାଖନଲାଲ ଗାଙ୍ଗୁଲି (୧୨) ।

ଦ୍ୱିତୀୟତଃ, ପ୍ରାଚୀନ ଭାରତୀୟ ସଂସ୍କୃତିର ଆଦର୍ଶ ତାଙ୍କ ଭିତରେ ବିଶ୍ୱପ୍ରୀତିର ପ୍ରେରଣା ସୃଷ୍ଟି କରିଥିଲା । ପୁରାଣ, ଲୋକକଥା ତଥା ଇତିହାସର ବିଭିନ୍ନ ଚରିତ୍ର ତାଙ୍କ ଭିତରେ ଏହି ବିଶ୍ୱପ୍ରୀତିର ବୀଜକୁ ଅଙ୍କୁରୋଦ୍‌ଗମ କରାଇବାରେ ସାହାଯ୍ୟ କରିଥିଲା । ସ୍ୱାର୍ଥତ୍ୟାଗ ତଥା ବିଶ୍ୱପ୍ରୀତିର ଜ୍ୱଳନ୍ତ ନିଦର୍ଶନ ଭାବେ କବି ଗୋଦାବରୀଶ ପୁରାଣର ଦୁଇଟି ଚରିତ୍ରକୁ ମୁଖ୍ୟତଃ ଆଲୋକିତ କରିଛନ୍ତି । ସେମାନଙ୍କ ମଧ୍ୟରୁ ଜଣେ ହେଉଛନ୍ତି ଶିବି ଓ ଦଧୀଚି । ଚନ୍ଦ୍ର ବଂଶୀୟ ପ୍ରସିଦ୍ଧ ନରପତି ଯଯାତିଙ୍କ ପୁତ୍ର ଉଶୀନର ଏବଂ ତାଙ୍କପୁତ୍ର ହେଉଛନ୍ତି ଶିବି । ଶିବିଙ୍କ ସ୍ୱାର୍ଥହୀନ ଦାନର ପରୀକ୍ଷା ପାଇଁ ଇନ୍ଦ୍ର ସଞ୍ଚାଣ ଓ ଅଗ୍ନି କପୋତ ହୋଇ ଆସନ୍ତି । ଶିବି କପୋତର ଜୀବନରକ୍ଷା ପାଇଁ ଅବଶେଷରେ ତୁଳାଦଣ୍ଡର ଏକ ପାର୍ଶ୍ୱରେ କପୋତକୁ ବସାଇ ଅପର ପାଖରେ ଅନୁରୂପ ଓଜନର ମାଂସ ନିଜ ଦେହରୁ କାଟିପକାନ୍ତି ଓ ସମାନ ନହେବାରୁ ନିଜେ ତୁଳାଦଣ୍ଡରେ ବସି ପଡ଼ନ୍ତି । ଏହି ପରିସ୍ଥିତିରେ ଉଭୟ ଇନ୍ଦ୍ର ଓ ଅଗ୍ନି ରାଜାଙ୍କୁ ସାଧୁବାଦ ନଜଣାଇ ରହିପାରିନାହାନ୍ତି (୧୩) । ଦ୍ୱିତୀୟ ଉପାଖ୍ୟାନଟିରେ ସ୍ୱର୍ଗ ସମ୍ପଦ ଓ ଦେବତାଙ୍କ ସମ୍ମାନ ରକ୍ଷା କରିବାପାଇଁ ଦଧୀଚିଙ୍କ ସ୍ୱେଚ୍ଛାକୃତ ଅସ୍ଥିଦାନ କବିଙ୍କୁ ଦେଶପାଇଁ ଜୀବନଦାନ କରିବାର ପ୍ରେରଣା ଦେଇଛି (୧୪) । ଏହି ଦଧୀଚି ଚରିତ୍ର କେବଳ ଗୋଦାବରୀଶଙ୍କୁ ନୁହେଁ ସ୍ୱୟଂ ଗୋପବନ୍ଧୁଙ୍କୁ ମଧ୍ୟ ବହୁଭାବେ ଜାତିପାଇଁ ଆତ୍ମୋତ୍ସର୍ଗ କରିବାକୁ ପ୍ରେରଣା ଦେଇଥିବା କଥା ତାଙ୍କ ସାହିତ୍ୟକୃତିମାନଙ୍କରୁ ଜଣାଯାଏ (୧୫) ।

ତ୍ୟାଗପୂତ ଐତିହାସିକ ଚରିତ୍ର ଭାବରେ କବି ଶାକ୍ୟସିଂହ ଗୌତମ, ନରସିଂହ ଦେବ ଏବଂ ଦଳବେହେରା ଏହି ତିନୋଟି ଚରିତ୍ରର ଅବତାରଣା କରିଛନ୍ତି । ଗୌତମଙ୍କ ଚରିତ୍ର ଭିତରୁ ଜୀବ ପ୍ରତି ଦୟା ମନୋଭାବ (୧୬), ଉତ୍କଳର ଗଜପତି ନରସିଂହ ଦେବ କୋଣାର୍କ ମନ୍ଦିର ନିର୍ମାଣ ବେଳେ ଜଗୁ ବିଶ୍ୱାଣି ହାତକୁ ପାନ ବଢ଼ାଇ ଦେବା ପ୍ରସଙ୍ଗ ଭିତରେ ତାଙ୍କର ଉଦାର କଳାପ୍ରୀତିର ପରିଚୟ ଓ ଜଗୁ ବିଶ୍ୱାଣି ସମସ୍ତ କଥା ଅବଗତ ହେବାପରେ ତାର ଅନୁଶୋଚନାକୁ ଦୂରେଇ ଦେବାକୁ ନରସିଂହ ଦେବଙ୍କର ଶିଳ୍ପୀକୁ ପ୍ରଶଂସା କରିବାର ପ୍ରବଣତା (୧୭) ଓ ବ୍ୟକ୍ତିଗତ ସ୍ୱାର୍ଥକୁ ବିସ୍ମୃତ ହୋଇ ସାମାନ୍ୟ ଏକ କୈବର୍ତ୍ତର ଉପକାର ପାଇଁ ଦଳବେହେରାଙ୍କ ଆତ୍ମବଳିଦାନରୁ କବି ମାନବ ଜାତି ପ୍ରତି ସେବା ଭାବକୁ (୧୮) ଆପଣାର କରିଛନ୍ତି ।

ତୃତୀୟତଃ, ଅଭିଜ୍ଞତା ଓ ଅନୁଭୂତି ମନୁଷ୍ୟର ଚିତ୍ତବୃତ୍ତିକୁ ନିୟନ୍ତ୍ରଣ କରି ତାକୁ ଉପଯୁକ୍ତ ମାର୍ଗ ଦେଖାଇଥାଏ । ଗୋଦାବରୀଶଙ୍କ ଦରଦୀ କବିପ୍ରାଣ ତାଙ୍କ ପରିଚିତ ପରିବେଶ ଭିତରୁ ହିଁ ବିକଶିତ ହୋଇ ଉଠିଥିଲା । ପିଲାଦିନେ ଅଭାବ କୋଳରେ ଲାଳିତ ପାଳିତ ହୋଇଥିବା ଗୋଦାବରୀଶଙ୍କ ଆଦ୍ୟ କୈଶୋର ଚରିତ୍ର ପ୍ରତି ନିୟତ ଏକ ଅଭାବଗ୍ରସ୍ତ ପରିବେଶ ଭିତରେ ବ୍ୟଥିତ ହୋଇଉଠିଥିଲା । ମାତ୍ର ଏହି ଦାରିଦ୍ର୍ୟ ଭିତରେ ବଞ୍ଚି ରହିଥିବା ତାଙ୍କ ପାରିବାରିକ ସଂପ୍ରୀତି ଓ ପ୍ରତ୍ୟେକ ସଦସ୍ୟଙ୍କର ପ୍ରତ୍ୟେକଙ୍କ ପ୍ରତି ସ୍ନେହ ମନୋଭାବ ତାଙ୍କୁ ପରବର୍ତ୍ତୀ କାଳରେ ଦରଦୀ ଓ ସ୍ନେହ ପ୍ରବଣ କରିଥିଲା (୧୯) । ଶିକ୍ଷାର ଆଲୋକରେ ଆଲୋକିତ ଗୋଦାବରୀଶଙ୍କ ଅନ୍ତରରେ ଜନ୍ମଭୂମି ବାଣପୁର ପ୍ରତି ଥିଲା ଅକଳନ ମମତା । ପିଲାବେଳର ବାଣପୁର ପରବର୍ତ୍ତୀ କାଳରେ ନିଜର ପ୍ରକୃତିପ୍ରାଣତା ଦାରିଦ୍ର୍ୟର ଆଭରଣରେ ଗୋଦାବରୀଶଙ୍କ ଲେଖନୀରେ ଧରା ଦେଇଥିଲା (୨୦) । ଛାତ୍ର ଜୀବନରେ ଦେଶ ପାଇଁ ସ୍ୱାଧୀନତା ଆଣିବାକୁ ବ୍ରିଟିଶ୍ ଶକ୍ତି ବିରୁଦ୍ଧରେ ବଣ ଜଙ୍ଗଲରେ ଲୁଚି ଲୁଚି ବିପଦପୂର୍ଣ୍ଣ ସଂଗ୍ରାମ ଚଳାଉଥିବା 'ସନ୍ତ୍ରାସବାଦୀ'ମାନଙ୍କ ପ୍ରତି ଗୋଦାବରୀଶଙ୍କ ଶ୍ରଦ୍ଧା ତଥା ସମ୍ମାନର ଅନ୍ତ ନଥିଲା (୨୧) । ଛିନ୍ନ ବସନା, ବିଖଣ୍ଡିତ କଳେବରା ଓ ଅଶ୍ରୁମତୀ ଉତ୍କଳ ଜନନୀର କଥା ଚିନ୍ତାକରି ସେ ଉଦାସୀନ ହୋଇ ପଡୁଥିଲେ । ତାଙ୍କୁ ଗଭୀର ଦୁଃଖ ଲାଗୁଥିଲା, ଯେତେବେଳେ କଲିକତାର ପ୍ରବାସୀ ଓଡ଼ିଆ ନିଜ ପରିଚୟ ଦେବାକୁ ଡରି ହୀନମନ୍ୟତାକୁ ଆପଣାର କରି ଦରାଖଣ୍ଡିଆ ବଙ୍ଗଳା ଭାଷାରେ କଥାବାର୍ତ୍ତା କରୁଥିଲେ (୨୨) । ଏହି ଅବହେଳିତ ଜାତି ପ୍ରାଣରେ ଏକ ଅକ୍ଷୟ ତଥା ଅମ୍ଳାନମୟୀ ରସସଞ୍ଚାର କରିବାକୁ ଗୋଦାବରୀଶ ବଦ୍ଧ ପରିକର ଥିଲେ । ଉଚ୍ଚଶିକ୍ଷା ପରେ ଜନସେବା ପାଇଁ ଆକର୍ଷଣୀୟ ସରକାରୀ ଚାକିରିକୁ ସେ ପ୍ରତ୍ୟାଖ୍ୟାନ କରିଥିଲେ । ଅର୍ଥାଭାବ ସେବାକାର୍ଯ୍ୟକୁ ବ୍ୟାହତ କରୁଥିଲା (୨୩) । ଏହି ପରିବେଶରେ ଗୋଦାବରୀଶଙ୍କ ଦରଦୀ ବ୍ୟକ୍ତିସତ୍ତା କ୍ରମ ମୁକୁଳିତ ହୋଇ ଉଠୁଥିଲା, ଯାହା ନିଃସ୍ୱାର୍ଥ ଦେଶପ୍ରେମ ଓ ଉଦାତ୍ତ ମାନବବାଦର ଉଚ୍ଚାରଣ ପାଇଁ ପରବର୍ତ୍ତୀ ମୁହୂର୍ତ୍ତକୁ ଅପେକ୍ଷା କରି ରହିଥିଲା ।

॥ ୩ ॥

ବ୍ୟକ୍ତିଗତ ଜୀବନର ଅଭିଜ୍ଞତା ତଥା ପର୍ଯ୍ୟାପ୍ତ ଲୋକଚରିତ୍ର ଅଧ୍ୟୟନର ଫଳଶ୍ରୁତି ରୂପେ ଗୋଦାବରୀଶ ଜୀବନ ଯନ୍ତ୍ରଣାର ଭିନ୍ନ ହେତୁ ନିରୂପଣ କରିଥିଲେ । ଜଣେ ଆଦର୍ଶ ସମାଜସେବୀ ଥା ଚିନ୍ତାଶୀଳ ଜନନାୟକ ଭାବରେ ତାଙ୍କର ପ୍ରଧାନ ଭୂମିକା ଥିଲା ମାଜକୁ ଦୁଃଖମୁକ୍ତ କରିବା । ସେ ସମସ୍ତ ଦୁଃଖର କାରଣକୁ ଖ୍ୟତଃ ଦୁଇଟି ଦୃଷ୍ଟିକୋଣରୁ ବିଚାର କରିଛନ୍ତି । ପ୍ରଥମତଃ ଧର୍ମ ଶ୍ୱାସୀ ପାରମ୍ପରିକ ଦୃଷ୍ଟିକୋଣରୁ ଓ ଦ୍ୱିତୀୟତଃ ସଂସ୍କାରପ୍ରୟାସୀ ସ୍ତବବାଦୀ ଦୃଷ୍ଟିକୋଣରୁ । ଗୋପବନ୍ଧୁଙ୍କ ସଂସର୍ଗ ତଥା କଶିକ୍ଷା ଦ୍ୱାରା ପ୍ରଭାବିତ ଗୋଦାବରୀଶ ସଂସ୍କାରବାଦୀ ଷ୍ଟିକୋଣକୁ ନିଜ ଜୀବନର ମୂଳମନ୍ତ୍ର ରୂପେ ଗ୍ରହଣ କରିଥିଲେ ଧ ସାଧାରଣ ଲୋକବିଶ୍ୱାସ ପ୍ରତି ଅନୁରକ୍ତି ଓ ପରମ୍ପରାପ୍ରୀତିକୁ ର୍ଣ୍ଣ ପରିହାର କରିପାରିନାହାନ୍ତି । ତେଣୁ ବିଶ୍ୱ ଦରଦର ହେତୁ ରୂପଣ କରିବା ପାଇଁ ସେ 'କଳି ମହିମା' ଉପରେ ପ୍ରାଧାନ୍ୟ ଦଇଛନ୍ତି । କଳିଯୁଗର ପ୍ରଭାବରୁ ପୃଥିବୀକୁ ପାପ ଘୋଟିବା, ୀ ଠାରୁ ସ୍ୱାମୀ ଦୁଃଖ ପାଇବା, ବୃଦ୍ଧ ପିତାମାତାଙ୍କୁ ପୁଅ ଯନ୍ତ୍ରଣା ଦବା ତଥା ଧର୍ମର ଡଙ୍ଗା ବୁଡ଼ିଯିବା ଆଦି ଘଟଣାମାନ ଘଟିବା ପରେ କବି ବିଶ୍ୱାସ କରିଛନ୍ତି (୨୪) । ଅପରପକ୍ଷରେ ସ୍ତବବାଦୀ ଦୃଷ୍ଟିକୋଣରୁ ଜୀବନଯନ୍ତ୍ରଣାର ହେତୁ ନିରୂପଣ ପାଇଁ ଗାଦାବରୀଶ ସମାଜର ବିଭିନ୍ନ ବିଭାବ ଉପରେ ଆଲୋକପାତ କରିଛନ୍ତି । ଜାତିର ଦୀର୍ଘଦିନ ଧରି ପରାଧୀନତା, ଶାସନକଳର ସ୍ୱେଚ୍ଛାଚାରିତା ଏବଂ ଶିକ୍ଷାପ୍ରତି ଜନମାନସର ଅନାଦର ଆଦି ଏହାର ମୁଖ୍ୟ ବିଭାବ । ଅପଶାସନ ବିରୁଦ୍ଧରେ ସ୍ୱର ଉଠାଇବା ପାଇଁ ଙ୍କର ଇଚ୍ଛା ନଥିଲା । ପ୍ରଗତିର ପ୍ରତୀକ ରେଳରାସ୍ତାର ର୍ମାଣରେ ଦୁଃଖୀ ଲୋକମାନେ କିପରି ବିନା କ୍ଷତିପୂରଣରେ ଜର ପୁନାଥାଳି ଜମି ହରାଇଲେ ତା'ର ଅଶ୍ରୁଳ ବିବରଣୀ ଗୋଦାବରୀଶଙ୍କ ଆତ୍ମଜୀବନୀରେ ସ୍ପଷ୍ଟ (୨୫) । ଏହା ବିରୁଦ୍ଧରେ ସ୍ୱର ଉଠାଇବା ପାଇଁ କାହାର ଶକ୍ତି ନଥିଲା । ଶିକ୍ଷାହୀନତା ଓ ଗୋଷ୍ଠୀ ବିବାଦ ଏହାର ମୁଖ୍ୟ କାରଣ ଥିଲା । ପୁରୀର ସୁପ୍ରସିଦ୍ଧ 'ମୁକ୍ତିମଣ୍ଡପ'ର ପଣ୍ଡିତ ସଭାରେ ମଧ୍ୟ ପଣ୍ଡିତମାନେ ଶିକ୍ଷାକୁ ନେଇ ହୀନମାନ୍ୟ ଓ ବ୍ୟବସାୟାତ୍ମିକା ଭାବ ପୋଷଣ କରୁଥିଲେ(୨୬) । ଦାରିଦ୍ର୍ୟ ଭିତରେ ଲୋକାଶ୍ରୁର ଚରମ ବିସ୍ଫୋରିତ ହୁଏ । ତେଣୁ ଅଭାବୀ କବି ୧୯୨୭ ମସିହାରେ ଗଭୀର ଅର୍ଥସଙ୍କଟ ଭିତରେ ମାତୃଶ୍ରାଦ୍ଧକୁ କେବଳ ଅଶ୍ରୁଜଳରେ ସମ୍ପାଦନ କରିଛନ୍ତି (୨୭) ।

ଏ ସମସ୍ତ ଭିତରେ କବି ପ୍ରକୃତିର ଏକ ଅଳଙ୍ଘନୀୟ ନିୟମକୁ ସ୍ୱୀକାର କରିଛନ୍ତି । ସେ ମନୁଷ୍ୟର ଏପରି ଏକ ମୁହୂର୍ତ୍ତକୁ ଆବିଷ୍କାର କରିଛନ୍ତି, ଯେତେବେଳେ ତା'ର ସମସ୍ତ ସଂସ୍କାରବୋଧ ଓ ଆତ୍ମିକ ଅଭିମାନ ଭାଙ୍ଗିଯାଏ । ତାହା ହେଉଛି 'ଭାଗ୍ୟବାଦ' ବା 'ଦୈବ ବିଶ୍ୱାସ' । ଏହି ତତ୍ତ୍ୱଟିକୁ କବି ଅନେକ ଶୋକାର୍ଦ୍ର ପରିବେଶର 'ହେତୁ' ରୂପେ ଗ୍ରହଣ କରିଛନ୍ତି । ମୃତ୍ୟୁ ନିକଟରେ ମନୁଷ୍ୟର ସମସ୍ତ ଗର୍ବିତ ସତ୍ତା କେତେ ଅସହାୟ ଓ କରୁଣ ଏହା ତାଙ୍କ ଅନେକ କବିତାରୁ ସ୍ପଷ୍ଟ ବାରି ହୁଏ । ମାତ୍ର ଏ କ୍ଷେତ୍ରରେ କବି ସମ୍ପୂର୍ଣ୍ଣ ଭାଗ୍ୟ ବାଦୀ ହୋଇ ଉଠିଛନ୍ତି । ସୂତିକା ଗୃହରେ ସମାଧି ପାଇଁ ଶେଯ ସଜଡ଼ା ହେବା ଓ ମଧୁ ଶଯ୍ୟା ଗୃହରେ ଜୀବନର ଶାମ ସଙ୍ଗୀତ ଶୁଭିବା ଭିତରେ କବି ଏକାନ୍ତ ଭାଗ୍ୟବାଦୀ ତଥା ଦୈବ ବିଶ୍ୱାସୀ ହୋଇପଡ଼ିଛନ୍ତି (୨୮) । ମୃତ୍ୟୁକୁ ଭୟ ନକରି ସେ ତା'ର ସନାତନ ସ୍ଥିତିକୁ ବିଶ୍ଳେଷଣ କରିଛନ୍ତି ଓ ତାହା ପ୍ରତ୍ୟେକ ସ୍ଥିତିର ଅନ୍ତିମ ଅବସ୍ଥା ବୋଲି ସ୍ୱୀକାର କରିନେଇଛନ୍ତି (୨୯) । ବୃକ୍ଷରୁ ଫୁଲ ଝଡ଼ିପଡ଼ିବା ଭଳି ଶରୀର ବୃନ୍ତରୁ ଏହି ଜୀବନ ଫୁଲ ଝଡ଼ିଯାଏ । ତେଣୁ ସେଥିପାଇଁ ଅନୁଶୋଚନା କରିବାର କୌଣସି ଆବଶ୍ୟକତା ନାହିଁ, ଏହା କବି ଉପଲବ୍ଧି କରିଛନ୍ତି (୩୦) । ଥରେ ଗ୍ଳାଳିଯିବା ଧନ ହାତକୁ ଆଉ ଫେରି ଆସେନାହିଁ, ଏହା କବି ନିଜ ସାନଭଉଣୀର ବିୟୋଗରେ ଅନୁଭବ କରିଛନ୍ତି (୩୧) । ସ୍ୱାଭାବିକ ମୃତ୍ୟୁକୁ କବି ଗ୍ରହଣ କରି ନେଲେ ମଧ୍ୟ ଅସ୍ୱାଭାବିକ ମୃତ୍ୟୁ ପ୍ରତି ତାଙ୍କ ଅଭିମାନ କମି ନାହିଁ । ଏ କ୍ଷେତ୍ରରେ ସେ ଦୁଇଜଣ କ୍ଷୀଣଜୀବୀ ମହାପୁରୁଷ ଶଙ୍କରାଚାର୍ଯ୍ୟ ଓ ଗୋପବନ୍ଧୁଙ୍କ (୩୨) ଭଳି ମୁହୂର୍ତ୍ତ ମାତ୍ର ଜୀବନକୁ ଅନୁଭବ କରି ନିଜକୁ ଅବିଚଳିତ ରଖିବାକୁ ଚାହିଁଛନ୍ତି । ଗୋପବନ୍ଧୁଙ୍କ 'ଧର୍ମପଦ'ର 'ପ୍ରଖର ହୁତାଶନ' ଓ 'ସହସ୍ର ବର୍ଷ କୁହୁଳା' ଅଗ୍ନିର ପାର୍ଥକ୍ୟ ତାଙ୍କ ଜୀବନର ପରମ ସାନ୍ତ୍ୱନା ହୋଇଛି ।

କେବଳ ଜୀବନ ନୁହେଁ, ପୃଥିବୀର ପ୍ରତିଟି ପାର୍ଥିବ ବସ୍ତୁ ଯେ ନଶ୍ୱର, ଏକଥା କବିଙ୍କ ହୃଦ୍‌ବୋଧ ହୋଇଛି । ଧନତୃଷ୍ଣା, ଯାହା ମନୁଷ୍ୟକୁ ପଥଭ୍ରଷ୍ଟ ଓ ବିଚଳିତ କରେ, ତାର ଅସାରତା ଦେଖାଇ ଦେବାକୁ କବି ମଧ୍ୟ ଭୁଲି ନାହାନ୍ତି (୩୩) । ଏହି ସଂସାରରେ ସୁଖ ଏକ ମୂଲ୍ୟହୀନ ଶବ୍ଦ । ଜୀବନହିଁ ଏକ ଅଦୃଶ୍ୟ ଦୁଃଖପୂର୍ଣ୍ଣ ଗଳି ଓ ଯୌବନହିଁ ବାର୍ଦ୍ଧକ୍ୟର ବିଶ୍ୱସ୍ତ ବାର୍ତ୍ତାବହ (୩୪) । ନଶ୍ୱର ତଥା କ୍ଷଣଭଙ୍ଗୁର ବିଶ୍ୱରେ ଉପଯାତ ଯନ୍ତ୍ରଣା ପ୍ରତି କବିଙ୍କର ଏହା ଏକ ବିବେକାନୁମୋଦିତ ଆଶ୍ୱାସନା ।

॥୪॥

ପୃଥିବୀ ପ୍ରତି ଅବହେଳିତ ଚରିତ୍ର ପାଇଁ ଗୋଦାବରୀଶଙ୍କ ଲେଖନୀ ଅଶ୍ରୁବିନ୍ଦୁ ହୋଇ ଝରିଯାଇଛି । ଅସହାୟ ଦରିଦ୍ରଭିକାରୀ, ପୁତ୍ର ସନ୍ତାନହୀନ ବାପ ମା', ଅନାଥ ବାଳକ ବାଳିକା, କ୍ଳାନ୍ତ ଓ ଅବସନ୍ନ ପଦଯାତ୍ରୀ, ଅସହାୟା ନାରୀ, ଅଥର୍ବ ବୃଦ୍ଧ, ଅଛୁଆ ଜାତିର ନିରନ୍ନ ମଣିଷ, ନଗର ସଭ୍ୟତାରେ ଧ୍ୱସ୍ତ ପଲ୍ଲୀଗ୍ରାମର ଅଧିବାସୀ, କାରାଗାରର ବନ୍ଦୀ, ମୂକ ମୌନ ମଣିଷ ଓ ବୃକ୍ଷଲତା ଏମାନଙ୍କ ପ୍ରତି କବି ତୁଣ୍ଡରେ 'ଆହାପଦ'ର ଅନ୍ତ ନାହିଁ । ଦରିଦ୍ର ଭିକାରୀ ଚରିତ୍ରକୁ ନେଇ କବି ଅନେକଗୁଡ଼ିଏ କବିତା ଲେଖିଛନ୍ତି । ଦାରିଦ୍ର୍ୟ, ଅଶ୍ରୁ ଓ କ୍ଷୁଧା ଛଡ଼ା ଏହି ଭିକାରୀମାନଙ୍କର ଅନ୍ୟକିଛି ଅବଶିଷ୍ଟ ସମ୍ବଳ ନଥାଏ (୩୫) । ଧନୀକ ନିକଟକୁ ସେ କିଛି ମାଗିବା ପାଇଁ ଗଲେ ପ୍ରତିଦାନରେ ପାହାର ଖାଏ (୩୬) । କବିଙ୍କ ଦୃଷ୍ଟିରେ ଉଦ୍ଧତ ଧନୀକ ଶ୍ରେଣୀର ଯୁଗ ଯୁଗ ପାଇଁ ଏହା ମାନବାତ୍ମା ପ୍ରତି ପୀଡ଼ନର ପ୍ରତିକ । କବିଙ୍କର ଏହି ରୁଦ୍ଧ ଶ୍ୱାସ ଓ ଗୋପନ ଅଶ୍ରୁ କିନ୍ତୁ ଅନ୍ୟ ଏକ କବିତାରେ ବିପ୍ଳବ ପାଲଟି ଯାଇଛି । ଦରିଦ୍ରର ଏହି ଲାଞ୍ଛନା ବିରୁଦ୍ଧରେ ସ୍ୱର ଉଠାଇ ସେ 'ବିଧାତା' ବୋଲି କୁହା ହେଉଥିବା ସେହି ଚେତନାମୟ ଶକ୍ତିର ଜାଗରଣ ଚାହିଁଛନ୍ତି (୩୭) । ଅନ୍ୟ

ଏକ କବିତାରେ ଭିକାରୀଟିଏ ଧନୀକର ଧନ ତୃଷ୍ଣା ଦେଖି କ୍ଷୁବ୍ଧ ହୋଇଛି ଓ ଧନ ପାଇଁ ଧନୀକ ପୂଜାକରୁଥିବା ଭଗବାନଙ୍କୁ ନିଜେ ପୂଜା କରିବାର ଇଚ୍ଛାକରି ଧନୀର ପ୍ରାସାଦ ଦ୍ୱାରରୁ ଭିକ୍ଷା ନକରି ଫେରି ଆସିଛି (୩୮)। ଯେତିକିମାତ୍ର ଆବଶ୍ୟକ, ସେତିକି ସଂଗ୍ରହ କରୁ ଅବଶିଷ୍ଟକୁ ଲୋକ କଲ୍ୟାଣରେ ବିନିଯୋଗ କରିବା, ଶ୍ରୀମଦ୍‌ଭାଗବତ ଏହା ମହାନ୍ ବାଣୀ (୩୯), ଗୋଦାବରୀଶଙ୍କ ଦରିଦ୍ର ଭିକାରୀଟି ଠିକ୍‌ତାହାହିଁ ଆଚରଣ କରିଛି ଓ ଧନୀକର ଧନତୃଷ୍ଣାକୁ ଉପହାସ କରିଛି (୪୦)। ଧନୀର ସମସ୍ତ ଘୃଣା ଓ ଉପେକ୍ଷାକୁ ନୀଳକଣ୍ଠ ଭଳି ଆକଣ୍ଠ ପାନକରି ଦରିଦ୍ର ଧନୀର କିଛୁ କ୍ଷତି ଘୃହେଁନା–ଗୋଦାବରୀଶ ଏହିକଥାକୁ ଏକ ପ୍ରତିକାତ୍ମକ ପରିବେଶରେ ଉପସ୍ଥାପନ କରିଛନ୍ତି। ଏକଦା ଏକ ଧନୀ ଗୃହର କୁକୁର ତାଙ୍କ ପ୍ରତିବେଶୀ ଭିକ୍ଷୁକଟିକୁ ସ୍ନେହ ପରିବର୍ତ୍ତେ ଘୃଣା କରୁଥିବାବେଳେ ସମୟକ୍ରମେ ସେ ଧନୀ ପରିବାରଟି ନିଶ୍ଚିହ୍ନ ହୋଇଯାଇଛି ଓ ଏହି ଅସହାୟ କୁକୁରଟିକୁ ଦରିଦ୍ର ପଡ଼ିଶାଟି ଖାଇବାକୁ ଦେଉଛି। ମାତ୍ର ଏକ ଦୁରନ୍ତ ଅଭିମାନରେ ସେ ତାହା ଗ୍ରହଣ କରୁନି ଓ ଏହା ଦେଖି ଭିକାରୀର ଆଖି ଲୋତକାର୍ଦ୍ର ହୋଇଯାଉଛି। ଏହି କବିତା ଧନୀ ଗୋଷ୍ଠୀଙ୍କ ପ୍ରତି ଏକ ବ୍ୟଞ୍ଜନାତ୍ମକ ବ୍ୟଙ୍ଗ ମାତ୍ର (୪୧)। ଗୋଦାବରୀଶଙ୍କ କାବ୍ୟନାୟକ ଧନକୁ ନୁହେଁ, ମାନବିକତାକୁ ସମ୍ମାନ ଦିଏ। ତେଣୁ ତାଙ୍କ ଭିକାରୀ ଧନୀର ଦ୍ୱାରରେ ହାତ ନପାତି ହାତ ପତାଏ ଦରିଦ୍ର କୃଷକର କୁଟୀରରେ ଓ କୃଷକ ବଧୂର ସନ୍ତୋଷଭରା ମୁଠି ଗୁଡ଼ଳରେ ସେ 'ନିଃସର୍ଗ ସୁଖ' ପାଇଯାଏ (୪୨)। ଏ ଭିକାରୀ ତୁଳୀ ତଳ୍ପ ଗୋଜେନ୍ୟ। ମାଟି ମା'ର କୋମଳ ଶେଯରେ ବାହୁକୁ ତକିଆ କରି ଶୋଇଯାଏ ପ୍ରକୃତି ସେବିତ ପରିବେଶ ମଧ୍ୟରେ (୪୩) ଭର୍ତ୍ତୃହରିଙ୍କ ଦରିଦ୍ର 'ସୁଖୀ' ମଣିଷଟି ପରି (୪୪)।

ସନ୍ତାନହୀନ ଦୁଃଖୀ ଦମ୍ପତିଙ୍କ ପ୍ରତି ଗୋଦାବରୀଶଙ୍କ ସମବେଦନାର ଅନ୍ତନାହିଁ। 'ଦୁଃଖୀଧନ' କବିତାରେ ଧନସମ୍ପଦର ପ୍ରାଚୁର୍ଯ୍ୟରେ ଲାଳିତ ଦଳେଇଙ୍କର ସନ୍ତାନ ବିହୀନ ଜୀବନ ଏକାନ୍ତ ଦୁର୍ବିସହ ହୋଇପଡ଼ିଛି। ସନ୍ତାନହିଁ ପାରିବାରିକ ଜୀବନର ସମ୍ପ୍ରତି ତଥା ସନ୍ତୋଷର ମୂଳଉତ୍ସ। ସନ୍ତାନ ବିହୀନ ଜୀବନରେ କୌଣସି ଭବିଷ୍ୟତ ସମ୍ଭାବନା ମଧ୍ୟ ନଥାଏ (୪୫)। ଶିଶୁର ନିଷ୍ପାପ ଶୁଭ୍ର ହସଭିତରେ କବି ଏକ ପ୍ରୀତି ମଧୁର ସଂସାରର ଛବି ଦେଖିଛନ୍ତି। ତାର ଶାଣିତ ସୁଷମା ପୁଣି ଅଧିକ ମନୋଜ୍ଞ। ତା'ର ସୁପ୍ତି ଭିତରେ ଥାଏ ଗଭୀର ସୁଖ ଓ ଅନନ୍ତ ସ୍ୱପ୍ନ ସମ୍ଭାର। କରସ୍ପର୍ଶରେ ନିଦ୍ରିତ ଓଠରେ ତା'ର ଧାରେ ପ୍ରଶାନ୍ତ ହସ ଖେଳିଯାଏ (୪୬)। ସ୍ମୃତି ଭିତରେ ଏହି ଶିଶୁପ୍ରୀତି ପୁଣି ଗୋଦାବରୀଶଙ୍କ ଲେଖନୀରେ ଅତି ମନୋରମ। ସତ୍ୟବାଦୀ ବନବିଦ୍ୟାଳୟ ଛାଡ଼ି କର୍ମଭୂମି ଚନ୍ଦ୍ରଧରପୁରକୁ ଆସିଲାବେଳେ ବିଦ୍ୟାଳୟର ଛାତ୍ରମାନଙ୍କ ଚିନ୍ତାରେ ସେ ଦୁଃଖିତ ହୋଇଉଠିଛନ୍ତି (୪୭)। ଶିଶୁର ନିଷ୍କପଟ ସାରଲ୍ୟରେ କବି ଲେଖନୀ ଯେପରି ପ୍ରଗଳ୍‌ଭତା'ର ଅସହାୟତା ଓ ବ୍ୟର୍ଥ ଭବିଷ୍ୟତ ପରିକଳ୍ପନାରେ ତାହା ସେତିକି ଅଶ୍ରୁବିଷାଦିତ। ଖଡ଼େଇକଳାର ରାଣୀ ତାଙ୍କ ଅସହାୟ ଶିଶୁପୁତ୍ର ସହ ଅରଣ୍ୟଗ୍ରାମୀ ହେବା ବେଳେ ଦେଢ଼ବରଷର ଅଭିରାମଙ୍କ ଭବିଷ୍ୟତ ଚିନ୍ତାରେ କବି ଶଙ୍କିତ ହୋଇଯାଆନ୍ତି (୪୮)। ମୟୂରଭଞ୍ଜରେ ଜଣେ ବନ୍ଧୁଙ୍କ ଘରେ ଖରାଦିନେ ହାତ ପଙ୍ଖା ଟାଣୁ ଥିବା ଖାଲ ସରସର ପିଲାଟି ପ୍ରତି କବିଙ୍କର ମଧ୍ୟ ସମବେଦନାର ଅନ୍ତନାହିଁ (୪୯)। ଚନ୍ଦ୍ରଧରପୁରରେ ଅବସ୍ଥାନ କରୁଥିବା ବେଳେ ଧୂଳିମାଟିରେ ବସିଥିବା ଚଣ୍ଡାଳ ଶିଶୁଟି କବିଙ୍କ ସ୍ନେହସିକ୍ତ ଦୃଷ୍ଟିର ସଙ୍କେତ ପାଇ କବିଙ୍କୁ ନିଜ ଅଣ୍ଟିରୁ ମୁଠିଏ ମୁଢ଼ି ଦେବାକୁ ଇଚ୍ଛା କରିଛି କବି। ନିର୍ବିକାର ଭାବରେ କେବଳ ତା'କୁ ସ୍ୱୀକାର କରିନାହାନ୍ତି ସମାଜର ବର୍ଣ୍ଣ ବୈଷମ୍ୟ ଓ ଜାତିଭେଦ ପ୍ରଥା ବିରୁଦ୍ଧରେ ମଧ୍ୟ ସେ ସ୍ୱର ଉଠାଇଛନ୍ତି (୫୦)।

ନାରୀର ଅସହାୟତା, ବେଦନାବୋଧ ଓ ଦାରିଦ୍ର୍ୟ ପାଇଁ ଗୋଦାବରୀଶଙ୍କ ଲେଖନୀ ଅଶ୍ରୁସଜଳ। ଅଜଣା ଅଶୁଣା ଶାଶୁଘରକୁ ଯାଉଥିବା 'କାନ୍ଦେ ଜାଇନାମଙ୍କ' ଝିଅଟିର ଦୁର୍ଦ୍ଦଶା ଓ ତା'ର ସଲୀଳ ସମାଧି ତାଙ୍କ ଲେଖନୀରେ କାଳୋତ୍ତୀର୍ଣ୍ଣ ହୋଇପାରିଛି (୫୧)। ଅନ୍ୟ ଏକ ଅସହାୟ ନାରୀ ଚରିତ୍ର ଲଳିତା ଭିତରେ କବି ଜାଇର ଅସହାୟ ବେଦନାକୁ ରୂପ ଦେଇଛନ୍ତି (୫୨)। କ୍ଷୁଧା ଓ ସ୍ୱାସ୍ଥ୍ୟହୀନତାର ଉତ୍କଟ ଦୁର୍ଭିକ୍ଷ ମଧ୍ୟରେ ନାରୀ ଜୀବନର ଅସହାୟତା ଓ ତା' ଭିତରେ ବଞ୍ଚିବାର ଅଦମନୀୟ ସ୍ପୃହା ତାଙ୍କ କବିତାମାନଙ୍କରେ ପ୍ରତିଫଳିତ (୫୩)। ତତ୍କାଳୀନ ନାରୀ ଜୀବନର ଅସହାୟତା ଓ ଦାରିଦ୍ର୍ୟର ବର୍ଣ୍ଣନାରେ ଗୋପବନ୍ଧୁଙ୍କ ଲେଖନୀ ଅଶ୍ରୁସଜଳ ହୋଇଥିଲା (୫୪)। ମାତ୍ର ଗୋଦାବରୀଶ ଗୋପବନ୍ଧୁଙ୍କ ସେହି 'ଯେତେ' ଆତ୍ମା ମଧ୍ୟରୁ ଜଣେ ଦୁଇଜଣଙ୍କୁ ଆଣି ନିଜର କଳ୍ପନା ବିଳାସୀ କବିତ୍ୱ ମାଧ୍ୟମରେ ଜୀବନ୍ତ ଓ ରସୋତ୍ତୀର୍ଣ୍ଣ କରାଇପାରିଛନ୍ତି (୫୫)। ତାଙ୍କ କାବ୍ୟ ନାୟିକା ପୁରୁଷର କାମାନ୍ଧ ସ୍ୱାର୍ଥଗ୍ରସ୍ତ ପ୍ରେମ ଦ୍ୱାରା ବିତାଡ଼ିତା ହେଲାପରେ ମଧ୍ୟ ଆଜୀବନ ପ୍ରତିକ୍ଷା କରିବାର ଶପଥ ନେଇଛି (୫୬)। ମିଥ୍ୟା ଅପରାଧରେ ଜେଲ ବରଣ କରି ମଧ୍ୟ ସେ ସନ୍ତାନଟିଏ ଜନ୍ମ ଦେଉଛି ଓ ତା' ପ୍ରତି ନିଜର ସମସ୍ତ ସ୍ନେହ ଅଜାଡ଼ି ଦେଇଛି (୫୭)। ଅସ୍ପୃଶ୍ୟତାର କଳଙ୍କ ଭିତରେ ଆତ୍ମଗୋପନ କରିଥିବା ନାରୀ ଜୀବନର ସ୍ନେହ ଓ ପ୍ରୀତିର ସ୍ପର୍ଶ ତାଙ୍କର ଦୁଇଟି କବିତାରେ ସ୍ପଷ୍ଟ। ସେ ସମୟରେ ଅସ୍ପୃଶ୍ୟ ଭାବେ ପରିଚିତ ବାଉରୀ ଘରର ଝିଅଟିଏ ତୃଷାର୍ତ୍ତ ଗୋଦାବରୀଶଙ୍କୁ ଜଳଦାନ କରିଛି। ମାତ୍ର ସମାଜର ଏଥିପ୍ରତି ସମର୍ଥନ ଥିବାରୁ କବି ଅନ୍ଧ ସମାଜ ବ୍ୟବସ୍ଥା ବିରୁଦ୍ଧରେ ନୀରବ ବିଦ୍ରୋହ ଘୋଷଣା କରିଛନ୍ତି।(୫୮)। ସେହିପରି ମୟୂରଭଞ୍ଜର କନ୍ଧ ରମଣୀ ହାତରୁ ପାଣି ପିଇ କବି ନଦୀ ତଥା ଝରଣାକୁ ଅନାବଶ୍ୟକ ବୋଲି କହି ସେହି କନ୍ଧ ବଧୂ ହାତରେ ଜଳପାତ୍ରଟି ସବୁଦିନେ ଜଳପୂର୍ଣ୍ଣ ଥାଉ ବୋଲି କାମନା କରିଛନ୍ତି।(୫୯)। ଅସହାୟା ବିଧବା ଓ ଜୀର୍ଣ୍ଣ ଶୀର୍ଣ୍ଣା ବୃଦ୍ଧା ମଧ୍ୟ ଗୋଦାବରୀଶଙ୍କ ଲେଖନୀରେ କମ୍ ସମ୍ବେଦନା ପାଇ ନାହିଁ। ପରଲୋକଗତ ପତିଙ୍କ ସ୍ମୃତିରେ ତପସ୍ୱିନୀ ଭଳି ନିଜ ଶୁଦ୍ଧପୂତ 'ତ୍ରିଦିବ ରତନ' ଆତ୍ମାକୁ ପବିତ୍ର ରଖିଥିବା ବିଧବା (୬୦), ଏକମାତ୍ର ସନ୍ତାନର ଭବିଷ୍ୟତ ପାଇଁ ପରଘରେ କାମକରି ଘରକୁ ଫେରିବା ବେଳେ ମୋଟର ଚକାତଳେ ପେଷି ହୋଇ ଯାଇଥିବା ଅସହାୟା ବୃଦ୍ଧା (୬୧), ବୟସକୁ ଅସ୍ୱୀକାର କରି ଏକାକିନୀ ଲକ୍ଷ୍ୟସ୍ଥଳ ପ୍ରତି ଅବିଚଳିତ ଥିବା ପ୍ରତିଜ୍ଞାମୟୀ ବର୍ଷୀୟସୀ।(୬୨),

ପରିବେଶ ଭିତରେ ଯୌବନର ବାର୍ଦ୍ଧକ୍ୟର ପଙ୍କଳଗ୍ରସ୍ତ ରୋମନ୍ଥନରେ ଜୀବନକୁ ଆପଣାର କରି ନେଇଥିବା ବୁଢ଼ା (୬୩)। ଅତୀତରେ ସବୁକିଛି ପାଇଥିବା ମାତ୍ର ବର୍ତ୍ତମାନରେ ସମ୍ପୂର୍ଣ୍ଣ ନିଃସ୍ୱ ଓ ନିଃସହାୟ ହୋଇ ଆଖିବୁଜି ଦେବାକୁ ଉପକ୍ରମ କରିଥିବା ଅନାଥିନୀ ବୁଢ଼ୀ (୬୪)। ସମସ୍ତେ ଗୋଦାବରୀଶଙ୍କର ଅତି ଆପଣାର, ଅତି ଅନ୍ତରଙ୍ଗ।

ବାର୍ଦ୍ଧକ୍ୟ ଗୋଦାବରୀଶଙ୍କ ଲେଖନୀରେ କମ୍ ଦରଦ ଲାଭ କରିନାହିଁ। ଏହି ବାର୍ଦ୍ଧକ୍ୟ ଏକ ଅଭିଶାପ ନୁହେଁ, ଆଶୀର୍ବାଦ ମାତ୍ର। ଏହି ବାର୍ଦ୍ଧକ୍ୟ ଅପେକ୍ଷା ରଖିଥାଏ ଶିବ ମନ୍ଦିରକୁ ପ୍ରତିଦିନ ଯାତ୍ରା କରୁଥିବା ସେହି ଶୁଚିସ୍ନାତା ମହିଳାଙ୍କୁ ଯାହାଙ୍କ ଉପସ୍ଥିତିରେ ବୃଦ୍ଧ ଖୁଲିବାର ସାହସ ସଂଗ୍ରହ କରନ୍ତି (୬୫)। ଏକା ଏକା ବାଟ ଚାଲି ଯାଉଥିବା ବୃଦ୍ଧକୁ କବି ଏକାଠି ଯିବାକୁ ଅନୁରୋଧ ବାଢ଼ନ୍ତି (୬୬)। ଏ ଯାତ୍ରା କଙ୍କାଳଗ୍ରସ୍ତ ଜୀବନ ଯାତ୍ରା ନୁହେଁ, ଜୀବନ ସଂଗ୍ରାମରୁ ଜୀବୋନ୍ମୁକ୍ତିର ଯାତ୍ରା। ସମସ୍ତ ପ୍ରତିକୂଳ ପରିସ୍ଥିତି ଭିତରେ ଏ ଯାତ୍ରୀ ଶ୍ରୀକ୍ଷେତ୍ର ଆଡ଼କୁ ଅବ୍ୟାହତ ରହେ, ଦୁଇଟି ବଳିଷ୍ଠାର ଭୁଜକୁ ଆପଣାର କରିବାର କାମନାରେ ପ୍ରମତ୍ତ ହୋଇ ଉଠେ (୬୭)।

ପ୍ରାଚୀନ ସମାଜ ବ୍ୟବସ୍ଥା ତଥା ବର୍ଣ୍ଣ ବୈଷମ୍ୟ ବିରୁଦ୍ଧରେ ଗୋଦାବରୀଶ ତାଙ୍କ ଅନେକ କବିତାରେ ସ୍ୱର ଉଠାଇଛନ୍ତି। ତାଙ୍କ ବିଶ୍ୱାସରେ ମାନବିକତା ହେଉଛି କୌଣସି ବ୍ୟକ୍ତିର ଶ୍ରେଷ୍ଠ ପରିମାପକ, ହୀନ–ଜାତି ବ୍ୟବସ୍ଥା ନୁହେଁ। ସେଇଥିପାଇଁ ସତ୍ୟବାଦୀରେ ଥିବାବେଳେ ବୁଢ଼ା ଗଉଡ଼ଟିର ମୃତ୍ୟୁରେ ସେ ଅଶ୍ରୁସଜଳ ହୋଇଉଠିଛନ୍ତି (୬୮)। ସଭ୍ୟତାଠାରୁ ବହୁଦୂରରେ ଥିବା ଚନ୍ଦ୍ରଧରପୁରର ଆଦୀବାସୀ ଗ୍ରାମରେ ସେ ଆଦୀବାସୀଙ୍କଠାରୁ ଅନ୍ତରଙ୍ଗ ଆତିଥ୍ୟ ପାଇଛନ୍ତି ଓ ପରଜନ୍ମରେ ଗୋଟିଏ ଆଦିବାସୀ ପରିବାରରେ ଜନ୍ମ ହେବାକୁ ଇଚ୍ଛା ପୋଷଣ କରିଛନ୍ତି (୬୯)। ମଣିଷ ପ୍ରତି ଯେଉଁ ସ୍ନେହ ମମତାଟିର ଆହାପଦଟି ପ୍ରତ୍ୟେକ ପ୍ରାଣରେ ରହିବାର କଥା ବର୍ଷାରେ ଭିଜୁଥିବା କଙ୍କୁଆ ଆଦିବାସୀଟି ପ୍ରତି ସେ ଭାବ କବି ମଧ୍ୟ ପୋଷଣ କରିଛନ୍ତି (୭୦)।

॥୪॥

ନଗର କେନ୍ଦ୍ରିକ ସଭ୍ୟତାର ଅଭ୍ୟୁଦୟରେ ପଲ୍ଲୀର ଧ୍ୱସ୍ତ ବିଧ୍ୱସ୍ତ ରୂପ ଗୋଦାବରୀଶଙ୍କ ଲେଖନୀକୁ ଅଶ୍ରୁସଜଳ କରିଛି। ଅତୀତରେ ସୁଖ ଓ ସ୍ମୃତିର ସବୁଜ ଗନ୍ତାଘର, କୃଷି ଓ କୃଷିର ମହାର୍ଘ୍ୟ କର୍ମଶାଳା ସମସ୍ତ ନଗର କେନ୍ଦ୍ରିକ ସଭ୍ୟତା ଦ୍ୱାରା ଧ୍ୱସ୍ତ ବିଧ୍ୱସ୍ତ। ପଲ୍ଲୀର ସରଳ ସବୁଜିମା ଉପରେ ଠିଆ ହୋଇଥିବା ଶିଳ୍ପ ସଭ୍ୟତାର ନଗ୍ନମୂର୍ତ୍ତୀ ହୃଦାକୁ କବି ଦେଖୁ ସହି ପାରି ନାହାନ୍ତି। ଏହାର ମାଟି ଖୋଳିଲେ ହଳ ଲଙ୍ଗଳ ସାର ମିଳିବ, ସୁନାଶୀ ଫସଲ କାଟି ରଖିବାର ଚିହ୍ନ ଏବେବି ଲିଭି ନଥିବ (୭୧)। ପଲ୍ଲୀ ମୁଖ୍ୟତଃ ଭାରତୀୟ ସଂସ୍କୃତି ତଥା ଓଡ଼ିଶୀ ସଭ୍ୟତାର ପ୍ରାଣକେନ୍ଦ୍ର। ପଲ୍ଲୀର ସ୍ୱାଭାବିକତାରେ ଆମ ସଂସ୍କୃତିର ସ୍ୱାକ୍ଷର ସ୍ପଷ୍ଟ (୭୨)। ତେଣୁ ପଲ୍ଲୀର ଏ ଅବକ୍ଷୟରେ କବିଙ୍କ ଖେଦୋକ୍ତି।

କେବଳ ମଣିଷ ପ୍ରତି ନୁହେଁ, ମାନବେତର ପ୍ରାଣୀପ୍ରତି ତଥା ବୃକ୍ଷଲତାମାନଙ୍କ ପ୍ରତି କବିଙ୍କ ସମବେଦନା ତାଙ୍କ ବିଭିନ୍ନ କବିତାରେ ପରିଦୃଷ୍ଟ। ସହର ଗହଳି ଭିତରେ ମଧୁର ମୂର୍ଚ୍ଛନା ଢାଳୁଥିବା କୋକିଳ (୭୩), "ନରହାତ ଦାରୁଣ ସଂଘାତରେ ମୃତ୍ୟୁ ବରଣ କରିଥିବା ମରାଳକୁ ଅନ୍ୱେଷଣ କରୁଥିବା ଦୁଃଖିନୀ ମରାଳୀ (୭୪), କାଳିଜାଈ ପାହାଡ଼ରେ ଧର୍ମବିଶ୍ୱାସର ଶିକାର ହୋଇଥିବା ଓ ଜନପଦକୁ ଯିବାପାଇଁ ବାରମ୍ବାର ଡଙ୍ଗୀ ଉପରକୁ ଉଠି ଆସୁଥିବା ବୋଦାଛୁଆ (୭୫), ସତ୍ୟବାଦୀ ବନବିଦ୍ୟାଳୟ ପରିସରରେ ମୃତ୍ୟୁବରଣ କରିଥିବା ସସ୍ନେହ ପାଳିତ ମୃଗ ଶିଶୁ (୭୬), ମନୁଷ୍ୟର ସ୍ନେହମମତାକୁ ଭୁଲି ପାରୁନଥିବା ବାଛୁରୀ ଛୁଆ (୭୭), ସ୍ନେହ ଓ ମମତାର ପ୍ରତିଦାନରେ ନିଜର ଆରଣ୍ୟକ ହିଂସ୍ରତାକୁ ପରିହାର କରିଥିବା ପାଳିତ ବାଘଛୁଆ (୭୮) ଓ ମୃତ ସନ୍ତାନକୁ ଆକୁଳର ସହ ପ୍ରତୀକ୍ଷା କରିଥିବା ବାଘୁଣୀ (୭୯), ଏମାନେ ସମସ୍ତେ କବିଙ୍କ ସମବେଦନାର ସ୍ପର୍ଶ ପାଇଛନ୍ତି।

ପ୍ରାକୃତିକ ଉପବନ, ବୃକ୍ଷଲତା–ଏମାନେ ସମସ୍ତେ କବି ହୃଦୟରେ ନିଜ ନିଜର ବ୍ୟକ୍ତିକ ବିକଳ ସ୍ଥିତି ପାଇଁ ସମବେଦନାର ପାତ୍ର ହୋଇଛନ୍ତି। ବ୍ୟାସ କବି ଫକୀରମୋହନଙ୍କର ମଲ୍ଲୀକାଶପୁରରେ ଥିବା ପ୍ରିୟ ଫୁଲବଗିଚାର ଅବକ୍ଷୟରେ କବି ଚିତ୍ତ ନଶ୍ୱରତାକୁ ଉପଲବ୍ଧି କରିଛି। ଫୁଲର ମଉଳା ରୂପରେ ସେ ବ୍ୟଥିତ ହୋଇପଡ଼ିଛନ୍ତି (୮୦)। ଏକାକୀ ପବନର ଶୀତଳ ଝୁଲଣରେ ଝୁଲୁଥିବା ଗୋଲାପ ଫୁଲଟିକୁ ଦେଖି କବି ସଂସାରରେ ନିଜର ବିକଳ ଏକାକୀତ୍ୱର ପରିକଳ୍ପନା କରିଛନ୍ତି (୮୧)। ଅପର ପକ୍ଷରେ ଘାସ ଗଛର ଶ୍ୟାମଳ ବିସ୍ତାର ଓ ତାର ନିର୍ବିକାର ପରୋପକାରୀ ପ୍ରସାରିତ ସତ୍ତାକୁ ଲକ୍ଷ୍ୟ କରି କବି ଘାସ ନିକଟରେ ନତମସ୍ତକ ହୋଇଛନ୍ତି ଓ ତାର ଉଦାର ତଥା ଉନ୍ନତ ଗୁଣକୁ ଗ୍ରହଣ କରିବାକୁ ଚେଷ୍ଟା କରିଛନ୍ତି (୮୨)। ଶୂନ୍ୟଗର୍ଭା ପୁଷ୍କରିଣୀ ନିକଟରେ ମଧ କବି ତାର ଅତିଥେୟତାକୁ ପ୍ରଶଂସା କରିଛନ୍ତି। ଗ୍ରୀଷ୍ମାକ୍ରାନ୍ତ ପଥିକଟିର ପାଦ ଧୋଇଦେବାକୁ ତାର ଆନ୍ତରିକ ଆସକ୍ତି ଥିଲେ ମଧ ଜଳହୀନତା ହେତୁ ସେ ନିଜର ଅଭିଳାସ ସାର୍ଥକ କରି ପାରୁନାହିଁ (୮୩)।

॥୬॥

ସତ୍ୟବାଦୀ ଯୁଗର ଚେତନାରେ ଉଦ୍‌ବୁଦ୍ଧ ଥିବା ପଣ୍ଡିତ ଗୋଦାବରୀଶ ମୁଖ୍ୟତଃ ଜାତୀୟ ପ୍ରେରଣାକୁ ସମ୍ବଳ କରି କବିତା ରଚନା କରିଥିଲେ। ଏହା ପୁଣି ତାଙ୍କ ସମ୍ବେଦନଶୀଳ ଚରିତ୍ର, ଗଭୀର ପର୍ଯ୍ୟବେକ୍ଷଣ ଶକ୍ତି ଓ ଲଳିତ ଭାଷା ବିନ୍ୟାସ ହେତୁ ମନୋଜ୍ଞ ହୋଇପାରିଥିଲା। ସ୍ୱାଧୀନତା ସଂଗ୍ରାମ ପାଇଁ କାରାବରଣ କରିଥିବା ଭାରତୀୟ ମୁକ୍ତି ସଂଗ୍ରାମୀମାନଙ୍କର ଅକଥନୀୟ ଯନ୍ତ୍ରଣା ତାଙ୍କ ଲେଖନୀରେ ଚମତ୍କାର ରୂପ ପରିଗ୍ରହଣ କରିଛି। ଗୋପବନ୍ଧୁଙ୍କପରି କାରାଗାରକୁ ସେ "ପବିତ୍ର ପ୍ରବାସ" କରିନାହାନ୍ତି। ଏହା ତାଙ୍କ ଦୃଷ୍ଟିରେ ଏହା ଏକ 'କାନ୍ତାର' (କାରାବାସେ), 'ପାଷାଣ ପ୍ରାଚୀର ବେଷ୍ଟିତ ଲୁହାର ନିଗଡ଼' ଓ 'ଶତକଣ୍ଟୁଆଳ ଆବେଷ୍ଟିତ ତାଲା ବନ୍ଦ ପିଞ୍ଜରା' କେଏଦୀର

ଗୀତା । ଏହାରି ଖାଦ୍ୟ 'ପସୁ ତୁଣ୍ଡେ ନଚ୍ଛୁଇଁବାର ଅଶନ' ପିତୃ ଅର୍ଜିତ ଧନ । ବନ୍ଦୀମାନଙ୍କର ରୋଗଗ୍ରସ୍ତ ଦୁର୍ବଳ ଶରୀର, ଜୀବନର ଶୂନ୍ୟ ଲକ୍ଷ୍ୟ ପଥ ଓ ଉଦାସୀନ ନୀରବତା କବିଙ୍କୁ ଅହେତୁକ ବ୍ୟଥା ଦେଇଛି (୮୪) । ବନ୍ଦୀମାନଙ୍କୁ ଅକଥନୀୟ ଯନ୍ତ୍ରଣା ଦେଉଥିବା ଯୁବ ଶାସକମାନଙ୍କୁ କବି ସମର୍ଥନ କରିପାରିନାହାନ୍ତି । ଅନ୍ୟର ବ୍ୟଥାକୁ ବୁଝି ପାରିବାଭଳି ହୃଦୟଟିର ଅଧିକାରୀ ହେବା ପାଇଁ କବି ତାଙ୍କୁ ଅନୁରୋଧ କରିଛନ୍ତି ଓ ଅନ୍ୟର ଉପକାର ପାଇଁ ପ୍ରାଣପାତ କରିବାକୁ କବି ସେମାନଙ୍କୁ ପରାମର୍ଶ ଦେଇଅଛନ୍ତି (୮୫) । ବନ୍ଦୀମାନଙ୍କର ପ୍ରଭାଷ ବନ୍ଦନାରେ ସେ ବିଶ୍ୱପ୍ରୀତିକୁ ଯେତେ ଲକ୍ଷ୍ୟ କରିନାହାନ୍ତି, ସେତେପରିମାଣରେ ଅନୁଭବ କରିଛନ୍ତି ତାଙ୍କ ଅନ୍ତର୍ଦାହୀ ବେଦନାବୋଧକୁ (୮୬) । ଦେଶପାଇଁ କାରାବରଣ କରିଥିବା ଏ ବନ୍ଦୀମାନେ ସେମାନଙ୍କ ଅତୀତ ଜୀବନର ଭଲ ମନ୍ଦ କାମଠାରୁ ଯଥେଷ୍ଟ ଊର୍ଦ୍ଧ୍ୱରେ (୮୭) । ଏମାନେ ପୁଣି ନୂତନହୋଇ ସେମାନଙ୍କ ଗହଣରେ ମିଶୁଥିବା ସମ୍ମାନୀୟ ରାଜବନ୍ଦୀଙ୍କୁ ଯେତେବେଳେ ଅଭ୍ୟର୍ଥନା ଜଣାନ୍ତି (୮୮) ସେତେବେଳେ ଏମାନେ ଭାବପ୍ରବଣ ଦେଶାତ୍ମବୋଧକ ସ୍ପଷ୍ଟ ହୋଇଉଠେ । ମାତ୍ର ଦେଶ ପାଇଁ କାରାବରଣ କରିଥିବା ଏହି ପୁଣ୍ୟବାନ୍ ମନୁଷ୍ୟମାନେ ନୀରବତାରେ ଅତୀତର ପାରିବାରିକ ସଂପ୍ରୀତିର ସ୍ମୃତିଚାରଣ କରନ୍ତି (୮୯) ।

ଗୋଦାବରୀଶଙ୍କ ଲେଖନୀ ବିଶ୍ୱର ସମସ୍ତ ବେଦନାବୋଧକୁ ଏକତ୍ରିତ କରି ଦେଶମାତୃକାକୁ ସୁନ୍ଦର କବିତାର ମାଳାଟିଏ ଦେଇଛି । ଉତ୍କଳ ଜନନୀ ତଥା ଭାରତମାତାର ସ୍ୱାଧୀନତା ପାଇଁ ଯଦିଓ ତାଙ୍କ ପ୍ରାଣ ଉତ୍ସର୍ଗୀକୃତ ଥିଲା, ତାଙ୍କ କବି–ଆତ୍ମା କିନ୍ତୁ ବିଶ୍ୱ ମନୀଷାର ଅଶ୍ରୁ ଓ ଦୁଃଖର ନିରାକରଣ ପାଇଁ ସତେଯେପରି ପ୍ରତିଜ୍ଞା ବଦ୍ଧ ଥିଲା । ତାଙ୍କର ଏଇ ମର୍ମର କବିତାମାନ ତେଣୁ ଅଶ୍ରୁର ଗୋଟିଏ ଗୋଟିଏ ବିନ୍ଦୁପରି ଜାଜଲ୍ୟମାନ ଓ 'ଆହାପଦ'ର ଗୋଟିଏ ଗୋଟିଏ ନାନା ବାଷ୍ପପରି ଦୀପ୍ତିମାନ ।

---

(୧) 'ୟେ'ଂଗରଖାନୁ ପତନ୍ତି ସୀତଂ । ସସ୍ଥଂ କତଂ ମକ୍ଷିଟଙ୍କାଂ ବ ଜାଳଂ ।' ଧମ୍ମପଦ ।।୩୪୭ ଗାଥା ।

(୨) ପରୋପକାରାୟ ଫଳନ୍ତି ବୃକ୍ଷାଃ ।
ପରୋପକାରାୟ ବହନ୍ତି ନଦ୍ୟଃ ।
ପରୋପକାରାୟ ଦୁହନ୍ତି ଗାବଃ ।
ପରୋପକାରାର୍ଥମିଦଂ ଶରୀରମ୍ ।' ସୁଭାଷିତ

(୩) 'Little deeds of kindness little words of love. Help to make earth happy like the heaven above. 'Julia Carney' 'The Little thinks'.

(୪) ମାଗୁଣି : କିଶଳୟ : ଗୋଦାବରୀଶ ଗ୍ରନ୍ଥାବଳୀ : ପୃ. ୧୯୧

(୫) (କ) 'ଦେଶାନୁରାଗ ବିଶ୍ୱପ୍ରୀତିର ବିରୋଧୀ ନୁହେଁ, ବରଂ ବିଶ୍ୱପ୍ରୀତି ବିହୀନ ପ୍ରାଣରେ ଜାତୀୟତାଭାବ ଏବଂ ସ୍ୱଦେଶବାତ୍ସଲ୍ୟ ଅସମ୍ଭବ ।' –ଉତ୍କଳ ସାମନ୍ତରାୟ ଡଃ, ନଟବର: ଉତ୍କଳମଣି ଗୋପବନ୍ଧୁ: ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩–୧୯୨୦) ପ୍ର: ସଂ ୧୯୬୪, ପୃ: ୬୦୪ ।

(ଖ) 'ଜାତୀୟ ସମତା ବିଶ୍ୱଜନ ପ୍ରୀତି । ଉତ୍କଳବାସୀର ହେଉ ଏହା ନୀତି ।' ଦାସ ଗୋପବନ୍ଧୁ: ଅବକାଶ ଚିନ୍ତା,

(୬) 'ପ୍ରେମଭାବେ ଯାର ଅନ୍ତର ପୂରିତ / ସର୍ବପ୍ରାଣୀ ହୃଦ ତାହୃଦେ ଅଙ୍କିତ / ସର୍ବ ଅନୁଭୂତି ସର୍ବଭୂତେତାର / ତାଦୃଷ୍ଟିରେ ବିଶ୍ୱ ଏକ ପରିବାର / ସେହି ନିଜେ ବିଶ୍ୱେ ମଧ୍ୟେ ସେହି/ଅନ୍ୟ ହୋଇ ତାର ଆଉ କେହି ନାହିଁ ।'–ଅବକାଶ ଚିନ୍ତା । ପୃ:୬୮ ।

(୭) 'ଏ ଭବ ପାରାବାରରେ ମୋ ଜୀବନ–ତରୀ କର୍ଣ୍ଣଧାରସେ । ମୋ ପ୍ରାଣର ଉପାସ୍ୟ ଦେବତା । ଦୁର୍ବଳ ମୁହୂର୍ତ୍ତମାନଙ୍କରେ ମୁଁ ଆଜି ସୁଦ୍ଧା ତାଙ୍କରି ମୂର୍ତ୍ତି ଆଖିଆଗରେ କଳ୍ପନାରେ ଦେଖି ସାନ୍ତ୍ୱନା ପାଏ । ଗୋପବନ୍ଧୁଙ୍କପରି ସୁହୃଦ୍, ପଥ ପ୍ରଦର୍ଶକ ଓ ଦର୍ଶନଗୁରୁ ନିତାନ୍ତ ବିରଳ ।' –ଆତ୍ମଜୀବନୀ ପୃ:୩୬ ।

(୮) ନିଜ ଘର ସୁଖ ନଜାଣେ ନିଜର ବାଳୁତ ନାହିଁଛି ଦେଖି, କେତେ ପରପିଲା ପିଣ୍ଡର ପ୍ରାଣେ ଲୋ ବଢ଼ାଏ କୁଶଳେ ରଖି । ମିଶ୍ର ଗୋଦାବରୀଶ: ସାକ୍ଷୀଗୋପାଳ: ଗ୍ରନ୍ଥାବଳୀ ପୃ:୩୦୨ ।

(୯) ପୂଜିଛି ଯାହାକୁ ହୃଦୟେ ନିତି ମୁଁ ପରାଣ ଆରାଧ କରି, ଯା ମଧୁ ନିଦେଶେ ଏ କରମ ପୀଠେ ଅଛି ଆଜି ଅବତରି । ମିଶ୍ରଗୋଦା: ଆସଲୋ ବାଳିକା: କୁସୁମ: ଗ୍ରନ୍ଥାବଳୀ ପୃ:୩୫୭ ।

(୧୦) ମିଶ୍ର ଗୋଦାବରୀଶ: ଉପବାସେ: ଗୀତିଗୁଚ୍ଛ: ଗ୍ରନ୍ଥାବଳୀ: ପୃ:୪୪୦ ।

(୧୧) "ରାଜଦ୍ରୋହୀ ଜନ୍ମ ତବ କେ ଜାଣଇ ଆଜି ଫିଙ୍ଗି ପାଦେ ଦେଇଛ ସେ ଶିରୀ । ବନଗିରି ପଦା ମାଡ଼ି ଚାଲିଛି ଚରଣେ ପଲ୍ଲୀପଥ ଉଦାସ ଭିକାରୀ । ଚନ୍ଦ୍ରଶେଖର: ଗୀତାୟନ: ଗ୍ରନ୍ଥା: ପୃ:୪୭୨ ।

(୧୨) ଆତ୍ମଜୀବନୀ: ଗ୍ରନ୍ଥାବଳୀ: ପୃ:୪୪–୪୫

(୧୩) ରାଜାଙ୍କ ମୀସବାନ୍: ଗୀତିଗୁଚ୍ଛ: ଗ୍ରନ୍ଥ: ପୃ:୪୩୪ ।

(୧୪) 'ଜଗତ କାରଣ ସାଧିବାକୁ ସିନା ଲଭି ଅଛି ଏ ଜୀବନ । ତ୍ରିଭୁବନ ଯେବେ ବିଲମ୍ବ ଉଚିବ ବଞ୍ଚିବା ମୋ ଅକାରଣ ।' ଅସ୍ଥିଦାନ: ଗୀତାୟନ: ଗ୍ରନ୍ଥ: ପୃ:୪୧୪ ।

(୧୫) (କ) ଭୁବନ ବିଦିତ ଦଧୀଚି ଚରିତ ପୁରାଣେ ତ ଅଛ ଶୁନେ, କହି ସ୍ୱସ୍ତି ସ୍ୱସ୍ତି ଦେଲେ ନିଜ ଅସ୍ଥି ପୁରାଣେ ତ ମହାମୁନି । ଦାସ ଗୋପବନ୍ଧୁ: ଧର୍ମପଦ:

(ଗ) "ଲୋକହିତେ ପ୍ରାଣ ପ୍ରଦାନ ପ୍ରବଣ / ଦଧୀଚି ଶୋଣିତ କରିଛ ଧାରଣ / ଦିଅ ସ୍ୱାର୍ଥବଳି ଦେଖାଅ ସେ ତ୍ୟାଗ / ଭାରତ ଜାତୀୟ ମହାଯାଗେ ଲାଗ ।" –ଦାସ ଗୋପବନ୍ଧୁ: ବ୍ରାହ୍ମଣ ଛାତ୍ରୀ.......: ଅବକାଶ ଚିନ୍ତା: ୧୯୬୪ ପୃ:୬୧ ।

(୧୬) ଜୀବେଦସ୍ୟା: ଗୀତାୟନ: ଗ୍ରନ୍ଥାବଳୀ: ପୃ:୪୦୪ ।

(୧୭) 'ମୁଁ ସିନା ମନୁଷ୍ୟକୁଳେ ହୋଇଛି ନୃପତି ଲଭି ହେଳେ ପିତୃଦତ୍ତ ରାଜ୍ୟ । ତୁହିତ ସୁଗୁଣେ ବଡ଼ କାରିଗରେ ରାଜା ତେଣୁ ପୂଜ୍ୟରେ ନମସ୍ୟ ଆର୍ଯ୍ୟ ।' –ସ୍ୱର୍ଣ୍ଣାକ୍ଷରେ: ଗୀତାୟନ: ଗ୍ରନ୍ଥ: ପୃ:୪୧୧ ।

(୧୮) ମୁଣ୍ଡବଳି: ଗୀତାୟନ: ଗ୍ରନ୍ଥାବଳୀ: ପୃ:୪୦୭ ।

(୧୯) ଆତ୍ମଜୀବନୀ: ଗ୍ରନ୍ଥାବଳୀ: ପୃ:୪୪

(୨୦) ତତ୍ରୈବ: ପୃ.୬୭

(୨୧) ତତ୍ରୈବ: ପୃ.୬୮

(୨୨) ତତ୍ରୈବ: ପୃ.୮୨

(୨୩) ତତ୍ରୈବ: ପୃ.୧୨୮

(୨୪) ରାଣୀଗୋପାଳ: ଆଲେଖିକା: ଗ୍ରନ୍ଥାବଳୀ: ପୃ.୨୯୩

(୨୫) ଆତ୍ମଜୀବନୀ: ଗ୍ରନ୍ଥାବଳୀ: ପୃ.୪୫

(୨୬) ଶାଳମାଧବ: ଆଲେଖିକା: ଗ୍ରନ୍ଥାବଳୀ: ପୃ.୩୧୪

(୨୭) ମାତୃଭୂମିକେ: ଗୀତାୟନ: ଗ୍ରନ୍ଥାବଳୀ: ପୃ.୨୦୮

(୨୮) ଅବସ୍ଥ: ଗ୍ରନ୍ଥାବଳୀ: ପୃ.୨୦୮

(୨୯) ପୁତ୍ରଶୋଧନ: ଆଲେଖିକା: ଗ୍ରନ୍ଥାବଳୀ: ପୃ.୨୭୩

(୩୦) ରଙ୍ଗଫୁଲ: କୁସୁମ: ଗ୍ରନ୍ଥାବଳୀ: ପୃ.୩୫୩

(୩୧) ଯାଆରେ ଲହରୀ: ଗ୍ରନ୍ଥାବଳୀ: ପୃ.୨୯୬

(୩୨) ଆତ୍ମଜୀବନୀ: ଗ୍ରନ୍ଥାବଳୀ: ପୃ.୫୪

(୩୩) ପୁତ୍ରଶୋଧନ: ଆଲେଖିକା: ଗ୍ରନ୍ଥାବଳୀ: ପୃ.୨୭୩

(୩୪) ଛିନ୍ନପ୍ରେମ: ଚୟନିକା: ଗ୍ରନ୍ଥାବଳୀ: ପୃ.୩୩୦

(୩୫) ଭିକ୍ଷା: କଳିକା: ଗ୍ରନ୍ଥାବଳୀ: ପୃ.୧୮୮

(୩୬) ଦୁଃଖେ କାଟନ୍ତି କାଳ: ଗ୍ରନ୍ଥାବଳୀ: ପୃ.୩୫୩

(୩୭) ବିଧାତାକି ଅନ୍ଧ: ଗୀତାୟନ: ଗ୍ରନ୍ଥାବଳୀ ପୃ.୪୧୪

(୩୮) "ବିନ୍ଦୁ ପୁଣି ନିଜେ ଭିକ୍ଷା ମାଗନ୍ତି ମହିମା, ମୋତେ ଭିକ୍ଷା ଦେବେ ପୁଣି କାହିଁ ? ସେ ଦେବେ ଲାଗୁଛୁ ଧନ ତାଙ୍କୁ ନିବେଦିଲେ, ମୋ ବିକଳ ନରହିବ ଆଉ। "ଭିକ୍ଷା ଦେବେ କାହିଁ: ଗୀତଗୁଚ୍ଛ: ଗ୍ରନ୍ଥାବଳୀ: ପୃ.୪୩୯ ।

(୩୯) ଭାର:

(୪୦) ଭିକ୍ଷା: କଳିକା: ଗ୍ରନ୍ଥାବଳୀ: ପୃ.୧୮୮

(୪୧) ଛିଡ଼ି ପଡ଼ିଲୁଣ ମଧ୍ୟ: ଗୀତାୟନ: ଗ୍ରନ୍ଥାବଳୀ: ପୃ.୪୦୫

(୪୨) ଦେବାଳ ଗାଡ଼ିକା: ଗୀତାୟନ: ଗ୍ରନ୍ଥାବଳୀ ପୃ.୪୦୫

(୪୩) ଦୁଃଖୀ: କଳିକା: ଗ୍ରନ୍ଥାବଳୀ: ପୃ.୨୩୩

(୪୪) ମହାଶୟା ସୁଶ୍ରୀ ବିପୁଳ ପ୍ରସାଦାଙ୍କ କୁନ୍ତଳା ବିତାନଂ ସ୍ୱକୀୟଂ ଜୀବନମନୁଷ୍ଠିତ୍ୱେ।ସମନିକେଶ। ଉତ୍କଳେଶ୍ୱରୀପୋ ବିରଚି କବିତା ସଙ୍ଗ୍ରଥିତଂ ସୁଖୀ ଜାତ୍ୟରେ ପ୍ରତିଭେନ୍ଦୁ କୁନ୍ତିତ୍ୱପଲବ ।୧୪। କର୍ମୁରଚି: ବୈରାଗ୍ୟ ଶତକ: କର୍ମୁରଚି-ସୁକାଭିତ: ପ୍ରଥମଖଣ୍ଡ୧୯୮୭: ପୃ.୨୦୨

(୪୫) ପୁତ୍ରଶୋଧନ: ଆଲେଖିକା: ଗ୍ରନ୍ଥାବଳୀ: ପୃ.୨୭୧-୨୭୭

(୪୬) ସ୍ୱପ୍ନ-ଚୟନିକା: ଗ୍ରନ୍ଥାବଳୀ: ପୃ.୩୩୬

(୪୭) ଆସରେ ବାଳିକା: କୁସୁମ: ଗ୍ରନ୍ଥାବଳୀ: ପୃ.୩୫୫

(୪୮) ଅଭିରାମ ସିଂହ: ଆଲେଖିକା: ଗ୍ରନ୍ଥାବଳୀ: ପୃ.୨୪୮

(୪୯) ପିଲାଟି: କୁସୁମ: ଗ୍ରନ୍ଥାବଳୀ: ପୃ.୩୬୫

(୫୦) ଗଚ୍ଛିଧନ ସାଥୀ: ଗ୍ରନ୍ଥାବଳୀ: ପୃ.୧୩୬

(୫୧) କାଳିକାର: ଆଲେଖିକା: ଗ୍ରନ୍ଥାବଳୀ: ପୃ.୨୬୯-୭୧

(୫୨) ଲଳିତା: ଚୟନିକା:ଗ୍ରନ୍ଥାବଳୀ: ପୃ.୩୨୩

(୫୩) ଭିକାରୁଣୀ: ଚୟନିକା: ଗ୍ରନ୍ଥାବଳୀ: ପୃ.୩୧୫

(୫୪) ଉତ୍କଳର ଯେତେ କନ୍ୟା ନାରଖାର। ନ କରନ୍ତି ପେଟ ପୂରାଇ ଆହାର। ଲଜ୍ଜା ଢାଙ୍କିବାକୁ ନ ମିଳେ ବସନ। ଫୁଟେ ନାହିଁ କେବେ ଅଙ୍ଗେ ଯଉବନ।

(୫୫) ନିବେଦନ: ଗୀତାୟନ:ଗ୍ରନ୍ଥାବଳୀ:

(୫୬) ଭାତୁଆଥ: କିଶଳୟ:ଗ୍ରନ୍ଥାବଳୀ: ପୃ.୨୨୫

(୫୭) ରାଣୀମାଘ: କବିତାୟନ:ଗ୍ରନ୍ଥାବଳୀ: ପୃ.୩୯୧-୯୨

(୫୮) ଅଜାତି ହୋଇ: ଗୀତିଗୁଚ୍ଛ:ଗ୍ରନ୍ଥାବଳୀ: ପୃ.୪୪୧

(୫୯) ସଲିଳଧାରା: ଗୀତିଗୁଚ୍ଛ:ଗ୍ରନ୍ଥାବଳୀ: ପୃ.୪୪୪

(୬୦) ବିଧବା:କଳିକା:ଗ୍ରନ୍ଥାବଳୀ: ପୃ.୧୪୨

(୬୧) ଆଲୋମୋର ଗଚ୍ଛିଧନ: ଗୀତାୟନ:ଗ୍ରନ୍ଥାବଳୀ: ପୃ.୪୦୬

(୬୨) ବୈତରଣୀ ତୀରେ: କିଶଳୟ: ଗ୍ରନ୍ଥାବଳୀ: ପୃ.୨୩୩

(୬୩) ଦୁଃଖୀ: କୁସୁମ:ଗ୍ରନ୍ଥାବଳୀ: ପୃ.୩୪୮

(୬୪) ଦୁଃଖିଦେଲା ଆଖି: ଗୀତାୟନ:ଗ୍ରନ୍ଥାବଳୀ: ପୃ.୪୨୦

(୬୫) ଅକାମନ ସ୍ୱର ଯିବା: କଳିକା:ଗ୍ରନ୍ଥାବଳୀ: ପୃ.୧୭୯-୮୦

(୬୬) ଦୁଃଖୀ: କୁସୁମ:ଗ୍ରନ୍ଥାବଳୀ: ପୃ.୩୨୪

(୬୭) ଶ୍ରୀକ୍ଷେତ୍ର ଯାତ୍ରୀ: କବିତାୟନ:ଗ୍ରନ୍ଥାବଳୀ: ପୃ.୩୭୯-୮୮

(୬୮) ଓଷଦ ଧାରା: କଳିକା: ଗ୍ରନ୍ଥାବଳୀ: ପୃ.୧୬୭

(୬୯) 'ପୁନର୍ବାର ପ୍ରତ୍ୟୟ ମୁଁ ଥାପନ୍ତି ଅନ୍ତରେ। ମରି ବନ୍ଧୁପାରେ ଯଦି ଆଦିବାସୀ ଘରେ। ଦେଉ ସେ ଓରାଙ୍ଗ କନ୍ଧ ଶବର ସାନ୍ତାଳ। କି ବାଛିବ, ନୋହେ ଯେବେ ସର୍ବ ପରିବାର। ସଭ୍ୟତା ସ୍ତ୍ରୀପଲ ମୋଡ଼ି ମନୁଷ୍ୟ ତା ବେଢ। ଯେତେ ଉଚ୍ଚପଦରୁ ମର୍ତ୍ତେ ମାନବତା ଟେକ।' -ନୁହେଁ ଯେବେ ସର୍ବ ପରିବାର: ଗୀତିଗୁଚ୍ଛ: ଗ୍ରନ୍ଥାବଳୀ: ପୃ.୪୬୭

(୭୦) ଶିଅରୁ ଅଧିକ: ଗ୍ରନ୍ଥାବଳୀ: ପୃ:୨୪୨

(୭୧) ଯାମସେବ ପୁରେ: ଗୀତାୟନ:ଗ୍ରନ୍ଥାବଳୀ: ପୃ:୪୨୪

(୭୨) ପଲ୍ଲୀ ପ୍ରସଙ୍ଗ: ସତ୍ୟବାଦୀ: ଫେବ୍ରୁ: ୧୯୧୫: (କୁମ୍ଭ, ୧୩୨୨) ୧ମ ବର୍ଷ, ୧ମ ସଂଖ୍ୟା ।

(୭୩) କୋଇଲି: ଚୟନିକା: ଗ୍ରନ୍ଥାବଳୀ: ପୃ:୩୩୪

(୭୪) ମରାଳ ଦମ୍ପତି: ଗୀତାୟନ: ଗ୍ରନ୍ଥାବଳୀ: ପୃ:୪୦୯

(୭୫) 'ଏହି କ୍ଷଣି ଘୋଟି ଯିବ ନିବିଡ଼ ଅନ୍ଧାର । ନଦିଶିବ କୂଳ ପନ୍ଥା ପାଣି ବା ପାହାଡ଼ । ସେତେବେଳେ କି କରିବୁ ଅଭାଗା ପରାଣ । କେଉଁଠାରେ ଆଶ୍ରାନେବୁ ନିଜ ଲୋଡା ଜାଣି ।' ଅନାଥ ଶିଶୁ: କଳିକା: ଗ୍ରନ୍ଥାବଳୀ: ପୃ:୧୪୬ ।

(୭୬) କିଲୋଡ଼ା: କି ମଳୟ: ଗ୍ରନ୍ଥାବଳୀ: ପୃ:୨୦୨

(୭୭) ବିଦାୟ ନିଶିଥେ: କୁସୁମ: ଗ୍ରନ୍ଥାବଳୀ: ପୃ:୩୬୮

(୭୮) ପାଳିତ ବାଘଛୁଆ: ଗୀତାୟନ:ଗ୍ରନ୍ଥାବଳୀ:

(୭୯) ଯିବ ବଅର୍ଥେ କେବେ: ଗୀତାୟନ: ଗ୍ରନ୍ଥାବଳୀ:

(୮୦) କବି ଉପବନ: କିଶଳୟ: ଗ୍ରନ୍ଥାବଳୀ: ପୃ:୨୩୯

(୮୧) ଏକାକୀ ଗୋଲାପ: ଚୟନିକା:ଗ୍ରନ୍ଥାବଳୀ: ପୃ:୩୨୦

(୮୨) ଆଶାପାସ ଶିଖା ଆଜି ମୋ ହୃଦ ବିସାରେ । ବସାଇ ପାରନ୍ତି ତୋର ସୋଦର ଭାବରେ । ତୋଲାଗି ଯେନନ୍ତି ବୁକେ ସମୀର ପରଶ । ତୋ ନୃତ୍ୟ ହୁଅନ୍ତା ମୋର ଜୀବନ ଆଦର୍ଶ । ଘାସ ପଡ଼ିଆ: କଳିକା: ଗ୍ରନ୍ଥାବଳୀ: ପୃ:୧୯୧ ।
(୮୩) ପୂର୍ଣ୍ଣ ବରହତେ: କବିତାୟନ:ଗ୍ରନ୍ଥାବଳୀ: ପୃ:୪୦୦

(୮୪) କାରାବାସେ:କବିତାୟନ: ଗ୍ରନ୍ଥାବଳୀ:

(୮୫) ଯୁବକ ଶାସକ: କବିତାୟନ: ଗ୍ରନ୍ଥାବଳୀ: ପୃ:୩୮୬

(୮୬) ବନ୍ଦୀ ଗୀତେ: କବିତାୟନ: ଗ୍ରନ୍ଥାବଳୀ: ପୃ:୩୯୫

(୮୭) ଯା ପ୍ରାଣ ବାରିଧି ଅନୁତାପ ଜଳ । କଳଙ୍କ କିଲ୍‌ବିଷ ଧୋଇଛି ସକଳ । ସେ କି ହୋଇପାରେ ନିମିଷକ ମାତ୍ର । ନିଠୁର ଜଗତ ଗାଳିନିନ୍ଦା ପାତ୍ର ? –ଯୋଗ୍ୟ ବାସବୁଭିଃ କବିତାୟନ:ଗ୍ରନ୍ଥାବଳୀ: ପୃ:୩୮୩ ।

(୮୮) ବନ୍ଦୀ ଜୀବନର ଅତିଥି: କବିତାୟନ:ଗ୍ରନ୍ଥାବଳୀ: ପୃ:୩୭୭

(୮୯) ହଜିବାରେ ଅଛି ସିନା ପାଇବାରେ ତୋଷ, ବିଚ୍ଛେଦଟି ମିଳନ ପୁଲକ, ଭୋଗିକି ପାରନ୍ତେ ଏଥୁ ସହସ୍ର କଏଦୀ ରହି ଘରେ ନର ଜନ୍ମ ସୁଖ ? –କଏଦୀର ଗୀତ: କବିତାୟନ:ଗ୍ରନ୍ଥାବଳୀ: ପୃ:୩୭୫ ।

---

ଅଧ୍ୟାପକ, ଓଡ଼ିଆ ବିଭାଗ,
ରେଭେନ୍‌ସା ସାନ୍ଧ୍ୟ ମହାବିଦ୍ୟାଳୟ,
କଟକ ।




ରାଜଭବନଠାରେ ଆୟୋଜିତ ନାନକ ଭଜନ ସନ୍ଧ୍ୟାରେ ରାଜ୍ୟପାଳ, ଶ୍ରୀ ଯଜ୍ଞଦତ୍ତ ଶର୍ମା ।

# ପୁରୀ-୨୨

ପ୍ରସନ୍ନ ପାଟ୍ଟଶାଣୀ

ତୁ ବିଶ୍ୱ, ତୁ ବ୍ରହ୍ମ, ତୁ ନାରୀ
ମୋ ସ୍ୱପ୍ନର ପୁରୀ, ମୋ ଗନ୍ତର ପୁରୀ
ମୋ ଜୀବନ ସୋହାଗ କସ୍ତୁରୀ ।

ଜଗନ୍ନାଥର ନାଭିବ୍ରହ୍ମରେ ତୁ
ତୋ ଦେହରେ ଲକ୍ଷେ ପାଦର ଧୂଳି
ବନ୍ଧୁ ଯାନରେ ତୁ ଆସୁ ଭୈରବୀ ହୋଇ
ସୁଭଦ୍ରା ରଥକୁ ଶିବଶକ୍ତି ଦେଇ
ତୁ ଯେମିତି ପାର୍ବତୀ ସତୀ,
ବଡ଼ ଦାଣ୍ଡରେ ବିକ୍ରି ହୁଏ ଯେତେ ଗୁଡ଼ି
ବଟଫଳ, ଦର୍ପଣ ଓ ଗାଡ଼ି ଗାଡ଼ି ଶାଢ଼ୀ
ତୋ ଦେହକୁ ଧରି ରଖିପାରି ନାହିଁ ଭିଡ଼ି ।

ଯେତେ ଦେଖିଥିଲେ ଫେରି ଆସିହୁଏ ନାହିଁ
ତୋ ରୂପର ପଲଙ୍କରେ
ବହୁବାର ପଡ଼ିଥିଲି ଶୋଇ
ତୁ କାର୍ପଣ୍ୟ କରିନାହୁଁ କେବେ
କୋଳ୍‌କରି ଦେଇନୁ ଉଠେଇ ।

ଜଗନ୍ନାଥର ବହୁ ଲମ୍ବା
ବାଇଶ ପାହାଚ ଦେହେ ପାଏନା ନିଶୁଣୀ
ବାଇଶ ମନ ଉପରେ ଚଢ଼ି ଶୁଣିବା ସହଜ ନୁହେଁ
ସ୍ନେହ, ପ୍ରେମ, ମମତାର ଯେତେ ସବୁ ଲୋରି ।

ତୋ ସ୍ୱହାଣି ଭିତରେ ହଜିଗଲେ ଥରେ
ସମୁଦ୍ର ଉଛୁଳି ପଡ଼େ
ଦେହ ବାଲିଠାରୁ ଉଛୁଳି ପଡ଼େ ଲୋତକ,
ଆଖିପତା ତୋର ବେଳାଭୂଇଁ
ସ୍ମୃତିରେ ମୋ ଓଦା ମୁହଁ ପୋଛିଦେବା ପାଇଁ
ଖୋଜୁଥାଏ ତୋ' ପିନ୍ଧାକାନି ।

ତୁ ଜମା ବୁଝିଲୁ ନାହିଁ
କବିଟିଏ କିପରି ଏକାନ୍ତରେ
ସ୍ନାନକରେ ତୋ ଲୁହ ଭିତରେ
ବଢ଼ିଯାଏ କେତେ ରାତି, କେତେ ଦିନ,
କେତେ ମାସ, କେତେ ବର୍ଷ,
ତଥାପି ତୋ ବୁକୁରେ ପାଦ ଥାପି
ଭକ୍ତଟିଏ ହେଉଥାଏ ଧନ୍ୟ ।

୨-ରୂପପଲ୍ଲୀ, ଭୁବନେଶ୍ୱର-୧୨ ।

# ମୁକ୍ତି ସଂଗ୍ରାମର ବିପ୍ଳବୀ ଧରଣୀଧର

ଶ୍ରୀ ଫକିର ଚରଣ ରାଉତ

ଇଂରେଜ ଶାସନ କବଳରୁ ମୁକ୍ତି ପାଇବା ଉଦ୍ଦେଶ୍ୟରେ ଯେତେ ଯେତେ ବିପ୍ଳବ ଘଟି ଯାଇଛି, ତନ୍ମଧ୍ୟରୁ ୧୮୫୭ ମସିହାରେ ସିପାହୀ ବିଦ୍ରୋହ ଓ ଏହାର ୪୦ ବର୍ଷ ପୂର୍ବରୁ ଓଡ଼ିଶାରେ ପାଇକ ବିଦ୍ରୋହ ଅନ୍ୟତମ । ଉନବିଂଶ ଶତାବ୍ଦୀର ଶେଷ ଭାଗରେ କେନ୍ଦୁଝରର ତତ୍‌କାଳୀନ ମହାରାଜା ଧନୁର୍ଜ୍ଜୟ ନାରାୟଣ ଭଞ୍ଜଦେଓଙ୍କ ରାଜତ୍ୱ ସମୟରେ କେନ୍ଦୁଝରର ନୀରୀହ ଭୂୟାଁ ଆଦିବାସୀ ପ୍ରଜାମାନେ ବେଠୀ ବେଗାରୀରେ ଉତ୍‌କ୍ଷିପ୍ତ ହୋଇ ସେମାନଙ୍କର ନ୍ୟାଯ୍ୟ ଦାବୀ ହାସଲ କରିବା ପାଇଁ ୧୮୯୧ ମସିହାରେ ଧରଣୀଧର ନାୟକ, ଗଡ଼ଜାତ ରାଜ୍ୟ ଶାସକଙ୍କ ଅତ୍ୟାଚାରର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ଏହି ବିଦ୍ରୋହକୁ ଦମନ କରିବାପାଇଁ ତତ୍‌କାଳୀନ କେନ୍ଦୁଝର ରାଜାଙ୍କୁ ବ୍ରିଟିଶ୍ ସରକାର ନିଶ୍ଚିତ ସାହାଯ୍ୟ ଦେବା ଜାଣି ମଧ୍ୟ ଭୂୟାଁମାନେ ଆନ୍ଦୋଳନରେ ଝାସଦେଇ ଶାସକ ଓ ଇଂରେଜ ସୈନିକମାନଙ୍କ ଗୁଳି ସ୍ରୋତରେ ଆତ୍ମବଳୀ ଦେଇଥିଲେ । କେନ୍ଦୁଝରରେ ଆଦିବାସୀ ମାନଙ୍କ ସାହାସ ତ୍ୟାଗ ଓ ଦେଶପ୍ରାଣ ସମ୍ପର୍କରେ ଅନୁଧ୍ୟାନ କଲେ ଆଜି ପ୍ରତ୍ୟେକଙ୍କ ମନରେ ଉନ୍ମାଦନା ଜାଗ୍ରତ କରାଏ ।

କେନ୍ଦୁଝର ଜିଲ୍ଲାର କୁଶୁମିତା ଗ୍ରାମରେ ୧୮୬୪ ଖ୍ରୀଷ୍ଟାବ୍ଦ ମଇ ମାସ ତା ୫ରି ଖରେ ବିପ୍ଳବୀ ଧରଣୀଧର ନାୟକ ଏକ ପାର୍ବତ୍ୟ ଭୂୟାଁ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ପିତାଙ୍କ ନାମ ଲଇଛତା ନାୟକ ଏବଂ ମାତାଙ୍କ ନାମ ବାଇଗଣି ଦେବୀ । ଧରଣୀଧର ପିଲାଦିନରୁ ଅତ୍ୟନ୍ତ ମେଧାବୀ ଥିବାରୁ ଜନ୍‌ସନ୍ ସାହେବଙ୍କ ଦ୍ୱାରା ପ୍ରତିଷ୍ଠିତ ଗ୍ରାମ ବିଦ୍ୟାଳୟରୁ ଶିକ୍ଷା ଶେଷ କରିବାପରେ ମହାରାଜା ଧନୁର୍ଜ୍ଜୟ ନାରାୟଣ ଭଞ୍ଜଦେଓଙ୍କ ରାଜକୀୟ ସାହାଯ୍ୟରେ ଉଚ୍ଚଶିକ୍ଷା ପାଇଁ କଟକରେ ରହିଥିଲେ । ତୁଳସୀପୁରରେ ଥିବା କେନ୍ଦୁଝର ରାଜକୋଠୀରେ ଅବସ୍ଥାନ କରି କଟକ ସର୍ଭେ ଟ୍ରେନିଂରୁ ଉତ୍ତୀର୍ଣ୍ଣହୋଇ କେନ୍ଦୁଝର ପ୍ରତ୍ୟାବର୍ତ୍ତନ କରି କେନ୍ଦୁଝର ରାଜ୍ୟ ଶାସନରେ ସବ୍-ଓଭରସିୟର ପଦବୀରେ ନିଯୁକ୍ତି ପାଇଥିଲେ । ଏଥିପାଇଁ ସେ ସମୟର ଆସିସ୍‌ଟାଣ୍ଟ ମେନେଜର ବିଚିତ୍ରାନନ୍ଦ ଦାସଙ୍କ ପ୍ରରୋଚନାରେ ଧରଣୀଧରଙ୍କୁ ବହୁତ ଅପମାନ ଜନକ ବ୍ୟବହାର ପ୍ରଦର୍ଶନ କରାଯାଇଥିଲା । କାରଣ ବିଚିତ୍ରାନନ୍ଦ ଦାସଙ୍କ ଶିକ୍ଷାଗତ ଯୋଗ୍ୟତା ଅପେକ୍ଷା ଧରଣୀଧରଙ୍କର ଶିକ୍ଷାଗତ ଯୋଗ୍ୟତା ଅଧିକଥିଲା । ଏହି ଭୂୟାଁ ଆନ୍ଦୋଳନର ଦ୍ୱିତୀୟ ପର୍ଯ୍ୟାୟରେ କେନ୍ଦୁଝର ରାଜ୍ୟର ବନ୍ଦୋବସ୍ତ କରାଇବାକୁ ମହାରାଜା ସିଦ୍ଧାନ୍ତ ନେଇଥିଲେ । କିନ୍ତୁ ଏହାକୁ ଭଣ୍ଡୁର କରିବା ଉଦ୍ଦେଶ୍ୟରେ ବିଚିତ୍ରାନନ୍ଦ ଦାସ ଛୋଟ ପଦିକାରେ ଜମି ମାପ କରିବା ଧରଣୀ ଧରଙ୍କୁ ବନ୍ଦୋବସ୍ତ କାର୍ଯ୍ୟରୁ ଅବ୍ୟାହତି ଦେଇ କେନ୍ଦୁଝର ଓ ସିଂହଭୂମିର ସୀମା ବିବାଦ ସମାଧାନ ପାଇଁ ଚମ୍ପୁଆର ଲୁଣିକୁଦ ଓ ଗୋଧୂଳୀ ଗ୍ରାମକୁ ପଠେଇବା ପ୍ରଭୃତି ଗୁପ୍ତ ମନ୍ତ୍ରଣା ମହାରାଜାଙ୍କୁ ପ୍ରଦାନ କରିଥିଲେ । ମହାରାଜାଙ୍କ ଆଦେଶରେ ଧରଣୀଧର ସେହି କାର୍ଯ୍ୟ ସୁଷ୍ଠୁରୂପେ ସମାପନକରି କାଗଜ ପତ୍ରକୁ ଜଣେ ପାଇକ ହସ୍ତରେ ପଠାଇ ଦେଇ ନିଜ ଭଉଣୀ ଘର ପଦ୍ମପୁରରେ ଅବସ୍ଥାନ କରିଥିବାର ସୁଯୋଗ ନେଇ ବିଚିତ୍ରାନନ୍ଦ ଦାସ ରାଜାଙ୍କ ପାଖରେ ଧରଣୀ ବିରୁଦ୍ଧରେ ଅଭିଯୋଗ ଉପସ୍ଥାପନ କରିଥିଲେ ଯେ ସୀମା ବନ୍ଦୋବସ୍ତ କାର୍ଯ୍ୟନକରି ଧରଣୀଧର ନିଜ ଭଉଣୀ ଘରେ ରହୁଥିଲେ । ଅପରପକ୍ଷରେ ଧରଣୀ ପଠାଇଥିବା କାଗଜପତ୍ରକୁ ପାଇକଠାରୁ ବିଚିତ୍ରାନନ୍ଦ ଦାସ କରଗତ କରି ଇଂରେଜମାନଙ୍କ ପାଖରେ କାଗଜ ପତ୍ର ସବୁ ଦସ୍ତଖତ କରି ନିଜେ କରିଥିବାର ପ୍ରମାଣ ସ୍ୱରୂପ ରାଜାଙ୍କୁ ବନ୍ଦୋବସ୍ତ କାଗଜପତ୍ର ଭେଟି ଦେଇଥିଲେ ଏବଂ ଧରଣୀଧର ରାଜାଙ୍କ ବିରୁଦ୍ଧରେ ମେଳି କରୁଛି ବୋଲି ମିଛ ରିପୋର୍ଟ ଦେଇଥିଲେ ।

ଭୂୟାଁ ଆନ୍ଦୋଳନର ତୃତୀୟ ପର୍ଯ୍ୟାୟକୁ ଆଲୋଚନା କଲେ, ଜଣାଯାଏ ଯେ କେନ୍ଦୁଝର ନିକଟବର୍ତ୍ତୀ ମାଛକାନ୍ଦଣୀ ନାଳଉପରେ ଏକ ବନ୍ଧ ନିର୍ମାଣ କରିବା ପାଇଁ ମହାରାଜା ଇଂରେଜମାନଙ୍କ ସହାୟତା ଲାଭକରି ମୟୂରଭଞ୍ଜଠାରେ ଥିବା ଜଳପ୍ରକଳ୍ପ ଅନୁରୂପ ଏକ ଯୋଜନା କରିବା ପାଇଁ ନିଷ୍ପତ୍ତି ନେଇଥିଲେ । ସେ ସମୟରେ ଆନନ୍ଦପୁରଠାରେ ଓଡ଼ିଶାର ସୁପରିଚିତ ବ୍ୟାସ କବି ଫକିର ମୋହନ ସେନାପତି ରାଜାଙ୍କର ମେନେଜର କାର୍ଯ୍ୟ ତୁଲାଇଥିଲେ । ସେ ଏହି ଜଳ ସେଚନ ପ୍ରକଳ୍ପ ନିମିତ୍ତ କେନ୍ଦୁଝର ଆସି ମହାରାଜାଙ୍କୁ ୧୦ ହଜାର ଟଙ୍କାର ଖର୍ଚ୍ଚ ଅଟକଳ ପ୍ରଦାନ କରିଥିଲେ । ମାତ୍ର ମହାରାଜା ଏହା ଅଗ୍ରାହ୍ୟ କରି ବେଠିଆ ମାନଙ୍କ ଦ୍ୱାରା ଉକ୍ତ ବନ୍ଧ ନିର୍ମାଣ କାର୍ଯ୍ୟ ବିଚିତ୍ରାନନ୍ଦ ଦାସ ଓ

ହେଡ କନେଷ୍ଟବଲ ନାରାୟଣ ପତିଙ୍କୁ ଦାୟିତ୍ୱ ଦିଆଯାଇଥିଲା । ଦେୱାନ ବିଡିଶାନନ୍ଦ ଦାସ ଥିଲେ ଅତ୍ୟାଚାରୀ ଓ ଧୂର୍ତ୍ତ । ସେ ଭୂୟାଁ ପ୍ରଜାମାନଙ୍କୁ କେନ୍ଦୁଝର ରାଜ୍ୟର ପାଇକମାନଙ୍କ ଦ୍ୱାରା ଧରାଇଆଣି ମାଛକାନ୍ଦଣା ଯୋଡ଼ ନିର୍ମାଣ କାର୍ଯ୍ୟରେ ଲଗାଇ ଦେଲେ ଏବଂ ଗୁଳିବେପାଠାରୁ ବଡ଼ ବଡ଼ ଲୁହା ସାବଳ ମଗାଇ କେନ୍ଦୁଝର ଗଡ଼ର ସମତଳ ଅଞ୍ଚଳକୁ ଭାଙ୍ଗି ଏକ ନାଳ ଖୋଳା କାର୍ଯ୍ୟରେ ବେଠିଆମାନଙ୍କୁ ଲଗାଇ ଦେଲେ । ସେଠାରେ ବେଠିଆମାନେ ଭୋକ ଉପାସ ସହିନପାରି ଧରଣୀଧରଙ୍କୁ ଜଣାଇଥିଲେ । ସବ୍‌ଓଭରସିଅର ଧରଣୀଧର ଏତାଦୃଶ ଅତ୍ୟାଚାର ଦେଖି ମର୍ମାହତ ହେଉଥିଲେହେଁ ପ୍ରତିକାର କରିବା ତାଙ୍କପକ୍ଷରେ ସମ୍ଭବ ନଥିଲା । ଇତିମଧ୍ୟରେ ସମସ୍ତ ଅଞ୍ଚଳରେ ପ୍ରଜାମାନେ ବେଠି ଖଟି ଖଟି ବିରକ୍ତି ପ୍ରକାଶ କରୁଥିଲେ କାରଣ ସେ ସମୟରେ ଏକାଦି କ୍ରମେ କେତେକ ମନ୍ଦିର, ପୋଖରୀ, ଜଳାଶୟ ରାସ୍ତାଘାଟର ଉନ୍ନତି ଆନନ୍ଦପୁରଠାରେ କଚେରୀ ଓ କୁଶଳେଶ୍ୱରଠାରେ ମହାନଦୀର ପଥର ବନ୍ଧ ସଦୃଶ ଏକ ପଥର ବନ୍ଧ ନିର୍ମିତ ହୋଇଥିଲା ।ଉକ୍ତ ଉନ୍ନୟନ କାର୍ଯ୍ୟରେ ରାଜକୋଷରୁ ଅର୍ଥ ଖର୍ଚ୍ଚ ନ ହୋଇ ବେଠୀ ବେଗାରୀଙ୍କ ଦ୍ୱାରା ନିର୍ମାଣ କାର୍ଯ୍ୟ କରା ଯାଉଥିବାରୁ ଲୋକେ ଅତ୍ୟନ୍ତ କ୍ଷୁବ୍ଧ ହୋଇ ଆନ୍ଦୋଳନରେ ଝାସ ଦେଇଥିଲେ । ବେଠିପ୍ରଥା ବିରୁଦ୍ଧରେ ହାଣ୍ଡିଭଙ୍ଗା ଓ ବିମ୍ବୁକୀଠାରେ ବୈଠକ ମାନ ହୋଇ ଧରଣୀଧର ପରାମର୍ଶରେ ଇଂରେଜମାନଙ୍କ ରାଜଧାନୀ ବାରିପଦାଠାରେ ମହାରାଜାଙ୍କ ବିରୁଦ୍ଧରେ ବରଖାସ୍ତ ଦେବାକୁ ଲୁବେନ ପଠେଇଲ, ଉମା ନାଏକ, କୃଷ୍ଣ ନାଏକ, କୁସୁନ ନାଏକ ପ୍ରଭୃତି ଆଗୁଆର ହୋଇଥିଲେ । ଉକ୍ତ ବେଠି କାମରେ ଧରଣୀଧରଙ୍କ ବଡ ଭାଇ ଗୋପାଳ ନାୟକ ଅବାଧ ହେବାରୁ ଓ ଜୋରିମାନା ନଦେବାରୁ ତାଙ୍କୁ ୩ ମାସ କାରାଦଣ୍ଡ ହୋଇଥିଲା । ଏ ମଧ୍ୟରେ ଧରଣୀଧର ଭରଣୀ ଘରୁ ଫେରି ଦେଖିବାକୁ ପାଇଲେ ଯେ ତାଙ୍କର ସବୁ ଦିଗରୁ କେନ୍ଦୁଝର ରାଜ ଦରବାରରେ ବିପର୍ଯ୍ୟସ୍ତ ଘଟିଛି । ତେଣୁ ତାଙ୍କୁ କାଳେ ଗିରଫ କରାଯିବା ଭୟରେ ସେ କେନ୍ଦୁଝର ଛାଡ଼ି ନରେନ୍ଦ୍ର ମହା ପାତ୍ର ସଙ୍ଗେ ସାମିଲ ହୋଇ ଗୁଆଲି ଗ୍ରାମଠାରୁ ବିଦ୍ରୋହର ସୂତ୍ରପାତ କରାଇଥିଲେ । ଧରଣୀଧର ଭୂୟାଁମାନଙ୍କୁ ଏକଯୁଟ କରାଇବା ପାଇଁ ସିଆଡି ଶସ୍ତି ମାଧ୍ୟମରେ ବାର୍ତ୍ତା ପ୍ରେରଣ କଲେ ଓ ଧରଣୀଧର ନାୟକଙ୍କ ଆହ୍ୱାନ କ୍ରମେ ଭୂୟାଁମାନଙ୍କ ସମେତ ପାର୍ବତ୍ୟ ଓ ସୁଦୂର ଆନନ୍ଦପୁର ସମତଳ ଅଞ୍ଚଳର ପ୍ରଜାଗଣ ଆଗେଇ ଆସିଥିଲେ । ଅତ୍ୟାଚାରିତ ଭୂୟାଁ, ସାଉଁତି, ବାଥୁଡି ପ୍ରଭୃତି ଲୋକମାନେ ଆନ୍ଦୋଳନରେ ଯୋଗ ଦେଇଥିଲେ । ବିଦ୍ରୋହୀମାନଙ୍କର ସଂଖ୍ୟା କୋଡ଼ିଏ ହଜାର ଥିଲା । ରାଇଁସୁଆଁ ଗ୍ରାମର ବିଶାଳ ଆସତୋଟା ବିଦ୍ରୋହୀମାନଙ୍କର ପ୍ରଧାନ କେନ୍ଦ୍ରଥିଲା । ଏହିଠାରୁ ଧରଣୀଧର ଅତ୍ୟାଚାରୀ ବିଡିଶାନନ୍ଦ ଦାସ ଓ ରାଜତନ୍ତ୍ର ବିରୁଦ୍ଧରେ ବିଦ୍ରୋହର ଅଗ୍ନି ଜଳାଇଥିଲେ । ବିଦ୍ରୋହର ସମ୍ବାଦ ପାଇ ମହାରାଜା ଓ ବିଡିଶାନନ୍ଦ ଦାସ କେନ୍ଦୁଝର ଗଡ଼ରୁ ପଳାଇଥିଲେ । ଏହି ସମୟରେ ବିଦ୍ରୋହୀମାନେ ଜେଲଫାଟକ ଭାଙ୍ଗି ଧରଣୀଧରଙ୍କ ଭାଇ ଗୋପାଳ ନାଏକ ଓ ଅନ୍ୟାନ୍ୟ ବନ୍ଦୀମାନଙ୍କୁ ଉଦ୍ଧାର କଲେ । ମହାରାଜା ଏହି ସମୟରେ ଆନନ୍ଦପୁରଠାରେ ଅବସ୍ଥାନ କରି ଫକିର ମୋହନ ସେନାପତିଙ୍କୁ ଉକ୍ତ ବିଦ୍ରୋହ ଦମନ କରିବା ପାଇଁ କେନ୍ଦୁଝର ପଠାଇଲେ ବିଦ୍ରୋହୀମାନଙ୍କଦ୍ୱାରା ଫକିର ମୋହନ ସେନାପତି ବସନ୍ତପୁରଠାରେ ବନ୍ଦୀହୋଇ ରାଇସୁଆଁଣ୍ଡ ବିଦ୍ରୋହୀ ମାନଙ୍କ ଛାଉଣୀରେ ରଖାହେଲା । ସେ ସମୟରେ ଫକିର ମୋହନ ଚତୁରତାସହ ବିଦ୍ରୋହୀ ଧରଣୀଧରଙ୍କ ସହ ସନ୍ଧି ସ୍ଥାପନ କରି ଘରକୁ ଚିଠି ଦେବା ଆଳରେ ରାଜାଙ୍କ ପାଖକୁ ଇଂରେଜମାନଙ୍କଠାରୁ ସୈନ୍ୟମାନଙ୍କୁ କେନ୍ଦୁଝର ଅବରୋଧ ପାଇଁ ଚିଠି ପଠାଇଥିଲେ । ମାତ୍ର ଇଂରେଜ ସୈନ୍ୟମାନେ ଛତଭଙ୍ଗ ଦେଇ ବାହୁଡିଥିଲେ । ଏହାପରେ ଗଡ଼ଜାତର ଇଂରେଜ ସୁପରିଟେଣ୍ଡେଣ୍ଟ ମିଷ୍ଟର ଟସ୍‌ବିନ୍ ସାହେବଙ୍କ ଓ ଫକିର ମୋହନ ସେନାପତିଙ୍କ କୌଶଳରେ ଇଂରେଜମାନଙ୍କ ପାଖରେ ଧରଣୀଧରଙ୍କୁ ଧରାଇ ଦେଇଥିଲେ । ଏ ଅପରାଧ ପାଇଁ ଧରଣୀଧରଙ୍କୁ ୭ ବର୍ଷ ଜେଲ ଦଣ୍ଡ ଭୋଗିବାକୁ ପଡ଼ିଥିଲା । ଅନ୍ୟପକ୍ଷରେ ଇଂରେଜମାନେ ରାଜାଙ୍କ ବିରୁଦ୍ଧରେ ବହୁଦରଖାସ୍ତ ଭଦ୍ରକଠାରେ ପାଇଥିଲେ । ତେଣୁ ଇଂରେଜମାନେ ମହାରାଜାଙ୍କ ଅତ୍ୟାଚାର ତଦନ୍ତ ପାଇଁ କଟକରେ ଅବସ୍ଥାନ କଲେ । ମକୋଦମା ବିଚାର ପାଇଁ ଉତ୍କଳ ଗୌରବ ମଧୁସୂଦନ ଦାସ କଲିକତାଠାରେ ମିଃ ଟସ୍‌ବିନ୍ ସାହେବଙ୍କ ଆନିତ ଦୋଷ ଖଣ୍ଡନ କରି କେନ୍ଦୁଝର ପୂର୍ବ ରାଜକ୍ଷମତା ଜାହୀର କଲେ ।

ଏଥି ପାଇଁ କେନ୍ଦୁଝର ମହାରାଜା ମଧୁସୂଦନ ଦାସଙ୍କୁ ଗୋଟିଏ ଘର, ହାତୀ ଓ ମହାରାଣୀ ମାର୍କା ଏକଲକ୍ଷ ରୁପା ଟଙ୍କା ବକ୍‌ସିସ୍ ଦେଇଥିଲେ । ଫଳରେ ରାଜକୋଷରେ ଅର୍ଥାଭାବଯୋଗୁଁ ବେଠୀ ବେଗାରୀ କ୍ରମେ କ୍ରମେ ଭିଷଣ ଆକାର ଧାରଣା କଲା । ଧରଣୀ ଦଣ୍ଡିତ ହୋଇ କଟକ ଜେଲକୁ ପ୍ରେରିତ ହେଲେ । ଧରଣୀଧର ନାୟକଙ୍କ ଭାଇ ଗୋପାଳ ନାୟକ, ରୁଞ୍ଜି ପ୍ରଧାନ, କାଳିଆ ନାୟକ, ଚକ୍ରଧର ଭୁଜବଳ ଓ ଅନ୍ୟାଅନ୍ୟମାନେ ପୁଣି ବିଦ୍ରୋହର ଅଗ୍ନି ପ୍ରଜ୍ୱଳିତ କରିଥିଲେ ।

ଭୂୟାଁ ଆନ୍ଦୋଳନକୁ ଦବାଇ ଦେବାପାଇଁ ଗୁହି ବସାରୁ ଆସିଥିବା ଇଂରେଜ ଫଉଜମାନେ ଅନେକ ଧନ ନଷ୍ଟ କରି ଦେଇଥିଲେ, ଘର ଦ୍ୱାର ନିଆଁ ଲଗାଇଦେଇ ଥିଲେ । ଭୟରେ ଲୋକମାନେ ଘରଛାଡ଼ି ବଣ ଓ ପାଖ ରାଜ୍ୟସୀମାରେ ଆଶ୍ରୟ ନେଇଥିଲେ । ଏହି ବିଦ୍ରୋହରେ ଅନେକ ଲୋକଙ୍କୁ ହତ୍ୟା କରାଯାଇଥିଲା । ଗୋପାଳ ନାୟକ, ରୁଞ୍ଜି ପ୍ରଧାନ, କାଳିଆ ନାୟକଙ୍କୁ ପଥରରେ ଛେଚି ନିର୍ମମ ଭାବରେ ହତ୍ୟା କରାଯାଇଥିଲା । ବହୁଲୋକଙ୍କୁ ଜେଲ ଏବଂ ଦ୍ୱିପାନ୍ତର ଦଣ୍ଡ ଦିଆଗଲା । ଭୂୟାଁମାନଙ୍କ ତରଫରୁ ଗଭର୍ଣ୍ଣରଙ୍କ ସହ ସାକ୍ଷାତ ପାଇଁ ବିଦ୍ରେହୀ ମାନେ ଦାର୍ଜିଲିଂ ଯାଇଥିଲେ । ମାତ୍ର ଗଭର୍ଣ୍ଣରଙ୍କଠାରୁ ନାସ୍ତିବାଣୀ ଶୁଣି ସୁଦ୍ଧା ଭୂୟାଁମାନେ ଇଂରେଜ କିମ୍ବା ରାଜତନ୍ତ୍ର ପାଖରେ ମୁଣ୍ଡ ନୁଆଁଇଲେ ନାହିଁ । ଧରଣୀଧର ୧୮୯୨ଠାରୁ ୧୮୯୭ ପର୍ଯ୍ୟନ୍ତ ଜେଲ ଭୋଗି ମୁକ୍ତ ହେବାପରେ ମଧ୍ୟ କଟକରେ ଅବସ୍ଥାନ କରିବାକୁ ପଡ଼ିଥିଲା । କାରଣ ସେତେବେଳର ଶାସକ ଏପରି ବ୍ୟବସ୍ଥା କରିବାର କାରଣଥିଲା ଧରଣୀଧର କେନ୍ଦୁଝର ଆସିଲେ ପୁଣି କାଳେ ବିଦ୍ରୋହ ବଳ ବଢାଇ ହେବ ? ଏହାପରେ ଧରଣୀଧରଙ୍କର ଜୀବନରେ ବିରାଟ ପରିବର୍ତ୍ତନ ପରିଲକ୍ଷିତ ହୋଇଥିଲା । ସେ ପୁରୀଠାରେ ସମୁଦ୍ର ବେଳାଭୂମିର ବାଙ୍କୀ ମୁହାଣଠାରେ ତପସ୍ୟା ରତଥିଲେ । ଏହିଠାରେ ଉତ୍କଳ ମଣି ଗୋପବନ୍ଧୁ ଦାସ, ପଣ୍ଡିତ

ନିଳକଣ୍ଠ ଦାଶ ଧରଣୀଧରଙ୍କୁ ସାକ୍ଷାତ କରିଥିଲେ । ୧୯୧୭ ମସିହା କଟକ ଜିଲ୍ଲା ଆଳି ନିକଟରେ ଏକ ମଠ ନିର୍ମାଣ କରି ଶେଷ ଜୀବନ ଅତିବାହିତ କରିଥିଲେ । ୧୯୧୪ ମସିହା ବୈଶାଖ ପୂର୍ଣ୍ଣମା ଦିନ ତାଙ୍କର ମହା ପ୍ରସ୍ଥାଣ ଘଟିଥିଲା । ଆଳି ଶ୍ମଶାନର ଏକ ମୃତ୍ତିକାସ୍ତୁପ ତାଙ୍କର ସମାଧିରୂପେ ଅଦ୍ୟାବଧି ବିଦ୍ୟମାନ ।

ଊନବିଂଶ ଶତାବ୍ଦୀର ଶେଷ ଦଶକରେ ପ୍ରଜାମାନେ ନ୍ୟାଯ୍ୟଦାବୀ ହାସଲ କରିବାପାଇଁ ରାଜତନ୍ତ୍ର ଓ ଇଂରେଜମାନଙ୍କ ବିରୁଦ୍ଧରେ ଯେଉଁ ବିଦ୍ରୋହର ସୂତ୍ର ପାତ କରି ବେଠୀ ବେଗାରୀ ତଥା କୁଶାସନ ବିରୁଦ୍ଧରେ ସଂଗ୍ରାମ କଲେ ତାହା କେନ୍ଦୁଝର କାହିଁକି ସମଗ୍ର ଭାରତ ବର୍ଷରେ ଏକ ଗଣ ଆନ୍ଦୋଳନର ରୂପ ନେଇଥିଲା । ଓଡ଼ିଶାର ସୁପରିଚିତ ବ୍ୟାସ କବି ଫକିର ମୋହନ ସେନାପତି କେନ୍ଦୁଝର ଭୂୟାଁ ଗଣ୍ଡଗୋଳର କେତେକ ପରିଚ୍ଛେଦ ଲେଖି ଦେଇ ଯାଇନଥିଲେ ଏହାର ସତ୍ୟତା ଉଦ୍‌ଘାଟନ କରିବା ବହୁ କଷ୍ଟ ଦାୟକ ହୋଇଥାନ୍ତା । ମୋଟାମୋଟି ଭାବରେ କହିବାକୁ ଗଲେ ଭାରତର ମୁକ୍ତି ସଂଗ୍ରାମରେ ଓଡ଼ିଆ ଜାତିର ତଥା ବିପ୍ଳବୀ ଧରଣୀଧରଙ୍କ ଶୌର୍ଯ୍ୟ ଓ ଦେଶପ୍ରାଣତା ଅତୁଳନୀୟ ।

ସହାୟକ ଗ୍ରନ୍ଥ ସୂଚୀ:- ଉତ୍କଳ ଦ୍ୱିପିକା ୩୦-୪-୧୮୯୦, କେନ୍ଦୁଝର ଫକିର ମୋହନ ସେନାପତିଙ୍କ ଆତ୍ମଜୀବନୀ ଚରିତ ୪-୬-୧୮୯୧ ଇତିହାସ ଶତାବ୍ଦୀର ସୂର୍ଯ୍ୟ : ସୁରେନ୍ଦ୍ର ମହାନ୍ତି ।

ସାଂସ୍କୃତିକ ସମ୍ପାଦକ,
ମିଳନୀ ସାହିତ୍ୟ ସଂସଦ,
କେନ୍ଦୁଝର ।




ଭୁବନେଶ୍ୱରଠାରେ ଅନୁଷ୍ଠିତ "ନାରୀ ନିର୍ଯ୍ୟାତନା ନିରୋଧ" ଶୀର୍ଷକ ଏକ ଆଲୋଚନା ଚକ୍ରରେ ମୁଖ୍ୟମନ୍ତ୍ରୀ, ଶ୍ରୀ ପଟ୍ଟନାୟକଙ୍କ ଉଦ୍‌ବୋଧନ ।

# ବିଦ୍ୟୁତ୍ ଶକ୍ତି : ପ୍ରଗତିର ଆଧାର

ସଂକଳନ : ସୂଚନା ଓ ଲୋକ ସମ୍ପର୍କ ବିଭାଗ

ବିଗତ ଦଶନ୍ଧି ମଧ୍ୟରେ କାର୍ଯ୍ୟକାରୀ ହେଉଥିବା ପ୍ରକଳ୍ପଗୁଡ଼ିକର ଉତ୍ପାଦନ ଦକ୍ଷତା ବିଶେଷ ବୃଦ୍ଧି ପାଇନଥିବାରୁ ରାଜ୍ୟରେ ବିଦ୍ୟୁତ୍ ସଙ୍କଟ ଦେଖାଦେଇଛି। ଏହି ସଙ୍କଟର ସମାଧାନ କରିବା ଲାଗି ୧୯୯୦ ମାର୍ଚ୍ଚ ୫ ତାରିଖରେ ଓଡ଼ିଶାର ବରେଣ୍ୟ ନେତା ଶ୍ରୀ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଗଠିତ ହୋଇଥିବା ରାଜ୍ୟ ସରକାର, ବିଦ୍ୟୁତ୍ ଉତ୍ପାଦନ କ୍ଷେତ୍ରରେ ବିନିଯୋଗ ହେଉଥିବା ପୁଞ୍ଜିକୁ ବୃଦ୍ଧି କରିଛନ୍ତି। ୧୯୯୧-୯୨ ମସିହାରେ ଏଥିଲାଗି ୪୮୦ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି। ୧୯୯୧-୯୨ ମସିହା ବଜେଟ୍ ଅଟକଳରେ ୨୯୩ କୋଟି ଟଙ୍କା ବ୍ୟୟ ବରାଦ କରାଯାଇଛି। ଏହା ଫଳରେ ପୁଞ୍ଜି ବିନିଯୋଗ ଶତକଡ଼ା ୫୭ ଭାଗକୁ ବୃଦ୍ଧି ପାଇଛି। ଅପର ଇନ୍ଦ୍ରାବତୀ, ଅପର କୋଲାବ, ରେଙ୍ଗାଲି ଓ ଇବ୍ ତାପଜ ବିଦ୍ୟୁତ୍ କେନ୍ଦ୍ରଗୁଡ଼ିକ ଭଳି ଚାଲୁ ରହିଥିବା ତାପଜ ଓ ଜଳଜ ପ୍ରକଳ୍ପଗୁଡ଼ିକୁ ସମାପ୍ତ କରିବା ଲାଗି ସରକାର ବିଶେଷ ଗୁରୁତ୍ୱ ଆରୋପ କରିଛନ୍ତି। ୧୯୯୧-୯୨ ମସିହା ମଧ୍ୟରେ ରେଙ୍ଗାଲି ପ୍ରକଳ୍ପ ୫ମ ଶାଖା ଓ ଅପର କୋଲାବ ଜଳଜ ବିଦ୍ୟୁତ୍ ପ୍ରକଳ୍ପର ଦ୍ୱିତୀୟ ଶାଖା କାର୍ଯ୍ୟକାରୀ କରାଯିବ ବୋଲି ସ୍ଥିର କରାଯାଇଛି। ଇବ୍ ତାପଜ ବିଦ୍ୟୁତ୍ କେନ୍ଦ୍ରର ନିର୍ମାଣ କାର୍ଯ୍ୟ ଦ୍ରୁତ ଗତିରେ ଆଗେଇ ଚାଲିଛି। ଏଥି ନିମନ୍ତେ ସରକାର ୧୯୯୧-୯୨ ମସିହା ବଜେଟ୍ ଅଟକଳର ପର୍ଯ୍ୟାପ୍ତ ବ୍ୟୟ ବରାଦ କରିଛନ୍ତି। ସିନ୍ଦୋଲ ଭଳି ନୂଆ ତାପଜ ଓ ଜଳଜ ପ୍ରକଳ୍ପ, ହୀରାକୁଦ ବିଦ୍ୟୁତ୍ ପ୍ରକଳ୍ପରୁ ଅତିରିକ୍ତ ବିଦ୍ୟୁତ୍ ଉତ୍ପାଦନ, ତୁରୁରୀ ଓ ନଗାଡ ତାପଜ ବିଦ୍ୟୁତ୍ କେନ୍ଦ୍ର ଭଳି ତାପଜ ବିଦ୍ୟୁତ୍ କେନ୍ଦ୍ରଗୁଡ଼ିକର ଅନୁସନ୍ଧାନ କାର୍ଯ୍ୟ ଶେଷ ହୋଇଛି। ଏସବୁ ପ୍ରକଳ୍ପଗୁଡ଼ିକୁ ଅଷ୍ଟମ ଯୋଜନା କାଳ ମଧ୍ୟରେ କାର୍ଯ୍ୟକାରୀ କରାଯାଇ ପାରିବ। ବିଦ୍ୟୁତ୍ ଶକ୍ତି ଉତ୍ପାଦନ ଉଦ୍ଦେଶ୍ୟରେ ହୀରାକୁଦସ୍ଥିତ ପୁରୁଣା ଜଳଜ ପ୍ରକଳ୍ପ ଓ ତାଳଚେରସ୍ଥିତ ଏକମାତ୍ର ତାପଜ ବିଦ୍ୟୁତ୍ କେନ୍ଦ୍ର ଦ୍ୱୟର ମରାମତି ଓ ଆଧୁନିକୀକରଣ ଲାଗି ବିହିତ ପଦକ୍ଷେପମାନ ଗ୍ରହଣ କରାଯାଇଛି। ରାଜ୍ୟରେ ଥିବା ବିପୁଳ ଅକ୍ଷୟ ଶକ୍ତିର ବିନିଯୋଗ କରିବା ଲାଗି ଛୋଟ ଛୋଟ ଜଳଜ ପ୍ରକଳ୍ପମାନ ହାତକୁ ନିଆଯାଇଛି। ବୃହତ୍ ଶିଳ୍ପାନୁଷ୍ଠାନଗୁଡ଼ିକ ଯେପରି ନିଜ ନିଜର କ୍ୟାପ୍‌ଟିଭ୍ ବିଦ୍ୟୁତ୍ କାରଖାନା ନିର୍ମାଣ କରିପାରିବେ, ସେଥିଲାଗି ସେମାନଙ୍କୁ ଉତ୍ସାହ ପ୍ରଦାନ କରାଯାଉଛି। ଆବଶ୍ୟକତା ଓ ଯୋଗାଣ କ୍ଷେତ୍ରରେ ରହିଥିବା ତାରତମ୍ୟକୁ ମେଣ୍ଟାଇବା ଲାଗି ରାଜ୍ୟ ସରକାର ଘରୋଇ ଶିଳ୍ପଦ୍ୟୋଗୀମାନଙ୍କୁ ବିଦ୍ୟୁତ୍ ଉତ୍ପାଦନ କ୍ଷେତ୍ରରେ ସାହାଯ୍ୟ କରିବା ଲାଗି ଆହ୍ୱାନ କରିଛନ୍ତି।

ବୈଷୟିକ କାରଣରୁ ବିଦ୍ୟୁତ୍ ଶକ୍ତିର ଅପଚୟ, ଅସାଧୁ ଉପାୟରେ ବିଦ୍ୟୁତ୍ ଚୋରି, ମିଟର ନଥାଇ ବିଦ୍ୟୁତ୍ ଯୋଗାଣ ଓ ତ୍ରୁଟିପୂର୍ଣ୍ଣ ମିଟର ବ୍ୟବହାର ଫଳରେ ଯେଉଁଳି ବିଦ୍ୟୁତ୍ ଶକ୍ତିର ଅପଚୟ ଇତ୍ୟାଦିକୁ ରୋକିବା ଲାଗି ଟ୍ରାନ୍ସମିସନ୍ ଲାଇନ୍ ନିର୍ମାଣ ଓ ଅତ୍ୟଧିକ ବିଦ୍ୟୁତ୍ ସରବରାହ ଅଞ୍ଚଳଗୁଡ଼ିକରେ ସବ୍‌ଷ୍ଟେସନ୍ କେନ୍ଦ୍ର ନିର୍ମାଣ, ମିଟର ବ୍ୟବସ୍ଥା, ଟ୍ୟାମ୍ପର ପ୍ରୁଫ୍ ବାକ୍ସମାନ ରଖିବା, ଆକସ୍ମିକ ଚଢ଼ାଉ ବ୍ୟବସ୍ଥା ଓ ଭ୍ରାମ୍ୟମାଣ ଅଦାଲତ ବ୍ୟବସ୍ଥାମାନ ପ୍ରବର୍ତ୍ତନ କରାଯାଇଛି।

## ଶକ୍ତି ଉତ୍ପାଦନ ଦିଗରେ ପଦକ୍ଷେପ

ରାଜ୍ୟର ଅର୍ଥନୀତିକୁ ସୁଦୃଢ଼ କରିବା ପାଇଁ ଶିଳ୍ପ ଓ କୃଷିର ଉନ୍ନତି ଏକାନ୍ତ ଆବଶ୍ୟକ। ବିଦ୍ୟୁତ୍ ଶକ୍ତି ଶିଳ୍ପର ପ୍ରାଣ କେନ୍ଦ୍ର। କୃଷିର ଉନ୍ନତି ପାଇଁ ବିଦ୍ୟୁତ୍ ଶକ୍ତିର ଆବଶ୍ୟକତା ଅପରିହାର୍ଯ୍ୟ। ରାଜ୍ୟର କ୍ରମବର୍ଦ୍ଧିଷ୍ଣୁ ବିଦ୍ୟୁତ୍ ଚାହିଦା ଦୃଷ୍ଟିରୁ ଅଧିକ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରି ରାଜ୍ୟର କୃଷିରେ ଉନ୍ନତି ଆଣିବା ସଙ୍ଗେ ସଙ୍ଗେ ରାଜ୍ୟକୁ ଶିଳ୍ପ ସମୃଦ୍ଧ କରିବା ପାଇଁ ସରକାର ସଂକଳ୍ପବଦ୍ଧ।

ସପ୍ତମ ପଞ୍ଚବାର୍ଷିକ ଯୋଜନା କାଳରେ ରେଙ୍ଗାଲି ବିଦ୍ୟୁତ୍ ପ୍ରକଳ୍ପର ପ୍ରଥମ ପର୍ଯ୍ୟାୟର ଦୁଇଟି ୟୁନିଟ୍ ଓ ଦ୍ୱିତୀୟ ପର୍ଯ୍ୟାୟର ତିନୋଟି ୟୁନିଟ୍ ଏବଂ ଅପର କୋଲାବ ପ୍ରକଳ୍ପର ପ୍ରଥମ ପର୍ଯ୍ୟାୟରେ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଛି ଓ ସେଥିରୁ ମୋଟ ୨୩୫ ମେଗାୱାଟ୍ ବିଦ୍ୟୁତ୍ ଶକ୍ତି ଉତ୍ପାଦିତ ହୋଇଛି। ଏତଦ୍ ବ୍ୟତୀତ ପାରକା ଓ ଚୁଖା ଇତ୍ୟାଦି କେନ୍ଦ୍ରୀୟ ପ୍ରକଳ୍ପର ଆମ ରାଜ୍ୟର ଅଂଶ ବାବଦକୁ ୬୭ ମେଗାୱାଟ୍ ବିଦ୍ୟୁତ୍ ଶକ୍ତି ମିଳିବା ଫଳରେ ରାଜ୍ୟର ମୋଟ ବିଦ୍ୟୁତ୍ ଉତ୍ପାଦନ ୭୨୧ ମେଗାୱାଟ୍‌କୁ ବୃଦ୍ଧି ପାଇଛି।

କିନ୍ତୁ ରାଜ୍ୟରେ ଶିଳ୍ପର ଦ୍ରୁତ ଅଗ୍ରଗତି, ଉଠା ଜଳସେଚନ ଓ ଗ୍ରାମ୍ୟ ବିଦ୍ୟୁତ୍‌କରଣ ଯୋଜନାର ଆବଶ୍ୟକତା ପୂରଣ ପାଇଁ ସପ୍ତମ ଯୋଜନା ଶେଷ ସୁଦ୍ଧା ଆମ ରାଜ୍ୟର ବିଦ୍ୟୁତ୍ ଚାହିଦା ୧,୨୭୧ ମେଗାୱାଟ୍‌କୁ ବୃଦ୍ଧି ପାଇଥିବାରୁ ବିଦ୍ୟୁତ୍ ଶକ୍ତିର ଚାହିଦା ତୁଳନାରେ ଏହାର ଉତ୍ପାଦନ ୫୫୦ ମେଗାୱାଟ୍ ନିଅଣ୍ଟ ପରିଲକ୍ଷିତ ହୋଇଛି । ଏହାର ଭରଣା କରିବା ନିମନ୍ତେ ଓ ଭବିଷ୍ୟତର ବର୍ଦ୍ଧିଷ୍ଣୁ ବିଦ୍ୟୁତ୍ ଚାହିଦା ପୂରଣ କରିବାକୁ ଅଷ୍ଟମ ପଞ୍ଚବାର୍ଷିକ ଯୋଜନା କାଳରେ ସପ୍ତମ ଯୋଜନାର ଅସମ୍ପୂର୍ଣ୍ଣ ଜଳ ବିଦ୍ୟୁତ୍ ପ୍ରକଳ୍ପଗୁଡ଼ିକ ସମ୍ପୂର୍ଣ୍ଣ କରିବା, ରୁଗ୍ଣ ବିଦ୍ୟୁତ୍ ପ୍ରକଳ୍ପଗୁଡ଼ିକର ନବୀକରଣ ଏବଂ ନୂତନ ବିଦ୍ୟୁତ୍ ପ୍ରକଳ୍ପ ପ୍ରତିଷ୍ଠା କରିବା ନିମନ୍ତେ ୨,୮୩,୨୫୧·୦୦ ଲକ୍ଷ ଟଙ୍କା ବ୍ୟୟ ବରାଦ କରାଯାଇଛି । ସେଥିରୁ ୧୯୯୦–୯୧ ଆର୍ଥିକ ବର୍ଷ ପାଇଁ ୨୯,୩୫୦·୦୦ ଲକ୍ଷ ଟଙ୍କା ଓ ୧୯୯୧–୯୨ ଆର୍ଥିକ ବର୍ଷ ପାଇଁ ୪୮,୦୦୦·୦୦ ଲକ୍ଷ ଟଙ୍କା ବ୍ୟୟ ବରାଦ କରାଯାଇଛି ।

ସପ୍ତମ ଯୋଜନା କାଳରେ କାର୍ଯ୍ୟକାରୀ ହୋଇଥିବା ନିମ୍ନଲିଖିତ ଅସମ୍ପୂର୍ଣ୍ଣ ଜଳ ବିଦ୍ୟୁତ୍ ଓ ତାପଜ ବିଦ୍ୟୁତ୍ ପ୍ରକଳ୍ପଗୁଡ଼ିକର ଅସମ୍ପୂର୍ଣ୍ଣ କାର୍ଯ୍ୟକୁ ଅଷ୍ଟମ ପଞ୍ଚବାର୍ଷିକ ଯୋଜନା କାଳରେ ସମ୍ପୂର୍ଣ୍ଣ କରିବା ପାଇଁ ବିହିତ ପଦକ୍ଷେପ ନିଆଯାଇଛି ।

(୧) ରେଙ୍ଗାଲି ଜଳ ବିଦ୍ୟୁତ୍ ପ୍ରକଳ୍ପର ଦ୍ୱିତୀୟ ପର୍ଯ୍ୟାୟର ୫ମ ୟୁନିଟ୍ ।

(୨) ଅପର କୋଲାବ ଜଳ ବିଦ୍ୟୁତ୍ ପ୍ରକଳ୍ପର ଦ୍ୱିତୀୟ ପର୍ଯ୍ୟାୟର ୪ର୍ଥ ୟୁନିଟ୍ ।

(୩) ଅପର ଇନ୍ଦ୍ରାବତୀ ଜଳ ବିଦ୍ୟୁତ୍ ପ୍ରକଳ୍ପ ।

(୪) ହୀରାକୁଦ ସପ୍ତମ ୟୁନିଟ୍ ।

(୫) ପୋଟେରୁ କ୍ଷୁଦ୍ର ଜଳ ବିଦ୍ୟୁତ୍ ପ୍ରକଳ୍ପ ।

(୬) ଇବ୍ ତାପଜ ବିଦ୍ୟୁତ୍ ପ୍ରକଳ୍ପ ।

(୭) ତାଳଚେର ତାପଜ ବିଦ୍ୟୁତ୍ କେନ୍ଦ୍ରର ପ୍ରଥମ ଓ ଦ୍ୱିତୀୟ ପର୍ଯ୍ୟାୟର ନବୀକରଣ ଓ ପୁନରୁଦ୍ଧାର ।

ଉପରୋକ୍ତ ଅସମ୍ପୂର୍ଣ୍ଣ ପ୍ରକଳ୍ପଗୁଡ଼ିକ ମଧ୍ୟରୁ ଗତ ସେପ୍ଟେମ୍ବର ମାସରେ ହୀରାକୁଦ ସପ୍ତମ ୟୁନିଟ୍ ଉତ୍ପାଦନକ୍ଷମ ହୋଇପାରିଛି ଓ ଏହି ୟୁନିଟ୍‌ରୁ ଦୈନିକ ୩୭·୫ ମେଗାୱାଟ୍ ବିଦ୍ୟୁତ୍ ଶକ୍ତି ଉତ୍ପାଦନ ହୋଇପାରିଛି ।

ଉପରୋକ୍ତ ପ୍ରକଳ୍ପଗୁଡ଼ିକୁ କେବଳ ଅଷ୍ଟମ ଯୋଜନା କାଳରେ ୫୭୦ ମେଗାୱାଟ୍ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କରାଯିବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଏତଦ୍ ବ୍ୟତୀତ ଏହି ଯୋଜନା କାଳରେ କେନ୍ଦ୍ରୀୟ ପ୍ରକଳ୍ପରୁ ଓଡ଼ିଶା ଅଂଶ ବାବଦକୁ ୩୩୬ ମେଗାୱାଟ୍ ବିଦ୍ୟୁତ୍ ଶକ୍ତି ମିଳିବାର ଅଟକଳ କରାଯାଇଛି ।

ଏତଦ୍ ବ୍ୟତୀତ ଅଷ୍ଟମ ଯୋଜନା କାଳରେ ନିମ୍ନଲିଖିତ ନୂତନ ଜଳ ବିଦ୍ୟୁତ୍, ତାପଜ ବିଦ୍ୟୁତ୍ ଓ ମିନି ମାଇକ୍ରୋ ପ୍ରକଳ୍ପଗୁଡ଼ିକ କାର୍ଯ୍ୟକାରୀ କରିବା ପାଇଁ ପ୍ରାରମ୍ଭିକ ପଦକ୍ଷେପ ନିଆଯାଇଛି ।

## ଜଳ ବିଦ୍ୟୁତ୍ ପ୍ରକଳ୍ପ

(୧) ବରଗଡ଼ ହେଡ୍ ରେଗୁଲେଟର୍ (୩×୩ ମେଗାୱାଟ୍) ।

(୨) ବାଲିମେଳା ସମ୍ପ୍ରସାରଣ (୭ମ ଓ ୮ମ ୟୁନିଟ୍) (୨×୬୦ ମେଗାୱାଟ୍) ।

(୩) ମନ୍ଦିରା ଜଳ ବିଦ୍ୟୁତ୍ ପ୍ରକଳ୍ପ (୩×୧୦ ମେଗାୱାଟ୍ + ୧×୨·୫ ମେଗାୱାଟ୍) ।

(୪) ହରଭଙ୍ଗୀ ଜଳ ବିଦ୍ୟୁତ୍ ପ୍ରକଳ୍ପ (୧×୩୦ ମେଗାୱାଟ୍) ।

(୫) ସିନ୍ଦୋଳ ଜଳ ବିଦ୍ୟୁତ୍ ପ୍ରକଳ୍ପ (୫×୬୦ ମେଗାୱାଟ୍) ।

(୬) ହୀରାକୁଦ ଅତିରିକ୍ତ ଶକ୍ତି ଉତ୍ପାଦନ (୨୫୦×ଏମ୍. ୟୁ.) ।

(୭) ଜଳାପୁଟ (ଓଡ଼ିଶା ଓ ଆନ୍ଧ୍ରର ମିଳିତ ଉଦ୍ୟମ) ୯ ମେଗାୱାଟ୍ ଓଡ଼ିଶା ଅଂଶ) ।

(୮) ନିମ୍ନ ମାଛକୁଣ୍ଡ (ଓଡ଼ିଶା ଓ ଆନ୍ଧ୍ରର ମିଳିତ ଉଦ୍ୟମ) ୬୦ ମେଗାୱାଟ୍ ଓଡ଼ିଶା ଅଂଶ) ।

(୯) ଭୀମକୁଣ୍ଡ ଯୋଜନା (୫×୬୦ ମେଗାୱାଟ୍) ।

## ତାପଜ ବିଦ୍ୟୁତ୍ ପ୍ରକଳ୍ପ

(୧) ଇବ୍ ତାପଜ ବିଦ୍ୟୁତ୍ କେନ୍ଦ୍ର, ଦ୍ୱିତୀୟ ପର୍ଯ୍ୟାୟ (୨×୨୧୦ ମେଗାୱାଟ୍) ।

(୨) ତାଳଚେର ତାପଜ ବିଦ୍ୟୁତ୍ କେନ୍ଦ୍ର ସମ୍ପ୍ରସାରଣ—(ଖ) (୨×୨୫୦ ମେଗାୱାଟ୍) ।

ରାଜ୍ୟର ଶିଳ୍ପର ଅଭିବୃଦ୍ଧି ପାଇଁ ଶିଳ୍ପୋଦ୍ୟୋଗୀମାନଙ୍କୁ ନିମ୍ନମତେ ରିହାତି ଦରରେ ବିଦ୍ୟୁତ୍ ଯୋଗାଇ ଦେବା ପାଇଁ ଆଇ: ପି: ଆର୍: ୧୯୮୯ ଅନୁସାରେ ବ୍ୟବସ୍ଥା ଗ୍ରହଣ କରାଯାଇଅଛି ଓ ସେମାନଙ୍କୁ ନିମ୍ନମତେ ବିଦ୍ୟୁତ୍ ଶୁଳ୍କ ଛାଡ଼ କରାଯାଇଛି ।

୫୦୦ କେ: ଭି: ଏ: ପର୍ଯ୍ୟନ୍ତ ୧୦୦ ପ୍ରତିଶତ ।

୫୦୦ କେ: ଭି: ଏ:ରୁ ୫,୦୦୦ କେ: ଭି: ଏ: ପର୍ଯ୍ୟନ୍ତ ୭୫ ପ୍ରତିଶତ ।

୫,୦୦୦ କେ: ଭି: ଏ:ରୁ ୧୦,୦୦୦ କେ: ଭି: ଏ: ପର୍ଯ୍ୟନ୍ତ ୫୦ ପ୍ରତିଶତ ।

କୃଷି ଶିଳ୍ପ ଓ ଦୈନନ୍ଦିନ ଜୀବନର ବିଦ୍ୟୁତ୍ ଶକ୍ତିର ଚାହିଦା ବଢ଼ିଯାଉଥିବାରୁ ଏଥିପାଇଁ ଅଧିକା ବିଦ୍ୟୁତ୍ ଶକ୍ତି ଉତ୍ପାଦନ ନିମନ୍ତେ

ଯୁକ୍ତ ସମ୍ବଳ ଆବଶ୍ୟକ ହେଉଥିବାରୁ ବେସରକାରୀ ସ୍ତରରେ ବିଦ୍ୟୁତ୍ ପ୍ରକଳ୍ପ ସ୍ଥାପନ କରିବା ପାଇଁ ବିହିତ ପଦକ୍ଷେପମାନ ଗ୍ରହଣ ନିଆଯାଇଛି ।

## ଶକ୍ତି ସଂରକ୍ଷଣ

କୃଷି, ଶିଳ୍ପ, ପରିବହନ ସଂସ୍ଥା ବିଦ୍ୟୁତ୍ ଶକ୍ତି ଅଭାବରୁ ଅସୁବିଧାର ସମ୍ମୁଖୀନ ହେଉଥିବା ବେଳେ ବିନା କାରଣରେ ଶକ୍ତି ଅପଚୟକୁ ରୋକିବା ପାଇଁ ସରକାରୀ ଓ ବେସରକାରୀ ସ୍ତରରେ ବିହିତ ପଦକ୍ଷେପ ନେବା ପାଇଁ ଅନୁରୋଧ କରାଯାଇଛି । ଏଥିରେ ସର୍ବସାଧାରଣଙ୍କ ସହଯୋଗ ଆମର କାମ୍ୟ ।

ନୂତନ ବିଦ୍ୟୁତ୍ ପ୍ରକଳ୍ପ ଏବଂ ପୁରାତନ ପ୍ରକଳ୍ପର ପୁନରୁଦ୍ଧାର ଓ ଆଧୁନିକୀକରଣ ସହିତ ଅଧିକ ଟ୍ରାନ୍ସମିସନ୍ ଜନିତ କ୍ଷୟ କମାଇବା ପାଇଁ ବିଦ୍ୟୁତ୍ ସରବରାହ ଲାଇନ୍‌ର ଉନ୍ନତି ନିମନ୍ତେ ପଦକ୍ଷେପ ଗ୍ରହଣ କରାଯାଉଛି ।

ଅଷ୍ଟମ ପଞ୍ଚବାର୍ଷିକ ଯୋଜନା ପରେ ରାଜ୍ୟକୁ ଏକ ବିଦ୍ୟୁତ୍ ବଳକା ରାଜ୍ୟ କରିବା ପାଇଁ ସରକାର ଉପର ଲିଖିତ ବଳିଷ୍ଠ ପଦକ୍ଷେପମାନ ଗ୍ରହଣ କରିଛନ୍ତି ।

## ମିନି ମାଇକ୍ରୋ ଜଳ ବିଦ୍ୟୁତ୍ ପ୍ରକଳ୍ପ

(୧) ବାରବୋରିଆ (୨×୩୨୫ କିଲୋୱାଟ୍)

(୨) କେନ୍ଦୁପାଟଣା (୨×୨୫୦ କିଲୋୱାଟ୍)

(୩) ବାରିବାଟି (୨×୩୨୫ କିଲୋୱାଟ୍)

(୪) ବାଣପୁର (୨×୧୫୦ କିଲୋୱାଟ୍)

(୫) ହରଭଙ୍ଗୀ (୨×୧୦୦୦ କିଲୋୱାଟ୍)

(୬) ବଡ଼ନଳା (୨×୩୨୫ କିଲୋୱାଟ୍)

(୭) ଅନ୍ଧାରୀଭଙ୍ଗୀ (୧×୩୨୫ କିଲୋୱାଟ୍)

(୮) ବ୍ରହ୍ମପୁର ଡିଷ୍ଟ୍ରୀବ୍ୟୁଟାରୀ (୨୦୦ କିଲୋୱାଟ୍)

(୯) ଅପରଜଙ୍କ (୫୦୦ କିଲୋୱାଟ୍)

(ଉପର ଲିଖିତ ୯ଟି ବ୍ୟତୀତ ଆଉ ୧୬ଟି ମିନି ମାଇକ୍ରୋ ଜଳ ବିଦ୍ୟୁତ୍ ପ୍ରକଳ୍ପର କାମ ହାତକୁ ନେବା ପାଇଁ ଚିହ୍ନଟ କରାଯାଇଛି । ସେଗୁଡ଼ିକର ଅନୁସନ୍ଧାନ କାର୍ଯ୍ୟ ଚାଲୁ ରହିଛି ।)



ଗୋପାଳପୁରଠାରେ ବ ଟମଙ୍ଗଳା ବିଦ୍ୟାପୀଠର ରୌପ୍ୟ ଜୁବୁଲି ଉତ୍ସବରେ ବାଚସ୍ପତି, ଶ୍ରୀ ଯୁଧିଷ୍ଠିର ଦାସ ଅଭିଭାଷଣ ଦେଉଛନ୍ତି ।

# ପ୍ରଶାସନିକ ବିକେନ୍ଦ୍ରୀକରଣ

ଅଶୋକ କୁମାର ତାରେଣିଆ

ଆମ ଦେଶର ଶାସନ ପଦ୍ଧତି ବ୍ରିଟିଶ୍ ସରକାରଙ୍କ ଉପନିବେଶବାଦର ପ୍ରତିଫଳନ । ସ୍ୱାଧୀନତା ପ୍ରାପ୍ତିର ଏତେବର୍ଷ ପରେ ମଧ୍ୟ ସେହି ଶାସନ ପ୍ରଣାଳୀ କାର୍ଯ୍ୟକାରୀ ହେଉଅଛି । ଆଜି ମଧ୍ୟ ଲୋକମାନଙ୍କ ହାତରେ ପ୍ରକୃତ କ୍ଷମତା ନାହିଁ । କ୍ଷମତାର ବିକେନ୍ଦ୍ରୀକରଣର ଅର୍ଥ ନୁହେଁ ଯେ କେବଳ କେନ୍ଦ୍ରରୁ ରାଜ୍ୟସ୍ତରକୁ କ୍ଷମତା ଆସିବା । ଏହା ରାଜ୍ୟରୁ ଜିଲ୍ଲାସ୍ତରକୁ, ଜିଲ୍ଲାସ୍ତରରୁ ପଞ୍ଚାୟତସ୍ତରକୁ, ପଞ୍ଚାୟତସ୍ତରରୁ ଗ୍ରାମ୍ୟସ୍ତରକୁ, ସଚିବସ୍ତରରୁ ଉପ ସଚିବ ସ୍ତରକୁ ଜିଲ୍ଲାପାଳଙ୍କଠାରୁ ଅତିରିକ୍ତ ଜିଲ୍ଲାପାଳଙ୍କ ପାଖକୁ ଯିବା ଇତ୍ୟାଦି ଇତ୍ୟାଦି । ବ୍ରିଟିଶ୍ ସରକାର ତାଙ୍କର ସୁବିଧା ପାଇଁ କେତେଗୁଡ଼ିଏ ପଦବୀ ସୃଷ୍ଟି କରିଥିଲେ ଯାହାକି ସବୁ ସମୟ ପାଇଁ ବ୍ରିଟିଶ୍ ସରକାରଙ୍କୁ ସାହାଯ୍ୟ କରୁଥିଲା । ଏହି ପଦବୀ ଯେଉଁମାନେ ଅଳଙ୍କୃତ କରୁଥିଲେ ସେମାନେ ଲୋକମାନଙ୍କଠାରୁ ଦୂରେଇ ରହୁଥିଲେ, ଆଜି ମଧ୍ୟ ସେମାନେ ଲୋକମାନଙ୍କଠାରୁ ଦୂରେଇ ରହୁଛନ୍ତି ଏବଂ ଯାହାଦ୍ୱାରା ବିକେନ୍ଦ୍ରୀକରଣ ପାଇଁ ପରୋକ୍ଷରେ ବାଧା ସୃଷ୍ଟି କରୁଛନ୍ତି ।

ଆମ ଦେଶରେ ଲୋକ ପ୍ରତିନିଧିଙ୍କ (ବିଧାୟକ, ମନ୍ତ୍ରୀ ବ୍ୟତୀତ) ହାତରେ ପ୍ରତ୍ୟକ୍ଷ କ୍ଷମତା ନାହିଁ କହିଲେ ଅତ୍ୟୁକ୍ତି ହେବନାହିଁ । ବିଧାୟକମାନେ କୌଣସି କାର୍ଯ୍ୟ ପାଇଁ ମନ୍ତ୍ରୀ ବା ଅଧିକାରୀମାନଙ୍କୁ ଅନୁରୋଧ କରନ୍ତି । ସମୟେ ସମୟେ ତାଙ୍କ ଅନୁରୋଧ ମନ୍ତ୍ରୀ ବା ଅଧିକାରୀମାନେ ରକ୍ଷା କରନ୍ତି ନାହିଁ । ବିଧାୟକମାନେ ଆଇନ ପ୍ରଣୟନ କରନ୍ତି କିନ୍ତୁ ତାହା ଠିକ୍ ଭାବେ ପ୍ରଚଳିତ ହେଉଛି କି ନାହିଁ ବା କାର୍ଯ୍ୟକାରୀ ହେଉଛି କି ନାହିଁ ତାହା ଦେଖିବା ତାଙ୍କର କ୍ଷମତାର ବାହାରେ । ଆଇନର ପ୍ରକୃତ ଲକ୍ଷ୍ୟ ଉପରେ ଗୁରୁତ୍ୱ ନଦେବା ଦ୍ୱାରା ଆଇନଟି ଠିକ୍ ଭାବେ କାର୍ଯ୍ୟକାରୀ ହୋଇପାରେ ନାହିଁ । ଉପର ସ୍ତରରେ ମନ୍ତ୍ରୀ ବା ସଚିବ ସମସ୍ତ ଫାଇଲ୍ ତର୍ଜମା କରି ନିଷ୍ପତ୍ତି ନେବାକୁ ଯଥେଷ୍ଟ ସମୟ ପାଆନ୍ତି ନାହିଁ ଯାହାଦ୍ୱାରା ତଳସ୍ତରରୁ ଆସିଥିବା ପ୍ରସ୍ତାବଟି ଅନେକ ସମୟରେ କାଏମ୍ ରୁହେ । ତେଣୁ ନିମ୍ନସ୍ତରକୁ କ୍ଷମତାର ବିକେନ୍ଦ୍ରୀକରଣ ହେଲେ ନିଷ୍ପତ୍ତି ନେବା ପାଇଁ ବିଳମ୍ବ ହେବନାହିଁ ଏବଂ ନାଲିଫିତାର କୁପ୍ରଭାବ ପଡ଼ିବ ନାହିଁ । ଏତଦ୍ ବ୍ୟତୀତ ଲୋକ ପ୍ରତିନିଧି ତାଙ୍କର ନିଜର ନିର୍ବାଚନ ମଣ୍ଡଳୀରେ ଆଇନ ଠିକ୍ ରୂପେ କାର୍ଯ୍ୟକାରୀ ହୋଇପାରୁଛି କି ନାହିଁ ତାହା ତଦାରଖ କରିବାର ପ୍ରତ୍ୟକ୍ଷ କ୍ଷମତା ରହିବା ଆବଶ୍ୟକ ।

ଅନେକ ସମୟରେ ପ୍ରତ୍ୟେକ ବିଭାଗ ନିଜ ନିଜର ବିଭାଗକୁ **Water tight Compartment** ବୋଲି ଭାବିଥାନ୍ତି । ଯଦିଓ ପ୍ରତ୍ୟେକ ବିଭାଗର ଉଦ୍ଦେଶ୍ୟ ହେଉଛି ଜନସାଧାରଣଙ୍କୁ ଏହାର ସୁଫଳ ପ୍ରଦାନ କରିବା ତାହା ବିଚାର ନକରି ଗୋଟିଏ ବିଭାଗ ଅନ୍ୟ ବିଭାଗ ଉପରେ ଦୋଷ ଲଦିବା ଏକ ଚିରାଚରିତ ପ୍ରଥା ରୂପେ ଦେଖାଦେଇଛି । ଉଦାହରଣ ସ୍ୱରୂପ ଯେତେବେଳେ ରାସ୍ତାରେ ଆଲୋକ ଜଳେ ନାହିଁ । ଇଲେକ୍ଟ୍ରି ବିଭାଗ କୁହନ୍ତି ପୌର ସଂସ୍ଥା ତାଙ୍କୁ ଜିନିଷ ଯୋଗାଇ ପାରିନଥିବାରୁ ସେମାନେ ରାସ୍ତାରେ ଆଲୋକ ଲଗାଇପାରୁ ନାହାନ୍ତି ଯଦିଓ ଇଲେକ୍ଟ୍ରିସିଟି ବିଭାଗଙ୍କର ମଧ୍ୟ ରାସ୍ତାରେ ଆଲୋକ ଦେବା ହେଉଛି ଏକ ଗୁରୁ ଦାୟିତ୍ୱ । ତେଣୁ ଏହି ଗୋଟିଏ ଦାୟିତ୍ୱ ବିଭିନ୍ନ ବିଭାଗ ଉପରେ ନ୍ୟସ୍ତ ନକରି ଯେତେଦୂର ସମ୍ଭବ ଗୋଟିଏ ବିଭାଗ ଉପରେ ନ୍ୟସ୍ତ କରିବା ଉଚିତ ଯାହା ଫଳରେ କି ନିର୍ଭରଶୀଳତାଫମେ ହ୍ରାସ ପାଇବ । ଆଉ ଗୋଟିଏ ଉଦାହରଣ ଦିଆଯାଉ । କୌଣସି ସ୍ଥାନରେ ଆଇନ ଶୃଙ୍ଖଳା ବ୍ୟାହତ ହେଲେ ପ୍ରଶାସନ (ଜିଲ୍ଲା ମାଜିଷ୍ଟ୍ରେଟ୍) ଏବଂ ପୋଲିସ୍ ଉଭୟଙ୍କୁ ଦାୟୀ କରାଯାଏ । କାଗଜପତ୍ରରେ ପୋଲିସ୍ ମାଜିଷ୍ଟ୍ରେଟ୍‌ଙ୍କ ଅଧୀନରେ କାର୍ଯ୍ୟ କରିବା କଥା କିନ୍ତୁ କାର୍ଯ୍ୟ କ୍ଷେତ୍ରରେ ତାହା ହୁଏନାହିଁ । ମାଜିଷ୍ଟ୍ରେଟ୍‌ମାନେ ପ୍ରାୟ କଷ୍ଟେଇ ଭଳି କାର୍ଯ୍ୟ କରିଥା'ନ୍ତି । ତେଣୁ ଏହି ସ୍ଥାନରେ ଉଭୟ ପ୍ରଶାସନ ଏବଂ ପୋଲିସ୍ ଉପରେ ଦାୟିତ୍ୱ ନଦେଇ କେବଳ ପୋଲିସ୍ ବିଭାଗ ଉପରେ ଦାୟିତ୍ୱ ଦେବା ଉଚିତ ।

ଶାସନର ବିକେନ୍ଦ୍ରୀକରଣ ପ୍ରକ୍ରିୟାରେ ନିମ୍ନସ୍ତରରେ ସାଧାରଣ ଲୋକଙ୍କ ମତାମତକୁ ମଧ୍ୟ ଗୁରୁତ୍ୱ ଦେବା ଆବଶ୍ୟକ । କୌଣସି ନିଷ୍ପତ୍ତି ଉପରସ୍ତରରୁ ତଳସ୍ତରକୁ ସବୁବେଳେ ନଆସି ସମୟେ ସମୟେ ଏହା ତଳସ୍ତରରୁ ଉପରସ୍ତରକୁ ମଧ୍ୟ ଯିବା ଉଚିତ । ମନ୍ତ୍ରୀମାନେ ଯେତେବେଳେ କୌଣସି ନିଷ୍ପତ୍ତି ନେଉଛନ୍ତି ସେମାନେ କ୍ଷେତ୍ର କର୍ମଚାରୀଙ୍କ ସଙ୍ଗେ ଆଲୋଚନା କରି ନିଷ୍ପତ୍ତି ନେବା ଉଚିତ । ଏହା ନହେଲେ ନିଷ୍ପତ୍ତିଟି ଠିକ୍ ଭାବେ କାର୍ଯ୍ୟକାରୀ ହୋଇପାରେ ନାହିଁ ।

ଜିଲ୍ଲାପାଳଙ୍କ କ୍ଷମତା ଅନୁଧ୍ୟାନ କଲେ କ୍ଷମତା ବିକେନ୍ଦ୍ରୀକରଣର ଆବଶ୍ୟକତା ଅନୁଭବ କରାଯାଏ । ଜିଲ୍ଲାପାଳ ଜିଲ୍ଲାର ସମସ୍ତ ପ୍ରଶାସନିକ ଦାୟିତ୍ୱ ତୁଲାଇବା ସଙ୍ଗେ ସଙ୍ଗେ ଜିଲ୍ଲାର ଆଇନ ଶୃଙ୍ଖଳା ଦାୟିତ୍ୱ ମଧ୍ୟ ତୁଲାଇଥାନ୍ତି । ଏତଦ୍ ବ୍ୟତୀତ ସେ ବିଭିନ୍ନ ସଂସ୍ଥା ଯଥା ପୌର ସଂସ୍ଥା, ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା, ମାଛ ଚାଷ ଉନ୍ନୟନ ସଂସ୍ଥା ଇତ୍ୟାଦିର ଅଧ୍ୟକ୍ଷ ଥାଆନ୍ତି । ଏ ସମସ୍ତ କାର୍ଯ୍ୟ ଜଣେ ବ୍ୟକ୍ତି ପକ୍ଷରେ ତୁଲାଇବା ଏତେ ସହଜ ବ୍ୟାପାର ନୁହେଁ । ଏହି ସମସ୍ତ ଦାୟିତ୍ୱ କେବଳ ଜିଲ୍ଲାପାଳଙ୍କଠାରେ କେନ୍ଦ୍ରୀଭୂତ ନକରି ଅତିରିକ୍ତ ଜିଲ୍ଲାପାଳ ବା ଅନ୍ୟାନ୍ୟ ଅଧିକାରୀମାନଙ୍କ ଉପରେ ନ୍ୟସ୍ତ କରିବା ଆବଶ୍ୟକ ମନେହୁଏ । National Police Commission ତାଙ୍କର ରିପୋର୍ଟରେ ଦର୍ଶାଇଛନ୍ତି ଯେ ପ୍ରଶାସନଠାରୁ ପୋଲିସ୍ ଦୂରେଇ ରହିବା ଉଚିତ । ଆଇନ ଶୃଙ୍ଖଳା ଦାୟିତ୍ୱ ସମ୍ପୂର୍ଣ୍ଣ ଭାବେ ପୋଲିସ୍ ହାତରେ ରହିବା ଆବଶ୍ୟକ ବୋଲି ଦର୍ଶାଇଛନ୍ତି । ଯାହା ଫଳରେ କି ପୋଲିସ୍ ଉପରେ ଅଯଥା ହସ୍ତକ୍ଷେପ ହେବ ନାହିଁ । ପୋଲିସ୍‌କୁ ନାଲିଫିତାରୁ ମୁକ୍ତ କରାଯାଇ ପାରିବ ଏବଂ ଦୋହରା କାମ (duplication uf work) ହେବ ନାହିଁ । ଏହା ମଧ୍ୟ ପ୍ରଶାସନିକ ବିକେନ୍ଦ୍ରୀକରଣ ପ୍ରକ୍ରିୟାରେ ସାହାଯ୍ୟ କରିବ ।

ନ୍ୟାୟ ଦଣ୍ଡନୀତି କ୍ଷେତ୍ରରେ ମଧ୍ୟ କ୍ଷମତାର ବିକେନ୍ଦ୍ରୀକରଣ କରାଯିବାର ଆବଶ୍ୟକତା ରହିଛି । ଅଭିଜ୍ଞତାରୁ ଦେଖାଯାଉଛି ଯେ ଦୋଷୀ ସପକ୍ଷରେ ପ୍ରାୟ ସମସ୍ତ ଆଇନ କାନୁନ ବ୍ୟାଖ୍ୟା କରାଯାଇଥାଏ । ତଦନ୍ତକାରୀ ସଂସ୍ଥା, ଅଭିଯୋଜନା ପଦ୍ଧତି (procecution system), ଜେଲ୍ (remand home), ଯେଉଁଠାରେ କି କିଶୋର ଅପରାଧୀମାନେ ରୁହନ୍ତି, ଇତ୍ୟାଦି ପ୍ରାୟ ସମସ୍ତ ସଂସ୍ଥାଙ୍କ କାର୍ଯ୍ୟ ଅଧିକାଂଶ କ୍ଷେତ୍ରରେ ଅପରାଧୀ ସପକ୍ଷରେ ଥାଏ । Victim ସପକ୍ଷରେ ଏହି ସଂସ୍ଥାମାନଙ୍କ ସୁଫଳ କ୍ୱଚିତ ମିଳେ । ତା'ଛଡ଼ା ପ୍ରତ୍ୟେକ ସ୍ତରରେ ନ୍ୟାୟ ମିଳିବା ପାଇଁ ଯଥେଷ୍ଟ ବିଳମ୍ବ ହୁଏ । ଦଳମତ ନିର୍ବିଶେଷରେ ଗ୍ରାମ୍ୟସ୍ତରରେ ଯଦି କ୍ଷୁଦ୍ର ଅପରାଧଗୁଡ଼ିକ ବିଚାର କରାଯାଇ ପାରନ୍ତା ଲୋକେ ଅଯଥା କୋର୍ଟ କଚେରୀକୁ ଦୌଡ଼ି ସର୍ବସ୍ୱାନ୍ତ ହୁଅନ୍ତେ ନାହିଁ ଏବଂ ନ୍ୟାୟ ମଧ୍ୟ ଶୀଘ୍ର ମିଳିପାରନ୍ତା ।

ସୁଖର ବିଷୟ ବର୍ତ୍ତମାନ ବିକେନ୍ଦ୍ରୀକରଣ ପ୍ରକ୍ରିୟା କ୍ରମଶଃ ଆରମ୍ଭ ହୋଇଗଲାଣି । ଆମ ରାଜ୍ୟର ମୁଖ୍ୟମନ୍ତ୍ରୀ ଏ ବିଷୟରେ ଅଦମ୍ୟ ଚେଷ୍ଟା ଚଳାଇଛନ୍ତି । ରାଜ୍ୟର ଗୃହ ଓ ପୌର ଉନ୍ନୟନ ବିଭାଗ ଗୋଷ୍ଠୀ ପରିଚାଳନା (Community Management) ଉପରେ ଅଧିକ ଗୁରୁତ୍ୱ ଦେଉଛନ୍ତି । ଗୋଷ୍ଠୀ କିପରି ସମସ୍ତ ଉନ୍ନତିରେ ଭାଗ ନେଇପାରିବ ସେଥିପାଇଁ ଚେଷ୍ଟା ଚାଲିଛି । ରାଜ୍ୟସ୍ତରରେ ପୌର ସଂସ୍ଥାଗୁଡ଼ିକର ଉନ୍ନତିମୂଳକ କାର୍ଯ୍ୟର ସମୀକ୍ଷା ପାଇଁ State Urban Development Agency (SUDA) ଗଠନ କରାଯାଇଛି । ତା'ର କାର୍ଯ୍ୟ ବିକେନ୍ଦ୍ରୀକରଣ କରାଯାଇ ପ୍ରତି ଜିଲ୍ଲାରେ District Urban DEvelopment Agency (DUDA) ଗଠନ କରାଯାଇଛି । ନେହେରୁ ରୋଜଗାର ଯୋଜନାର Micro Enterprise Schemeରେ କେଉଁମାନେ ହିତାଧିକାରୀ ହେବେ ତା'ର ତାଲିକା ଲୋକ ପ୍ରତିନିଧିମାନେ ମଞ୍ଜୁର କରୁଛନ୍ତି । ଏତଦ୍ ବ୍ୟତୀତ ପ୍ରତ୍ୟେକ ପୌର ସଂସ୍ଥାରେ ଏକ କାର୍ଯ୍ୟନିର୍ବାହୀ କମିଟି ଗଠନ କରାଯାଇଛି । ତାହାର ଅଧ୍ୟକ୍ଷ ବିଧାୟକମାନେ ରହୁଛନ୍ତି । ସେମାନେ ବିଭିନ୍ନ ୱାର୍ଡରେ ଲୋକମାନଙ୍କ ସହ ଆଲୋଚନା କରି କି କି କାର୍ଯ୍ୟ ପୌର ସଂସ୍ଥା କରିବ ତାହା ପରିଷଦକୁ ସୁପାରିଶ କରୁଛନ୍ତି । ପଞ୍ଚାୟତସ୍ତରରେ ମଧ୍ୟ ଅନୁରୂପ ବ୍ୟବସ୍ଥା କରାଯିବାର ବ୍ୟବସ୍ଥା କରାଯାଇଛି । ଏହା ଯଦି ଆନ୍ତରିକତାର ସହ କରାଯାଏ, ଜନସାଧାରଣ ଉପକୃତ ହେବା ସଙ୍ଗେ ସଙ୍ଗେ ରାଜ୍ୟ ତଥା ଦେଶର ଉନ୍ନତି ସମ୍ଭବ ହେବ । ଏତଦ୍ ବ୍ୟତୀତ ଅମଲାତନ୍ତ୍ରର କୁପ୍ରଭାବ ଏବଂ ନାଲିଫିତାରୁ ଦେଶକୁ ମୁକ୍ତ କରିଦେବ ।

ନିର୍ବାହୀ ଅଧିକାରୀ,
ଶୈଦାର ପୌରପାଳିକା ।



ବିଞ୍ଝାର–ମାହାଙ୍ଗା ଶ୍ରୀ ଶ୍ରୀ ବିନୋଦ ବିହାରୀ ଯୁବକ ସଂଘର ରୌପ୍ୟ ଜୟନ୍ତୀ ଉତ୍ସବରେ ସଂସ୍କୃତି ମନ୍ତ୍ରୀ, ଶ୍ରୀ ଶରତ କୁମାର କର ଉଦ୍‌ବୋଧନ ଦେଉଛନ୍ତି । ସାଧାରଣ ଓ ପେନ୍‌ସନ୍ ବିଭାଗ ମନ୍ତ୍ରୀ ଶ୍ରୀ ପ୍ରସନ୍ନ ପାଟଶାଣୀ ମଞ୍ଚାସୀନ ।

# ଗୁହିପୁର : ସମୁଦ୍ର

ଧ୍ରୁବ୍ ଖୁଂଟିଆ

ସମୁଦ୍ରକୁ ଏତେଦିନେ ଚିହ୍ନିଲି ମୁଁ
ଆଜି ଏଇ ଗୁହିପୁର ନିର୍ଜନ ବେଳାରେ
ଯିଏ ମୋତେ ଅନାସ୍ୱାସେ ଦଳିମଛି
ମାଟିର କଣ୍ଢେଇ କରି ଆନନ୍ଦେ ଖେଳୁଛି
ତା' ଉର୍ମି ଉଷ୍ଣମ ହାତେ
ହସି ହସି ରାତି ଦି'ପହରେ ।

ମଝିରେ ମଝିରେ ସମୁଦ୍ର ପକ୍ଷୀଙ୍କ ସ୍ୱର
ଝାଉଁଳି ଯାଏ କେମିତି ଧୂସର ଜ୍ୟୋସ୍ନାରେ
ତନ୍ଦ୍ରା ତାର ନରମ ପକ୍ଷରେ
ପହଁରି ପହଁରି ଆସେ ସମୁଦ୍ର ସେପାଖୁ
ଶୋଇଯାଏ ବେଳାଭୂମି ଝାଉଁବଣ'
ଘୁମନ୍ତ ଓ ଛମିତ ଅନ୍ଧାରେ ।

କେମିତି ଏ ଅଲୌକିକ ଚେତନାପଣତ
ଫିଟି ଫିଟି ଆବୋରଇ ଆକାଶ ସାଗର
ରାତିଟାରେ ଏତେ କାହୁଁ ଅନ୍ଧ ପ୍ରଜାପତି
ଡେଣା ପିଟି ମୋ ଛାତିରେ
ମୋତେ କରିଦେଉଛନ୍ତି
ଧୀର ସମୀରେ ସାଉଁଳା
କଅଁଳିଆ ତାଳ ।

ମାଟି ପାଣି ପବନ ଅଗ୍ନିରେ
ଶୂନ୍ୟତାରେ ସିଝି ସିଝି
ମୁଁ ଯେମିତି ଜଡ଼ପିଣ୍ଡ ଅଥର୍ବ ପଥର;
ମୋ ଦେହରେ ଆଜି ଏଇ
ନବ ଜୀବନ୍ୟାସ ଏ ସମୁଦ୍ର ସତେ ଦେଲା
ପୋଡ଼ା ଭୂଇଁ ପୁଲକିତ ଖାଦ୍‌ବଳେ ଶ୍ୟାମଳ ।
ଝଡ଼ ଓ ବତାଶ ଗଲା କୁଆଡ଼େ ଉଭେଇ ?
ଉଦ୍‌ବେଳିତ ସମୁଦ୍ରରେ
ଧୀରେ ଧୀରେ ଦାନା ବାନ୍ଧେ
ଚୁନା ଚୁନା ଆକାଶର ଛାଇ.
ଏତେବେଳେ ରାତି ପାହି ଆସିଲା ବେଳକୁ
ସାଧବ ଯୁବତୀମାନେ ଅତି ପ୍ରମୋଦରେ
ଆସୁଛନ୍ତି ଧୀରେ ଧୀରେ ବୋଇତ
ବନ୍ଦାଇ ।

ଧୀରେ ଧୀରେ ଭାସିଆସେ ନୂପୁର ନିକ୍ୱଣ.
ବୋଇତ ଫେରିଆସିଛି
ଦୂର ବିଦେଶରୁ
ଚଳ ଚଳ ପାଣି ଶବଦରେ
ସପନ ଦହନ ।
ଓଦା ଓଦା ଚନ୍ଦ୍ର କିରଣରେ ଭିଜି ଭିଜି
ଅଦୂରରେ କଳୁଅଛି
ହଜିଲା ସେ ଭୁର୍ଯ୍ୟାଗଡ଼
ଇତିହାସ ନେସା ସେଇ
ବଳଙ୍ଗ ମୁହାଣ ।

ସମୁଦ୍ର ଉଷ୍ଣ ନିଶ୍ୱାସେ ଜହ୍ନ ନଇଁଆସେ
ସମୁଦ୍ର ସ୍ମୃତିକୁ । ଉର୍ମିରେ ଉର୍ମିରେ
ସିଏ ମୁଁ ସାଙ୍ଗ । ହାତ ଧରାଧରି ହୋଇ
ଛାତିରେ ଦୀପ ଜାଳୁଛୁ ଯାହା ପାଇଁ
ସିଏ କେଉଁ ଦୂର ଗାଆଁ ଟୁବୀ ଗାଡ଼ିଆର
ଫୁଟିଥିବା ଏକାକିନୀ ଶୀର୍ଣ୍ଣ ନୀଳ କଇଁ ।

ଏଇ ରାତି ପାହିଆସେ
ଅଭିମାନିନୀ ବେଳାର
ଜଳିଯାଏ ମନ.
ସମୁଦ୍ର ଯାଉଛି ଘୁଞ୍ଚି ଦୂରକୁ ଦୂରକୁ
ଶିଥିଳ ହେଉଛି ଧୀରେ ଦୃଢ଼ ଆଲିଙ୍ଗନ ।
କହୁଛି ବେଳାକୁ ସିଏ ବୁଝେଇ ସୁଝେଇ:

କ'ଣ କରିବି କହ ! ରାତିକୁ ଆସିଚି ଫେରି
କଥା ଦେଇଥିଲି ମୋର
ବାଟ ଥିବୁ ଚାହିଁ ।

ଏଇ ଯେଉଁ ସମ୍ପର୍କ ଛିଟିରେ
ମୁଁ ଫିଟି ବିଛି ହୋଇ ପଡୁଛି
ତପସରି ଯାଉଛି ବିମର୍ଶ ସାଗର
ପୁଣି ମୋତେ ସାଉଁଟି ଆଣୁଚି କିଏ :
ଏ କୂଳକୁ ଫରସ୍ତ ଆଲୁଏ

ଯେଉଁଠି ରହିଛି ଖାଲି
ଭଙ୍ଗା ଗେଣ୍ଡା ଶାମୁକା ଶଙ୍ଖରେ
ଗତ ରଜନୀର.......
ମଧୁ ଅଭିସାରର ସେ
ସୁବର୍ଣ୍ଣ ସ୍ୱାକ୍ଷର ॥

---

ଅଧ୍ୟାପକ,
ପ୍ରାଣନାଥ ମହାବିଦ୍ୟାଳୟ,
ଖୋର୍ଦ୍ଧା ।




ଭବାନୀପାଟଣାଠାରେ ମୁଖ୍ୟମନ୍ତ୍ରୀ, ଶ୍ରୀ ବିଜୁ ପଟ୍ଟନାୟକ କ୍ଷୁଧା ଓ ବେକାରୀ ଶୀର୍ଷକ ଏକ କର୍ମଶାଳା ଉଦ୍‌ଘାଟନୀ ଉତ୍ସବରେ ଉଦ୍‌ବୋଧନ ଦେଉଛନ୍ତି ।

# ଇବ୍ ଉପତ୍ୟକାରେ ତାପଜ ବିଦ୍ୟୁତ୍ କେନ୍ଦ୍ର ପ୍ରତିଷ୍ଠା ପାଇଁ ମାର୍କିନ୍ କମ୍ପାନୀ ସହ ରାଜିନାମା

ଶିଳ୍ପ ବିକାଶ ପାଇଁ ବିଦ୍ୟୁତ୍ ଶକ୍ତି ଏକାନ୍ତ ଆବଶ୍ୟକ । ଓଡ଼ିଶାରେ ଗଚ୍ଛିତ କୋଇଲା ଉପଯୋଗ କରି ଆଗାମୀ ଦଶବର୍ଷ ମଧ୍ୟରେ ୧୦ ହଜାର ମେଗାୱାଟ୍ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରାଯାଇ ପାରିବ ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ପ୍ରକାଶ କରିଛନ୍ତି ।

ଇବ୍ ଉପତ୍ୟକାରେ ପ୍ରାୟ ଛଅ ହଜାର କୋଟି ଟଙ୍କା ବ୍ୟୟରେ ୫୦୦ ମେଗାୱାଟ୍ ଉତ୍ପାଦନ କ୍ଷମତା ବିଶିଷ୍ଟ ତିନୋଟି ଓ ୨୧୦ ମେଗାୱାଟ୍ ଉତ୍ପାଦନ କ୍ଷମତା ବିଶିଷ୍ଟ ଦୁଇଟି ତାପଜ ବିଦ୍ୟୁତ୍ କେନ୍ଦ୍ର ପ୍ରତିଷ୍ଠା ପାଇଁ ୧୯୯୧ ମସିହା ଡିସେମ୍ବର ୧୩ ତାରିଖରେ ଆମେରିକାର ସଦର୍ଣ୍ଣ ଇଲେକ୍ଟ୍ରିକାଲ୍ ଇଣ୍ଟରନ୍ୟାସନାଲ୍ କମ୍ପାନୀ ଏବଂ ଓଡ଼ିଶା ସରକାରଙ୍କ ମଧ୍ୟରେ ଏକ ରାଜିନାମା ସ୍ୱାକ୍ଷରିତ ହୋଇଛି । ୧୯୨୦ ମେଗାୱାଟ୍ ବିଦ୍ୟୁତ୍ ଶକ୍ତି ଉତ୍ପାଦନ ପାଇଁ ପ୍ରସ୍ତାବିତ ଏହି ତାପଜ କେନ୍ଦ୍ରଗୁଡ଼ିକ ପାଇଁ ଚଳିତ ଶତାବ୍ଦୀର ଶେଷ ବେଳକୁ ସଦର୍ଣ୍ଣ ଇଲେକ୍ଟ୍ରିକାଲ୍ କମ୍ପାନୀ ବାର୍ଷିକ ପ୍ରାୟ ୬ରୁ ୭ ନିୟୁତ ଟନ୍ କୋଇଲା ଆବଶ୍ୟକ କରିବ ଏବଂ ଇବ୍ ଉପତ୍ୟକା ଅଞ୍ଚଳରୁ ଏହି କୋଇଲା ମିଳିପାରିବ । ଏହି କେନ୍ଦ୍ର ପ୍ରତିଷ୍ଠା ପାଇଁ ଆବଶ୍ୟକୀୟ ପୁଞ୍ଜି ସଦର୍ଣ୍ଣ ଇଲେକ୍ଟ୍ରିକାଲ ଇଣ୍ଟରନ୍ୟାସନାଲ୍ ଆୟୋଜନ କରିବେ । ଏହି ସବୁ କେନ୍ଦ୍ରରେ ଭାରତୀୟ ଇଞ୍ଜିନିୟର୍ ଓ ମ୍ୟାନେଜର୍‌ମାନଙ୍କୁ ଉପଯୁକ୍ତ ତାଲିମ୍ ଦିଆଯିବ ।

ଏହି ମାର୍କିନ କମ୍ପାନୀର ଏକ ପ୍ରତିନିଧି ଦଳ ଡିସେମ୍ବର ୮ ତାରିଖଠାରୁ ୧୨ ତାରିଖ ପର୍ଯ୍ୟନ୍ତ ଇବ୍ ଉପତ୍ୟକା ଓ ମଧ୍ୟପ୍ରଦେଶର କୋର୍ବା ବିଦ୍ୟୁତ୍ କେନ୍ଦ୍ର ପରିଦର୍ଶନ କରିଥିଲେ । ୧୩ ତାରିଖ ଦିନ ଦିଲ୍ଲୀଠାରେ ସ୍ୱାକ୍ଷରିତ ଏହି ଚୁକ୍ତିନାମାରେ ସଦର୍ଣ୍ଣ ଇଲେକ୍ଟ୍ରିକାଲ୍ସ ପକ୍ଷରୁ କମ୍ପାନୀର ଉପାଧ୍ୟକ୍ଷ କେନ୍ ନୁରାଲ୍ ଏବଂ ରାଜ୍ୟ ସରକାରଙ୍କ ପକ୍ଷରୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ, ଶକ୍ତି ବିଭାଗ ଶାସନ ସଚିବ ଶ୍ରୀ ଶ୍ରୀନିବାସ ରଥ ଏବଂ ରାଜ୍ୟ ବିଦ୍ୟୁତ୍ ବୋର୍ଡ ଅଧ୍ୟକ୍ଷ ଶ୍ରୀ କୃଷ୍ଣଚନ୍ଦ୍ର ମହାପାତ୍ର ସ୍ୱାକ୍ଷର କରିଥିଲେ ।

ଓଡ଼ିଶାରେ ଏହି ତାପଜ ବିଦ୍ୟୁତ୍ କେନ୍ଦ୍ର ପ୍ରତିଷ୍ଠା ପାଇଁ ପ୍ରଧାନମନ୍ତ୍ରୀ, କେନ୍ଦ୍ର ଶକ୍ତି ମନ୍ତ୍ରୀ ଏବଂ ଅର୍ଥ ମନ୍ତ୍ରଣାଳୟର ପଦାଧିକାରୀମାନେ ପୂର୍ଣ୍ଣ ସହାନୁଭୂତି ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ସମ୍ପୂର୍ଣ୍ଣ ସହଯୋଗ କରୁଥିବା ବିଷୟ ମୁଖ୍ୟମନ୍ତ୍ରୀ ପ୍ରକାଶ କରିଛନ୍ତି ।

ଇବ୍ ଉପତ୍ୟକା ବ୍ୟତୀତ ଦୁବୁରୀଠାରେ ୨୫୦ ମେଗାୱାଟ୍ କ୍ଷମତା ସମ୍ପନ୍ନ ତାପଜ ବିଦ୍ୟୁତ୍ କେନ୍ଦ୍ର ପ୍ରତିଷ୍ଠା ପାଇଁ ନର୍ଥ ଇଷ୍ଟ ଗ୍ୟାସ୍ ଏଜେନ୍ସି ପକ୍ଷରୁ କଳିଙ୍ଗ ପାୱାର୍ କର୍ପୋରେସନ୍ ନାମରେ ଏକ କମ୍ପାନୀ ରେଜିଷ୍ଟ୍ରିଭୁକ୍ତ ହୋଇଛି । ନରାଜଠାରେ ଅନୁରୂପ ଏକ ତାପଜ ବିଦ୍ୟୁତ୍ କେନ୍ଦ୍ର ପ୍ରତିଷ୍ଠା ପାଇଁ ମଧ୍ୟ ଅନ୍ୟ ଏକ ବିଦେଶୀ କମ୍ପାନୀ ଆଗ୍ରହ ପ୍ରକାଶ କରିଥିବା ବିଷୟରେ ମୁଖ୍ୟମନ୍ତ୍ରୀ ସୂଚନା ଦେଇଛନ୍ତି ।



ଓଡ଼ିଶାରେ ବିଦ୍ୟୁତ୍ କେନ୍ଦ୍ର ପ୍ରତିଷ୍ଠା ସମ୍ପର୍କରେ ଆମେରିକାରୁ ଆସିଥିବା ସଦର୍ଣ୍ଣ ଇଲେକ୍ଟ୍ରିକାଲ୍ ଇଣ୍ଟରନ୍ୟାସନାଲ୍ କମ୍ପାନୀର ବୈଷୟିକ ପ୍ରତିନିଧିମାନଙ୍କ ସହ ମୁଖ୍ୟମନ୍ତ୍ରୀ, ଶ୍ରୀ ବିଜୁ ପଟ୍ଟନାୟକଙ୍କ ଆଲୋଚନା ।

# ଓଡ଼ିଶାରେ ବେକାରୀ ଏବଂ ନିଯୁକ୍ତିର ସମ୍ଭାବନା

ଡକ୍ଟର ହୃଷିକେଶ ମିଶ୍ର

ନିକଟରେ ଶେଷ ହୋଇଥିବା ୧୯୯୧ ଜନଗଣନା ଅନୁସାରେ ଜନସଂଖ୍ୟା ବୃଦ୍ଧି ଆମ ଦେଶର ଏକ ବିରାଟ ସମସ୍ୟା । ଏହି ହିସାବରେ ଉଲ୍ଲେଖ ଅଛି ଓଡ଼ିଶାର ଲୋକ ସଂଖ୍ୟା ବର୍ତ୍ତମାନ ୩ କୋଟି ୧୯ ଲକ୍ଷ । ଯଦି ପ୍ରତିବର୍ଷ ୬/୭ ଲକ୍ଷ ଲୋକ ବଢ଼ନ୍ତି, ତେବେ ୨୦୦୦ ମସିହା ବେଳକୁ ଆମ ରାଜ୍ୟରେ ଚାରି ପାଞ୍ଚ କୋଟି ଲୋକ ଅଧିକ ହେବେ । ପ୍ରତ୍ୟେକ ୨୫ ଜଣରେ ଜଣେ ହେଉଛି ଓଡ଼ିଶାବାସୀ । ଏହା ମଧ୍ୟ ଉକ୍ତ ଗଣନାରୁ ସ୍ପଷ୍ଟ ହୋଇଛି । କେବଳ ଅନୁସୂଚିତ ଜାତି ଏବଂ ଉପଜାତିଙ୍କ ସଂଖ୍ୟା ଏଠି ଶତକଡ଼ା ୩୮ ଭାଗ । ଅନ୍ୟ ପକ୍ଷରେ, ଏଠି ଶିକ୍ଷିତଙ୍କ ସଂଖ୍ୟା ସର୍ବଭାରତୀୟ ହାର ତୁଳନାରେ ବହୁତ କମ୍ । ଅଶିକ୍ଷିତଙ୍କ ମଧ୍ୟରେ ମହିଳାଙ୍କ ସଂଖ୍ୟା ଯଥେଷ୍ଟ ବେଶୀ । ଏଣୁ ଦ୍ରୁତଭାବେ ବୃଦ୍ଧି ପାଉଥିବା ଜନ ସଂଖ୍ୟା 'ଲୋକଶକ୍ତି' ଏବଂ 'ଶ୍ରମଶକ୍ତି' ସୃଷ୍ଟି କରି ଚାଲିଛି ସିନା, ଏହାର ଗୁଣାତ୍ମକ ବୃଦ୍ଧି କରିପାରିନି । ଏଣୁ ପଞ୍ଚବାର୍ଷିକ ଯୋଜନାରେ "ଲୋକଶକ୍ତି ଯୋଜନା" ଏକ ଅପରିହାର୍ଯ୍ୟ ତଥା ସର୍ବାଦୌ ବିଧେୟ କାର୍ଯ୍ୟ ହୋଇଛି । ଉକ୍ତ ଲୋକଶକ୍ତିର ସଫଳ ବିନିଯୋଗ ତଥା ସଦୁପଯୋଗ ସାଙ୍ଗକୁ ପ୍ରାକୃତିକ ସମ୍ବଳର ଯଥାଯଥ ବିନିଯୋଗ କରାଗଲେ ଉନ୍ନତି ଦ୍ରୁତତର ହେବ । ଫଳରେ ମାନବ ସମ୍ବଳ ବା 'ଜନଶକ୍ତି'ର ଅପଚୟ ନହୋଇ ଦେଶର ଦ୍ୱିବିଧ ବିପତ୍ତି ଯଥା– ଦାରିଦ୍ର୍ୟ ଏବଂ ବେକାରୀ ହଟିଯିବ । ଯେଉଁ ଦେଶ ବା ଜାତି ଏହାର ସଦ୍ – ବିନିଯୋଗ କରି ପାରି ନାହିଁ, ସେ ଦେଶ ସେତେ ଅନୁନ୍ନତ ରହିଛି ।

## ବିଶାଳ ଶ୍ରମଶକ୍ତି :

କହିବା ବାହୁଲ୍ୟ ଯେ ଆମ ବର୍ତ୍ତମାନ ଜନସଂଖ୍ୟା ଅସଂଖ୍ୟ ଶ୍ରମଶକ୍ତି ସୃଷ୍ଟି କରି ଚାଲିଛି । ଏକ ପର୍ଯ୍ୟବେକ୍ଷଣରୁ ଜଣାଯାଏ ଯେ ଶତକଡ଼ା ୪୦ ଭାଗଲୋକ, ୧୫ ବର୍ଷରୁ କମ୍ ବୟସର । ଏଣୁ ସେମାନେ କାର୍ଯ୍ୟକ୍ଷମ ନୁହନ୍ତି । ଶତକଡ଼ା ୫୩ ଜଣ, ୧୫ ବର୍ଷରୁ ୫୯ ବର୍ଷ ମଧ୍ୟରେ ଥିବାରୁ ସେମାନେ କାର୍ଯ୍ୟକ୍ଷମ ବା ଶ୍ରମଶକ୍ତିର ଆଧାର । ଅବଶିଷ୍ଟ ୭ଜଣ ବୃଦ୍ଧ ବା ଅକ୍ଷମ ଶ୍ରେଣୀର ଅଂଶ ବିଶେଷ । ଏଣୁ ବସ୍ତୁତଃ ଅର୍ଦ୍ଧେକ ଲୋକଙ୍କ ଉପରେ ବାକି ଅର୍ଦ୍ଧେକ ଲୋକଙ୍କ ବୋଝ ପଡ଼ୁଛି । ଏଥର ଜନଗଣନା ଅନୁସାରେ ସମୁଦାୟ କାର୍ଯ୍ୟକ୍ଷମ ଲୋକଙ୍କ ମଧ୍ୟରୁ ଶତକଡ଼ା

୪୭ ଭାଗ – କୃଷକ
୨୭ ଭାଗ – କୃଷି ଶ୍ରମିକ
୪ ଭାଗ – ଗୃହ ଶିଳ୍ପୀ
୨୨ ଭାଗ – ଅନ୍ୟାନ୍ୟ କର୍ମୀ

ଅନ୍ୟ ପକ୍ଷରେ, ସମୁଦାୟ କାର୍ଯ୍ୟକ୍ଷମ ଲୋକଙ୍କ ମଧ୍ୟରୁ ଶତକଡ଼ା ୫୦ ଭାଗ ମହିଳା । ଏଣୁ ଶତକଡ଼ା ୫୩ ଭାଗ କାର୍ଯ୍ୟକ୍ଷମ ଲୋକଙ୍କ ମଧ୍ୟରୁ ମହିଳାଙ୍କୁ ବାଦ ଦେଲେ ଶତକଡ଼ା ୨୬/୨୭ ଜଣଙ୍କ ଉପରେ ସମସ୍ତ ବୋଝ ପଡ଼ୁଛି । ଏଣୁ ପ୍ରକୃତ ପକ୍ଷେ ଶତକଡ଼ା ୭୩ ଭାଗ ଲୋକଙ୍କର ଭରଣପୋଷଣ ଇତ୍ୟାଦି ଶତକଡ଼ା ୨୭ ଜଣଙ୍କ ଉପରେ ନ୍ୟସ୍ତ । ପୁନଶ୍ଚ ଉକ୍ତ ୨୭ ଜଣଙ୍କ ମଧ୍ୟରୁ ଅନେକ ପ୍ରାୟତଃ ବେକାର ଏବଂ ଅର୍ଦ୍ଧ ବେକାର । ଫଳରେ ଜନ ବିସ୍ଫୋରଣ ବେକାରୀ ସୃଷ୍ଟି କରି ଚାଲିଛି ।

## ଆମ ରାଜ୍ୟରେ ବେକାରୀ କେତେ ?

ବେକାର କହିଲେ ସମ୍ପୂର୍ଣ୍ଣ ବେକାର, ଅର୍ଦ୍ଧ ବେକାର, ଛଦ୍ମବେଶୀ ବେକାର ତଥା ଋତୁଗତ ବେକାରଙ୍କୁ ବୁଝାଯାଏ । ଏଣୁ ଏ ସବୁର ପରିପ୍ରେକ୍ଷୀରେ ମୋଟ ଜନସଂଖ୍ୟାର ଶତକଡ଼ା ୮୦/୮୫ ଭାଗ ଲୋକେ ବେକାର ପଦବାଚ୍ୟ । ଏକ ହିସାବରୁ ଜଣାଯାଏ ବେକାରୀ ଏବଂ ଅର୍ଦ୍ଧ ବେକାରୀଙ୍କ ସଂଖ୍ୟା ବର୍ତ୍ତମାନ ଓଡ଼ିଶାରେ ଯଥାକ୍ରମେ ୮୭ ଏବଂ ୧୭ ଲକ୍ଷ ମାତ୍ର । ଅନ୍ୟାନ୍ୟ ବେକାରଙ୍କ ସଂଖ୍ୟା ପୂର୍ଣ୍ଣ ଅଟକଳ କରାଯାଇ ପାରିନାହିଁ । ଏ ସମସ୍ତ ଗଣନା ଯାହା ହେଉନା କାହିଁକି ଓଡ଼ିଶାରେ ଶିକ୍ଷିତ ଅର୍ଦ୍ଧଶିକ୍ଷିତ ବେକାରଙ୍କ ସଂଖ୍ୟା ନିଶ୍ଚୟ ଅତ୍ୟଧିକ । ଏହା ବ୍ୟତୀତ କୃଷକ, କୃଷି ଶ୍ରମିକ, ଜମିହୀନ ତଥା କାରିଗର କୁଶଳୀ ଏବଂ ଅର୍ଦ୍ଧକୁଶଳୀ ଶ୍ରମିକ ଇତ୍ୟାଦି ବେକାର । ବେକାରମାନେ ଅଣ ଉତ୍ପାଦନକାରୀ ଉପଭୋକ୍ତା । ତେଣୁ ଜଟିଳ ସମସ୍ୟା ସୃଷ୍ଟି କରନ୍ତି । ଆମ ରାଜ୍ୟରେ ବାସ୍ତବିକ ନିଯୁକ୍ତିର ସୁଯୋଗ ତଥା ବିକଳ୍ପ ନିଯୁକ୍ତିର ଅଭାବ ରହିଛି ।

## ଶିକ୍ଷିତ ବେକାର :

ଯଦିଓ କର୍ମ ନିଯୁକ୍ତି ନିର୍ଦ୍ଦେଶାଳୟର ତଥ୍ୟ ଅନୁସାରେ ଶିକ୍ଷିତ ବେକାରଙ୍କ ସଂଖ୍ୟା ଏବେ କମିଛି । ଏହାର ଅର୍ଥ ନୁହେଁ ଯେ ପ୍ରାୟ ସମସ୍ତେ ନିଯୁକ୍ତି ପାଇଛନ୍ତି । ଅନେକ ଶିକ୍ଷିତ ଆଉ ନାମ ପଞ୍ଜିକାକରଣ କରାଉ ନାହାନ୍ତି । ଯଦିବା ନାମ ଅଛି ତାହା ପୁନଃ ପଞ୍ଜିକାକରଣ ଅଭାବରୁ କଟୁଛି । ଏଣୁ ଏ ଦିଗରେ ପ୍ରକୃତ ତଥ୍ୟ ଜଣା ପଡୁ ନାହିଁ । ମାତ୍ର ଦ୍ରୁତ ଭାବରେ ବଢ଼ି ଚାଲିଥିବା ଜନସଂଖ୍ୟା ତଥା ଲୋକ ଶକ୍ତିକୁ ଆଧାର କରି ଶିକ୍ଷିତ ବେକାରଙ୍କ ସଂଖ୍ୟା ବର୍ତ୍ତମାନ ଓଡ଼ିଶାରେ ୨୫ ଲକ୍ଷ ହୋଇ ପାରେ ।

ଅନ୍ୟ ପକ୍ଷରେ ବୈଷୟିକ ଜ୍ଞାନ, ତାଲିମ ଏବଂ କାରିଗରୀ କୌଶଳ ଡିଗ୍ରୀ ଓ ଡିପ୍ଲୋମାଧାରୀ ବେକାରଙ୍କ ସଂଖ୍ୟା ଅଧିକ । ଆଉ ଏକ ସର୍ବେକ୍ଷଣରୁ ଜଣାଯାଏ ଯେ ଏ ସମସ୍ତ ବିଷୟରେ ଯଥା- କୃଷି, ଶିଳ୍ପ, ଯାନ୍ତ୍ରିକ, ସ୍ୱାସ୍ଥ୍ୟ ମତ୍ସ୍ୟ ଏବଂ ପଶୁପାଳନ ଇତ୍ୟାଦିରେ 'ପ୍ରବିଧି' ତଥା ଅର୍ଦ୍ଧ ପ୍ରବିଧିଜ୍ଞାନ ହାସଲ କରିଥିବା ବ୍ୟକ୍ତିଙ୍କ ସଂଖ୍ୟା ଓଡ଼ିଶାରେ ପ୍ରାୟ ୩,୫୦୦୦ । ମାତ୍ର ଆମ ପ୍ରାକୃତିକ ସମ୍ବଳ, ଶିଳ୍ପଗତ ସମ୍ଭାବନା, କଞ୍ଚାମାଲ, ଶ୍ରମଶକ୍ତି, ଭୂମି, ଜଙ୍ଗଲ ତଥା ବିଦ୍ୟୁତ ଉତ୍ପାଦନ ସମ୍ଭାବନା ଇତ୍ୟାଦିରୁ ଜଣାପଡେ ଯେ ଏଠି ବହୁ ବୈଷୟିକ ବିଜ୍ଞାନୀଙ୍କର ଆବଶ୍ୟକତା ରହିଛି । ମାତ୍ର ଏମାନେ ବେକାର ଅଛନ୍ତି । ଏହା ଏକ ବିଡ଼ମ୍ବନା ମାତ୍ର ।

## ନିଯୁକ୍ତି ପାଇଛନ୍ତି କେତେ ?

ଏକ ସରକାରୀ ହିସାବରୁ ଜଣାଯାଏ ଯେ, ବର୍ତ୍ତମାନ ପର୍ଯ୍ୟନ୍ତ ସରକାରୀ ଏବଂ ଅର୍ଦ୍ଧ ସରକାରୀ ତଥା ବେସରକାରୀ ସଂସ୍ଥାରେ କେବଳ ୮ ଲକ୍ଷ ନିଯୁକ୍ତି ପାଇଛନ୍ତି । ଉକ୍ତ ନିଯୁକ୍ତିରେ ମହିଳାଙ୍କ ସଂଖ୍ୟା ମାତ୍ର ୮ ଭାଗ । ଏଣୁ ମହିଳାଙ୍କ କ୍ଷେତ୍ରରେ ନିଯୁକ୍ତିର ସୁଯୋଗ ବଢ଼ିବା ଦରକାର । ମାତ୍ର ଏସବୁ କ୍ଷେତ୍ରରେ ମୋଟାମୋଟି ବିଶେଷ ନିଯୁକ୍ତି ବଢ଼ିପାରୁ ନଥିବାରୁ ଅନ୍ୟାନ୍ୟ କ୍ଷେତ୍ରରେ ନିଯୁକ୍ତିର ସୁଯୋଗ ସୃଷ୍ଟି କରିବା ଦରକାର । ଅନ୍ୟାନ୍ୟ କ୍ଷେତ୍ର ଯଥା କ୍ଷୁଦ୍ର ଉଦ୍ୟୋଗ, ପାରମ୍ପରିକ ଗ୍ରାମଶିଳ୍ପ, କୁଟିରଶିଳ୍ପ ତଥା ଆୟ ନିଯୁକ୍ତି ଯୋଜନା ମାଧ୍ୟମରେ ବହୁ ଲୋକଙ୍କୁ ନିଯୁକ୍ତି ଦେଇ ରୋଜଗାର ପଥକୁ ସୁଗମ କରିବା ଦରକାର ।

## ଶିଳ୍ପ ଜନିତ ନିଯୁକ୍ତି :

ଆଞ୍ଚଳିକ ସମ୍ବଳ, ଶିଳ୍ପ କୌଶଳ, କଞ୍ଚାମାଲ ଶ୍ରମଶକ୍ତି ତଥା ଉଦ୍ୟମ ଏବଂ ଆଧାରିତ ସଂରଚନା ଯଥା- ଗମନା ଗମନ, ଯୋଗାଯୋଗ, ବିଦ୍ୟୁତ୍ ଇତ୍ୟାଦିର ସଦୁପଯୋଗରେ କ୍ଷୁଦ୍ର, ମଧ୍ୟମ ତଥା ବୃହତ ଶିଳ୍ପ ପ୍ରତିଷ୍ଠା କରି ସ୍ଥାନୀୟ ଉଦ୍ୟୋଗୀମାନଙ୍କୁ ଉତ୍ସାହିତ କରାଯିବା ଦରକାର । ସ୍ଥଳ ବିଶେଷରେ ଉଦ୍ୟୋଗଗୁଡ଼ିକର ଆଧୁନିକ ଯନ୍ତ୍ରୀକରଣ, ନୂତନ ପ୍ରବିଧି ବିଜ୍ଞାନ ଏବଂ ବୈଜ୍ଞାନିକ କୌଶଳର ପ୍ରୟୋଗ କରି କାର୍ଯ୍ୟଦକ୍ଷ ସଂଗଠକ କଲେ ଲାଭର ହାର ବଢ଼େ ଏବଂ ବିଭିନ୍ନ ଚାକିରି ସୃଷ୍ଟି ହୁଏ । ମାତ୍ର ସମ୍ବଳ ତଥା ପୁଞ୍ଜି ସୃଷ୍ଟି ଏବଂ ବିଦ୍ୟୁତ୍ ଶକ୍ତିର ଅଭାବ ଯୋଗୁ ବହୁ ସଂଖ୍ୟାରେ ଶିଳ୍ପ ପ୍ରତିଷ୍ଠା ହୋଇ ପାରୁ ନାହିଁ । ଯଦିବା ହେଉଛି ତାହା ଜନ୍ମରୁ ରୁଗ୍ଣ ହୋଇ ଯାଉଛି । ଅନ୍ୟ ପକ୍ଷରେ ଏଠି ସହର ସୃଷ୍ଟି ବା ବଜାରର ଅଭାବ ସାଙ୍ଗକୁ କର୍ମକୁଶଳୀ ଲୋକଙ୍କର ବି ଅଭାବ ଅଛି । ଏଣେ ଅନ୍ୟାନ୍ୟ ଅଣକୃଷି କାର୍ଯ୍ୟ ଏଠି ନଥିବାରୁ ଲୋକେ ହଜାର ହଜାର ସଂଖ୍ୟାରେ "ଦାଦନ" ଶ୍ରମିକ ଭାବେ ପେଟ ପୋଷିବା ପାଇଁ ଚାଲି ଯାଉଛନ୍ତି । କିପରି ଅଳ୍ପ ସଂଖ୍ୟକ ଲୋକ ଶିଳ୍ପଜନିତ ନିଯୁକ୍ତି ପାଉଛନ୍ତି ତା'ର ଏକ ହିସାବ ତଳେ ଦିଆଗଲା । ୧୯୯୧ ମସିହା ସୁଦ୍ଧା ସମୁଦାୟ ୬୫,୦୦୦ ଲୋକେ, କ୍ଷୁଦ୍ର, ମଧ୍ୟମ ଏବଂ ବୃହତ୍ ଶିଳ୍ପରେ ନିଯୁକ୍ତି ପାଇଛନ୍ତି । କ୍ଷୁଦ୍ର ଶିଳ୍ପରେ ୬୦,୦୦୦ ଲୋକ ନିଯୁକ୍ତ ଥିବା ବେଳେ ବୃହତ୍ ଏବଂ ମଧ୍ୟମ ଶିଳ୍ପରେ ମାତ୍ର ୫,୦୦୦ ନିଯୁକ୍ତ ଅଛନ୍ତି । ଏଣୁ ଶିଳ୍ପଗତ ସମ୍ଭାବନା ଯଥେଷ୍ଟ ଥିବାବେଳେ କମ୍ ଶିଳ୍ପ ପ୍ରତିଷ୍ଠା ଏଠି ଚିନ୍ତାର ବିଷୟ ହୋଇ ପଡ଼ିଛି ।

## ଆୟ ନିଯୁକ୍ତି ଯୋଜନା :

ଯଦି ପ୍ରତିବର୍ଷ ୨ ଲକ୍ଷ ହିସାବରେ ବେକାର ବଢ଼ନ୍ତି ତେବେ ୧୯୯୧-୯୨ ସୁଦ୍ଧା ଅନେକ ବେକାର ହୋଇଯିବେ । ଏଣୁ ଆୟ ନିଯୁକ୍ତି ତଥା ଅନ୍ୟାନ୍ୟ ଗ୍ରାମ୍ୟ ଉନ୍ନୟନ ଯୋଜନା ମାଧ୍ୟମରେ କର୍ମନିଯୁକ୍ତି ବଢ଼ାଇବା ସହ ରାସ୍ତା ଘାଟ, ଜଳସେଚନ, ସ୍କୁଲ, ସାମାଜିକ ବନୀକରଣ ଇତ୍ୟାଦି ଦୀର୍ଘସ୍ଥାୟୀ ସମ୍ପଦ ସୃଷ୍ଟି କରିବା ବିଧେୟ । ଏ କ୍ଷେତ୍ରରେ **IRDP, ERRP, DPAP, ITDA, NREP, RLEGP** ତଥା ଜବାହର ରୋଜଗାର ଯୋଜନା ମାଧ୍ୟମରେ ଯଥାକ୍ରମେ ଆୟ ନିଯୁକ୍ତି, ମଜୁରି ଭିତ୍ତିକ ନିଯୁକ୍ତି ତଥା ଗ୍ରାମ୍ୟ ଏବଂ ସହରୀ ଗରିବଙ୍କ ନିଯୁକ୍ତି ସ୍ୱଳ୍ପ ଭିତ୍ତିରେ ବଢ଼ାଇବା ଦରକାର । ବିଶେଷ କରି ଗ୍ରାମାଞ୍ଚଳରେ ଜମିହୀନ ଲୋକେ ଅଧିକ ସଂଖ୍ୟାରେ ଥିବାରୁ ଗ୍ରାମାଞ୍ଚଳରେ କୃଷି ଏବଂ ଅଣକୃଷି କାର୍ଯ୍ୟରେ ନିଯୁକ୍ତି ସୁଯୋଗ ବଢ଼ାଇବା ଦରକାର । ପାରମ୍ପରିକ କୃଷି କାର୍ଯ୍ୟ ସାଙ୍ଗକୁ ବହୁ ଶସ୍ୟ ଚାଷ, ନଡ଼ିଆ ଚାଷ ତଥା ଅନ୍ୟାନ୍ୟ ଅର୍ଥକାରୀ ଫଳ ଏବଂ ପନିପରିବା ଚାଷ ମାଧ୍ୟମରେ ପରିବେଶକୁ ମଧ୍ୟ ସ୍ୱଚ୍ଛ ରଖିବା ବିଧେୟ ।

## ଅଣକୃଷି କାର୍ଯ୍ୟରେ ନିଯୁକ୍ତି ସୁଯୋଗ :

କୃଷି କାର୍ଯ୍ୟ ଆଉ ଅଧିକ ଶ୍ରମକୁ ନିୟୋଜନ କରି ପାରୁ ନଥିବାରୁ, ଅଣକୃଷି କାର୍ଯ୍ୟରେ ନିଯୁକ୍ତି ସୁଯୋଗ ବଢ଼ାଇବା ଦରକାର । ଗ୍ରାମାଞ୍ଚଳ ବା ସହରତଳି ଅଞ୍ଚଳର ପ୍ରୟୋଜନୀୟ ପଦାର୍ଥ ଯଥା- ସାବୁନ, ବିସ୍କୁଟ, ପାଉଁରୁଟି, ବାସନକୁସନ, ହସ୍ତତନ୍ତବସ୍ତ୍ର, ଖାଇବାତେଲ ଏବଂ ଦିଆସିଲି ଇତ୍ୟାଦି ଶିଳ୍ପ ପ୍ରତିଷ୍ଠା କରି କର୍ମ ନିଯୁକ୍ତି ବଢ଼ାଇବା ଦରକାର । ଅନ୍ୟ ପକ୍ଷରେ କତାଶିଳ୍ପ, ହସ୍ତଶିଳ୍ପ, ଖଦୀଶିଳ୍ପ, ରେଶମଶିଳ୍ପ ତଥା ଅନ୍ୟାନ୍ୟ ଗ୍ରାମ୍ୟ ଶିଳ୍ପ ମାଧ୍ୟମରେ ବେକାରୀ ଦୂର ହୋଇ ପାରିବ । ଏସବୁ ମାଧ୍ୟମରେ ନିଯୁକ୍ତି ବଢ଼ିବା ସଙ୍ଗେ ସଙ୍ଗେ ସମ୍ବଳ ସୃଷ୍ଟି ହୋଇଥାଏ ।

ନିଯୁକ୍ତିର ସୁଯୋଗ ସୃଷ୍ଟି ନିମନ୍ତେ ଆନୁଷ୍ଠାନିକ ଶିକ୍ଷାର ସଂକୋଚନ କରି ଅଣ-ଆନୁଷ୍ଠାନିକ ଶିକ୍ଷା ଯଥା ବୃତ୍ତିଗତ

ଧର୍ମମୂଳକ ତଥା ବୈଷୟିକ ଶିକ୍ଷାର ବହୁଳ ପ୍ରସାର ହେବା ଦରକାର । କହିବା ବାହୁଲ୍ୟ ଯେ ଆମ ପ୍ରଚଳିତ ଜନଶିକ୍ଷା ତଥା ପରିବାର ନିୟୋଜନ ଇତ୍ୟାଦି କର୍ମାଭିମୁଖୀ ହେବା ବିଧେୟ । ନହେଲେ ଏହା ବ୍ୟୟ ବହୁଳ ହୋଇ ଯିବ ।

ସର୍ବୋପରି ପ୍ରତ୍ୟେକ ପଞ୍ଚାୟତରେ ଗ୍ରାମ୍ୟ ନିଯୁକ୍ତି ଦଫ୍ତର ଗଠିତ ହେଲେ ଜିଲ୍ଲା ବା ଆଞ୍ଚଳିକ ଯୋଜନା ବୋର୍ଡ ଇତ୍ୟାଦିକୁ ସଠିକ ତଥ୍ୟ ଯୋଗାଇବାରେ ସହାୟକ ହୁଅନ୍ତା । ଅନ୍ୟ ପକ୍ଷରେ ରାଜ୍ୟର ଯୋଜନାବୋର୍ଡ ଇତ୍ୟାଦି ଅମଲାତନ୍ତ୍ରୀ ଶାସନରୁ ମୁକ୍ତ ହୋଇ ଅର୍ଥନୈତିକ ଦିଗ୍‌ଦର୍ଶନ ଦେବାରେ ସାହାଯ୍ୟ କଲେ ନିଯୁକ୍ତିର ସୁଯୋଗ ମଧ୍ୟ ବଢ଼ନ୍ତା । କାରଣ ବେକାରୀ ବଢ଼ିବା ସୁଶାସନର ପରିପନ୍ଥୀ । ଏଣୁ ଆବଶ୍ୟକ ହେଲେ ଶାସନ ତଥା ନିୟନ୍ତ୍ରଣ ପଦ୍ଧତିକୁ ବିକେନ୍ଦ୍ରୀକରଣ କରି ଅର୍ଥନୈତିକ ସମୃଦ୍ଧି ହାସଲର ଲକ୍ଷ୍ୟ ନିଶ୍ଚିତ ହେବା ଆବଶ୍ୟକ । ଦାରିଦ୍ର୍ୟ ଏବଂ ବେକାରୀର ମୂଳୋତ୍ପାଟନ ମାଧ୍ୟମରେ ଜାତି ସମୃଦ୍ଧି ପଥରେ ଅଗ୍ରସର ହୋଇ ପାରିବ । ଏଥିପାଇଁ ଜନ ସହଯୋଗ ଏକାନ୍ତ ଅପରିହାର୍ଯ୍ୟ ।

ପ୍ରାଧ୍ୟାପକ, ଅର୍ଥନୀତି,
ରାଜଧାନୀ ମହାବିଦ୍ୟାଳୟ ।




କେନ୍ଦ୍ରାପଡ଼ା ଦିଲ୍ଲୀଦାରସ୍ଥିତ ମଦ୍ରାସାଠାରେ ଉର୍ଦ୍ଦୁ ଶିକ୍ଷା କେନ୍ଦ୍ରର ଉଦ୍‌ଘାଟନୀ ଉତ୍ସବରେ ମନ୍ତ୍ରୀ, ଶ୍ରୀ ଶରତ କୁମାର କର ଓ ଶ୍ରୀ ବେଦପ୍ରକାଶ ଅଗ୍ରୱାଲା ।

# ହମ୍ବୀର କାହିଁକି ବଞ୍ଚିତ ହୋଇଥିଲେ ?

ଅଶୋକ ପ୍ରିୟଦର୍ଶୀ

ଗଜପତି କପିଳେନ୍ଦ୍ରଦେବ ଓ ତାଙ୍କପୁତ୍ର ପୁରୁଷୋତ୍ତମଦେବ ଓଡ଼ିଶାବାସୀଙ୍କ ନିକଟରେ ସୁପରିଚିତ । କାରଣ ଏ ଦୁହେଁ କେବଳ ଇତିହାସରେ ଦୁର୍ଜ୍ଜନନାୟକ ଭାବରେ ପୃଷ୍ଠାମଣ୍ଡନ କାରୀ ନୁହେଁ, ଏକାଧିକ କିମ୍ବଦନ୍ତୀ ଓ ମନୋରମ କାହାଣୀର ଲୋକ ପ୍ରିୟ ନାୟକ ଭାବରେ ମଧ୍ୟ ଲୋକ ଚିତ୍ତରେ ପ୍ରତିଷ୍ଠିତ । ଜନଶ୍ରୁତି କହେ ପୁରୁଷୋତ୍ତମଦେବ ତାଙ୍କ ପିତାଙ୍କର କନିଷ୍ଠ ପୁତ୍ର ଥିଲେ । ଏପରିକି ତାଙ୍କର ମାତା କପିଳେନ୍ଦ୍ରଦେବଙ୍କର ବିବାହିତା ରାଣୀ ନ ଥିଲେ ବୋଲି ମଧ୍ୟ ଏହି ଜନଶ୍ରୁତିରୁ ଜଣାପଡ଼େ ଅବଶ୍ୟ ଏହିତଥ୍ୟକୁ ସମର୍ଥନ କଲାଭଳି କୌଣସି ଐତିହାସିକ ପ୍ରମାଣ ଏଯାଏଁ ମିଳିନାହିଁ । ତେବେ ପୁରୁଷୋତ୍ତମଦେବ ଯେ ଜ୍ୟେଷ୍ଠ ପୁତ୍ର ନ ଥିଲେ, ଏହାର କିଛି ପ୍ରମାଣ ମିଳୁଛି । ସ୍ୱୟଂ ଗଜପତି ପୁରୁଷୋତ୍ତମଦେବଙ୍କ ଦ୍ୱାରା ଲିଖିତ "ଭୁବନେଶ୍ୱରୀ ସ୍ତୋତ୍ର"ରେ ଗୋଟିଏ ପଦ ଲେଖାଅଛି:–

"କପିଳେନ୍ଦ୍ର ନନ୍ଦନୋଽହମ୍ ତଦନୁଗ୍ରହମାତ୍ର ଲବ୍ଧ ସାମ୍ରାଜ୍ୟଃ ।" ଅର୍ଥାତ୍ – ମୁଁ କପିଳେନ୍ଦ୍ରଙ୍କ ପୁତ୍ର ଏବଂ ତାଙ୍କର ଅନୁଗ୍ରହରୁହିଁ ସାମ୍ରାଜ୍ୟ ଲାଭକରିଛି । ଏଥିରୁ ବୁଝି ହେଉଛି ଯେ ପୁରୁଷୋତ୍ତମଦେବ ନ୍ୟାୟତଃ ଗଜପତିଆସନର ଉତ୍ତରାଧିକାରୀ ନ ଥିଲେ । କପିଳେନ୍ଦ୍ରଦେବଙ୍କ ଅନୁଗ୍ରହରୁ ସେ ରାଜା ହୋଇଥିଲେ । 'ମାଦଳାପାଞ୍ଜିରୁ ଜଣାପଡ଼େ କପିଳେନ୍ଦ୍ରଦେବଙ୍କର 'ହମ୍ବୀର' ନାମରେ ଜଣେ ବଡ଼ପୁଅ ଥିଲେ ଓ କପିଳେନ୍ଦ୍ର ପୁରୁଷୋତ୍ତମଙ୍କୁ ରାଜାକରାଇବା ପରେ ସେ ବିଦ୍ରୋହ କରିଥିଲେ । (୧) ଏହି ଦୁଇ ପ୍ରମାଣରୁ ଜାଣିହେଉଛି ପୁରୁଷୋତ୍ତମ ଜ୍ୟେଷ୍ଠପୁତ୍ର ନ ଥିଲେ ।

ବର୍ତ୍ତମାନ ପ୍ରଶ୍ନ ଉଠୁଛି – କପିଳେନ୍ଦ୍ରଦେବ କାହିଁକି ପୁରୁଷୋତ୍ତମଦେବଙ୍କୁ ତାଙ୍କର ଉତ୍ତରାଧିକାରୀ ବାଛିଲେ ? ଜ୍ୟେଷ୍ଠପୁତ୍ର ହମ୍ବୀର କାହିଁକି ତାଙ୍କର ନ୍ୟାୟୋଚିତ ଅଧିକାରରୁ ବଞ୍ଚିତ ହେଲେ ?

ଏ ସମ୍ପର୍କରେ ଐତିହାସିକ ତଥା ଗବେଷକଗଣ ଅନେକ କିଛି ସମ୍ଭାବନାର ଚିତ୍ର ଆଙ୍କିଛନ୍ତି । ମାଦଳାପାଞ୍ଜିରେ ଠାଏ ଅଛି – "ଶ୍ରୀ ଆଜ୍ଞା ହୋଇଲା, ପୁରୁଷୋତ୍ତମ ରାଏ ରାଜାହେବ । ତାହା ଶୁଣି ରାଜା ବଡ଼ ବିସ୍ମୟ ପାଇ ଡବଦ୍ ହୋଇଲେ । ଏ ଅଙ୍କେ ବଡ଼ଦେଉଳେ ଆକାଶବାଣୀ ହେଲା" । (୨) ଏହି ପ୍ରସଙ୍ଗକୁ ନେଇ କେତେକ ଆଲୋଚକ ବ୍ୟଙ୍ଗ କରିଛନ୍ତି । ସେମାନଙ୍କ ମତରେ ଉପପତ୍ନୀ (ଫୁଲ ବିବାହୀ ବା ଭୋଗିନୀ) ପ୍ରତି ସାତିଶୟ ଶ୍ରଦ୍ଧା ହେତୁ କପିଳେନ୍ଦ୍ରଦେବ ଏଭଳି ଗର୍ହିତ ପଦକ୍ଷେପ ନେଇଛନ୍ତି ଏବଂ ଏହା ପଛରେ ଜଗନ୍ନାଥଙ୍କ ନିର୍ଦ୍ଦେଶ ଅଛି ବୋଲି ମିଥ୍ୟାପ୍ରଚ୍ଚାର ଚଳାଇ ତତ୍କାଳୀନ ପ୍ରଜା–ପାରିଷଦଙ୍କ ମୁହଁ ବନ୍ଦ କରିବାର କୌଶଳ ପ୍ରୟୋଗ କରିଛନ୍ତି । ଐତିହାସିକ ଡ଼କ୍ଟର ନବୀନ ସାହୁ ଏ ସମ୍ପର୍କରେ ଲେଖିଛନ୍ତି – "It is rather strange that Kapilendra set aside the claims of Hamvira and other princes for throne and chosen his successor Purusottama who was probably the youngest prince and son of a Brahmin lady. It appears that the mother of Purusottamadeva was the most favourite queen of Kapilendradeva and it was because of her influence that her son was chosen as the successor to the throne. xxx Madalapanji relates a story that Lord Jagannath appeared before Kapilendra in a dream and ordered him to nominate Purusottama as his successor The story might have been created to give religious justification to the rather unexpected dicision of Kapilendradeva stating that it was a will of Jagannath".(3)

ଏହିଠାରେ ଡଃ ସାହୁ 'probably' ଓ 'it appears' ଲଗାଇ ଯାହା କହିବାକୁ ଚାହିଁଛନ୍ତି, କହିବା ନିଷ୍ପ୍ରୟୋଜନ ଯେ ତାହା ଇତିହାସ ନୁହେଁ । ପୁରୁଷୋତ୍ତମଦେବ ଯେ କପିଳେନ୍ଦ୍ରଙ୍କର ସର୍ବ

କନିଷ୍ଠ ସନ୍ତାନ, ଏହାର କୌଣସି ପ୍ରମାଣ ଏ ଯାଏ ମିଳିନାହିଁ। ପୁରୁଷୋତ୍ତମଦେବଙ୍କ ମାତା ଜଣେ 'ବ୍ରାହ୍ମଣୀ' ଥିବାର ଉକ୍ତ ସମ୍ଭାବନା ପଛରେ ମଧ୍ୟ କୌଣସି ପ୍ରମାଣ ନାହିଁ। ତେବେ ଯେ ଯାହାହେଉ, କିମ୍ବଦନ୍ତୀର ସୂତ୍ରଧର ଡଃ ସାହୁ ଯେ ମାଦଳାପାଞ୍ଜିର ସ୍ୱପ୍ନ ବୃତ୍ତାନ୍ତକୁ ବ୍ୟଙ୍ଗ କରିଛନ୍ତି, ଏହା ନିଃସନ୍ଦେହ।

ଐତିହାସିକ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ମଧ୍ୟ ମାଦଳାପାଞ୍ଜିର ସ୍ୱପ୍ନ ବୃତ୍ତାନ୍ତକୁ ଏକ ଚତୁର କୌଶଳ ବୋଲି ଉଲ୍ଲେଖ କରିଛନ୍ତି। ତାଙ୍କ ମତରେ – "Lord Jagannath's will, expressed in dreams, was a clever means of propaganda." (4)

ଐତିହାସିକ ପ୍ରଭାତ ମୁଖାର୍ଜୀ ମଧ୍ୟ ଅନୁରୂପ ମତ ପୋଷଣ କରି ଲେଖିଛନ୍ତି – "It is almost certain that the popular belief in dispension of Jagannath in Purusottama's favour enabled Purusottama to gain the throne. But the popular belief in a miracle sealed Hamvira's fate." (5)

ମୋଟାମୋଟି ଭାବରେ ମାଦଳାପାଞ୍ଜିର ଏହି ସ୍ୱପ୍ନ ବୃତ୍ତାନ୍ତକୁ ପ୍ରାୟ ସବୁ ଐତିହାସିକ ଏକ ଚତୁରତାପୂର୍ଣ୍ଣ କୌଶଳ ବୋଲି ଅଭିହିତ କରିଛନ୍ତି। କେତେକ ଆଲୋଚକ ଶ୍ରୀମନ୍ଦିରର ଅର୍ଥଲୋଭୀ ସେବକ ଗୋଷ୍ଠୀଙ୍କୁ ମଧ୍ୟ ଏ ଚକ୍ରାନ୍ତରେ ଅଂଶୀଦାର ବୋଲି ସ୍ପଷ୍ଟ ଅରୋପ କରିଚନ୍ତି। ଦୃଷ୍ଟାନ୍ତ ସ୍ୱରୂପ ଅଲୋଚକ ଡଃ ଗଗନେନ୍ଦ୍ର ନାଥ ଦାଶ ତାଙ୍କ ଲିଖିତ 'ଜନଶ୍ରୁତି–କାଞ୍ଚିକାବେରୀ' ପୁସ୍ତକରେ କହିଛନ୍ତି – "ଏଥିରୁ ଅନ୍ତତଃ ଏତିକି ଅନୁମାନ କରାଯାଇପାରେ ଯେ ପୁରୀ ଜଗନ୍ନାଥ ମନ୍ଦିରର ସେବକମାନେ ପୁରୁଷୋତ୍ତମଦେବଙ୍କ ସିଂହାସନ ଆରୋହଣକୁ ସକ୍ରିୟ ସମର୍ଥନ ଜଣାଇଥିଲେ ଓ ଏହାହିଁ ଜଗନ୍ନାଥଙ୍କ ଇଚ୍ଛା ଓ ନିର୍ଦ୍ଦେଶ ବୋଲି ପ୍ରବଳ ପ୍ରଚାର ଚଳାଇଥିଲେ।" (୬)

ଡଃ ଦାଶଙ୍କର ଏହି ମହାର୍ଘ 'ଅନୁମାନ' ପଛରେ କିଛି ତଥାଗତ ପ୍ରମାଣ ଥାଉ ବା ନଥାଉ, ମାଦଳାପାଞ୍ଜିର ସ୍ୱପ୍ନବୃତ୍ତାନ୍ତ ଯେ ତାଙ୍କ ଦ୍ୱାରା ମଧ୍ୟ ଅଗ୍ରାହ୍ୟ ହୋଇଛି, ଏହା ନିର୍ଦ୍ଧାରିତ। ଏ କଥା ସତ୍ୟ ଯେ ମାଦଳାପାଞ୍ଜିରେ ଏହିଭଳି ଅବିଶ୍ୱାସ ତଥା ଅତିରଞ୍ଜିତ ବର୍ଣ୍ଣନାର ବହୁଳତା ହେତୁ ପଣ୍ଡିତମାନେ ଏହାକୁ ଶୁଦ୍ଧ ଇତିହାସର ମର୍ଯ୍ୟାଦା ଦେଉନାହାନ୍ତି। କିନ୍ତୁ ଏହାବି ତ ଠିକ୍ ନୁହେଁ ଯେ ଉକ୍ତ ପଣ୍ଡିତମାନଙ୍କର ଯାବତୀୟ କଳ୍ପନା, ଅନୁମାନ ଓ ସମ୍ଭାବନାକୁ ଆମେ ଇତିହାସର ମାନ୍ୟତା ଦେବୁ। ତେଣୁ କୌଣସି ପ୍ରକାର ଆବେଗ ବା ପ୍ରାକ୍ ବିଶ୍ୱାସର ବଶବର୍ତ୍ତୀ ନ ହୋଇ କପିଳେନ୍ଦ୍ରଦେବଙ୍କ ତଥାକଥିତ ଅସଂଗତ କାର୍ଯ୍ୟଟିର ନିରପେକ୍ଷ ବିଚାର କରାଯାଉ।

ସାଧାରଣ ଭାବରେ ଏହା ବିଶ୍ୱାସ କରିହୁଏ ନାହିଁ ଯେ କପିଳେନ୍ଦ୍ରଙ୍କ ଭଳି ଜଣେ ଦକ୍ଷ, ଚତୁର ଓ ଦୂରଦୃଷ୍ଟିସମ୍ପନ୍ନ ସମ୍ରାଟ ଜଣେ ଉପପତ୍ନୀର ବଶୀଭୂତ ହୋଇ ଏଭଳି ପଦକ୍ଷେପ

ନେଇଥିବେ। ମେଘବାହାନ ଖାରବେଳଙ୍କୁ ଛାଡ଼ିଦେଲେ ଆଉ କୌଣସି ଓଡ଼ିଆ ରାଜା ଏଡ଼େବଡ଼ ସାମ୍ରାଜ୍ୟ ନିର୍ମାଣ କରିଥିବା ବିଷୟ ଇତିହାସକୁ ଜଣାନାହିଁ। ସ୍ତ୍ରୀ ବୁଦ୍ଧିରେ ପରିଚାଳିତ କୌଣସି ଶାସକ ଯେ ତାହା କରିପାରେ ନାହିଁ, ଇତିହାସହିଁ ତା'ର ପ୍ରମାଣ। ଜୀବନର ଅର୍ଦ୍ଧାଧିକ ସମୟ ସେନାଛାଉଣୀରେ କଟାଇଥିବା କପିଳେନ୍ଦ୍ରଙ୍କ ପକ୍ଷରେ ଅନ୍ତତଃ ଏହା ଆଶା କରାଯାଇ ପରେନା। ଅତଏବ, ଏସବୁ ଭିତ୍ତିହୀନ ମତାମତରେ ଭାସି ନ ଯାଇ ଇତିହାସର ନିର୍ଭରଯୋଗ୍ୟ ଉପାଦାନ କେତୋଟି ଅଭିଲେଖରୁ ସତ୍ୟାନୁସନ୍ଧାନ କରାଯାଉ।

ଜଗନ୍ନାଥମନ୍ଦିରର କାନ୍ଥ ଦେହରେ କପିଳେନ୍ଦ୍ରଦେବଙ୍କର ପାଞ୍ଚଗୋଟି ଓଡ଼ିଆ ଅଭିଲେଖ ମିଳୁଛି। ସମସ୍ୟାର ସମାଧାନ ପାଇଁ ଅଭିଲେଖଗୁଡ଼ିକର ସାହାଯ୍ୟ ନିଆଯାଇପାରେ।

ପ୍ରଥମ ଅଭିଲେଖଟିର ଲିଖନ ସମୟ ୧୪୩୭ ଖ୍ରୀଷ୍ଟାବ୍ଦ ଡ଼ିସେମ୍ବର ୯ ତାରିଖ। ଏହା କପିଳେନ୍ଦ୍ରଙ୍କ ରାଜତ୍ୱର ୪ ଅଙ୍କରେ ଲିଖିତ। ଲକ୍ଷ୍ୟ କରିବାକଥା–ଏଥିରେ କପିଳେନ୍ଦ୍ର ନାମ ସହିତ କୌଣସି ଉପାଧି ସଂଯୋଜିତ ହୋଇ ନାହିଁ। ଏହା ଏକ ନିର୍ଦ୍ଦେଶନାମା। ଏଥିରେ ରାଜ୍ୟବାସୀଙ୍କ ଉପରୁ ଲୁଣକର (ଲୋଣ–କଉଡ଼ି) ଛାଡ଼ କରାଗଲାବୋଲି ଲେଖାଅଛି।

ଦ୍ୱିତୀୟ ଅଭିଲେଖଟିର ଲିଖନ କାଳ ୧୪୫୦ ଖ୍ରୀଷ୍ଟାବ୍ଦ ଏପ୍ରିଲ ୧୭ ତାରିଖ। ଏହା କପିଳେନ୍ଦ୍ରଙ୍କ ରାଜତ୍ୱର ୨୨ ଅଙ୍କରେ ଲିଖିତ। ଏଥିରେ ପ୍ରଥମଥର ପାଇଁ "ଗୌଡ଼େଶ୍ୱର" ଉପାଧି ସଂଯୋଜିତ ହୋଇଛି। ଗଜପତି ଦିଗ୍‌ବିଜୟରେ ମଲ୍ଲିକା ପରିସାଙ୍କୁ ପରାସ୍ତକରି ଫେରିବା ପରେ ଜଗନ୍ନାଥଙ୍କୁ ଦର୍ଶନ କରିବା ଅବକାଶରେ ଠାକୁରଙ୍କୁ 'ପୁଣ୍ଡରିକ ଗୋପଶାଢ଼ୀ' ଭେଟି ଦେଇଥିବା କଥା ଏଥିରେ ଲେଖା ଅଛି।

ତୃତୀୟ ଲିପିଟିର ଲିଖନ କାଳ ୧୪୫୯ ଖ୍ରୀଃ ଡ଼ିସେମ୍ବର ୯ ତାରିଖ। ଏହା କପିଳେନ୍ଦ୍ରଦେବଙ୍କ ରାଜତ୍ୱର ୩୧ ଅଙ୍କରେ ଲିଖିତ। ଏଥିରେ ପ୍ରତାପକପିଳେଶ୍ୱର ନାମ ସହିତ 'ଗୌଡ଼େଶ୍ୱର' 'ନବକୋଟି', 'କର୍ଣ୍ଣାଟ', 'କଲବର୍ଗେଶ୍ୱର' ଇତ୍ୟାଦି ଉପାଧି ସଂଯୋଜିତ ହୋଇଛି। ଆମର ଆଲୋଚ୍ୟ ପ୍ରସଙ୍ଗ ପାଇଁ ଏହି ଅଭିଲେଖଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ଏହାର ବକ୍ତବ୍ୟ ଅଂଶଟି ସାମ୍ପ୍ରତିକ ଲିଖନ ରୀତିରେ ପ୍ରକାଶ କରାଗଲା।

"ଶ୍ରୀ ପୁରୁଷୋତ୍ତମ କଟକର ଦକ୍ଷିଣ ଘରେ ମାଜଣା ମଣ୍ଡପରେ ମହାରାଜା ବିଜେ କରିଥିବା ସମୟରେ ଏହା ଲେଖାଇବାକୁ ଶ୍ରୀ ଛାମୁରୁ ନିର୍ଦ୍ଦେଶ ହେଲା–ହେ ଜଗନ୍ନାଥ ! ମୋର ବାହାର ଓ ଭିତର ସମସ୍ତ କଥା ତୁ ଜାଣୁ । ମୋର ନିଜର ବୋଲି ଯେତେ ଯାହା ଧନ, ରତ୍ନ ବା ଅନ୍ୟାନ୍ୟ ପଦାର୍ଥ ଅଛି, ସେ ସବୁତ ତୋର । ସାଂଠାରୁ ଆହୁରି ମୂଲ୍ୟବାନ କୌଣସି ସମ୍ପଦ ଯଦି ମୋପାଖରେ ଥାଏ, ତେବେ ତୁ କହ – ତାହା ଏଇକ୍ଷଣି ମୁଁ ବ୍ରାହ୍ମଣ ହାତରେ ଟେକି ଦେବି । ଏ ଭୂମିଖଣ୍ଡ ମୋର ନୁହେଁ, ତୋର । ତୁ ଯାହାକୁ ଅନୁଗ୍ରହ କରିବୁ, ମୋର ସେ xxxxx (ଲିପି ଅସ୍ପଷ୍ଟ) ।"

ଏଲେଖା କୌଣସି ଫିରିସ୍ତାକି ଆଜିନୁଲ୍ଲାଙ୍କ ପୋକଖିଆ ପୋଥିରୁ ଉଦ୍ଧୃତ ନୁହେଁ କିମ୍ବା କୌଣସି ପଞ୍ଜିକାରର ମନଗଢ଼ା ଗାଲୁଗପ ନୁହେଁ । ଗଜପତି କପିଳେନ୍ଦ୍ରଙ୍କର ଆନ୍ତରିକ ଅଭିବ୍ୟକ୍ତି ଏଥିରେ ସ୍ପଷ୍ଟ । ଏହି ଭିତରୁ ଯଦି କେହି ଚକ୍ରାନ୍ତ ବା କୌଶଳର ଗନ୍ଧ ବାରୁଛନ୍ତି, ତେବେ ତାହାକୁ ଖଣ୍ଡନ କରିବାର ଉପାୟ ନାହିଁ । କାରଣ କୌଣସି ଲୋକର ଶ୍ରଦ୍ଧା ଓ ବିଶ୍ୱାସକୁ ପ୍ରତ୍ନତତ୍ତ୍ୱରେ ମାପିବା ସମ୍ଭବ ନୁହେଁ । ଜଗନ୍ନାଥ ଓ ତାଙ୍କ ଆକାଶ ଛୁଆ ବଡ଼ ଦେଉଳ ବିଶ୍ୱାସ ଓ ଶ୍ରଦ୍ଧା ଉପରେ ଛିଡ଼ା ହୋଇଛି । ପାଞ୍ଚଶହ ବର୍ଷ ତଳର କୌଣସି ଧର୍ମସଚେତନ ନରପତି ନିଜର ଇନ୍ଦ୍ରିୟ ପରିତୃପ୍ତତାର ପ୍ରମାଣ ସ୍ୱରୂପ ଗୋଟିଏ ପ୍ରତାରଣାପୂର୍ଣ୍ଣ ଅଭିଲିପି ଖୋଦ୍ ଜଗନ୍ନାଥଙ୍କ ଦେଉଳ କାନ୍ଥରେ ଲେଖାଇଥିବେ ଓ ପୁଣି ସେଥିରେ କହିଥିବେ – "ମୋର ବାହାର–ଅଭ୍ୟନ୍ତର ସମସ୍ତ ତୁ ଜାଣୁ"– ଏହା ଗ୍ରହଣ କରିହୁଏ ନାହିଁ । କିନ୍ତୁ ଦୁଃଖର ବିଷୟ, ମାଦଳାପାଞ୍ଜିର ସ୍ୱପ୍ନ ବୃତ୍ତାନ୍ତ ଉପରେ ତୁମ୍ବୀ–ତୋଫାନ ସୃଷ୍ଟି କରିଥିବା ଐତିହାସିକମାନେ ଏ ଅଭିଲେଖଟିକୁ ଆଦୌ ଗୁରୁତ୍ୱ ଦେଉନାହାନ୍ତି । ତାର କାରଣ, ବୋଧହୁଏ ଏଥିରେ 'ଲୁଣ–କଉଡ଼ି' ଭଳି କୌଣସି ଦରକାରୀ ଜିନିଷର ଉଲ୍ଲେଖ ନାହିଁ ଓ ତେଣୁ ଇତିହାସ ପାଇଁ ଅବାନ୍ତର । ଏକମାତ୍ର ଐତିହାସିକ ରାଖାଲଦାସ ବାନାର୍ଜୀ ଅଭିଲେଖଟି ସମ୍ପର୍କରେ ସାମାନ୍ୟ ସୂଚନା ଦେଇଥିଲେ ମଧ୍ୟ ତାହା ତ୍ରୁଟିପୂର୍ଣ୍ଣ । ସେ ଲେଖିଛନ୍ତି – "Another inscription was incised in the 31st Anka-12th July 1459 end records that the King held court in the audience all of the southern block of rooms and registered a vow to bestow all precious things possessed by the King on Brahmins." (8)

କହିବା ବାହୁଲ୍ୟ ଯେ, ଅଭିଲେଖଟିରେ ବ୍ରାହ୍ମଣଙ୍କୁ ଦାନ ଟେକି ଦେବା ବିଷୟ କୁହାଯାଇଥିଲେ ମଧ୍ୟ ଏହାର ଅର୍ଥ ଆଉ କିଛି । ଅଭିଲେଖଟିର ବିଶେଷତ୍ୱ ହେଉଛି – ଏହା କୌଣସି ଅନୁଦାନ ବା ଅନୁଶାସନ ନୁହେଁ । ବରଂ ଏକ ପ୍ରାର୍ଥନାପରି ମନେ ହୁଏ । ଗୋଟିଏ ସନ୍ତାପିତ ଆତ୍ମନିବେଦନର ସ୍ୱର ଏଥିରୁ ବାରିହୁଏ । "ଏ ଭୂମିଖଣ୍ଡ ତୁ ଯାହାକୁ ଅନୁଗ୍ରହ କରିବୁ" ଉକ୍ତିରୁ ବୁଝି ହେଉଛି ଓଡ଼ିଶା ସିଂହାସନ ଉତ୍ତରାଧିକାରୀ ନେଇ ସେତେବେଳକୁ ସେ ଚିନ୍ତିତ ଥିଲେ । ଏହା ୧୪୫୯ ଖ୍ରୀ:ର ଲେଖା । କପିଳେନ୍ଦ୍ରଙ୍କ ମୃତ୍ୟୁର ନିର୍ଦ୍ଦିଷ୍ଟ ଦିନ, ମାସ ଓ ବର୍ଷ ବିଷୟରେ କୌଣସି ଦୁଇଜଣ ଐତିହାସିକ ଏକମତ ହୋଇ ପାରିନଥିବା ଦୃଷ୍ଟିରୁ (କପିଳେନ୍ଦ୍ରଙ୍କ ମୃତ୍ୟୁ ତାରିଖ ସମ୍ପର୍କରେ ଅନ୍ୟୁନ ଦଶ ପ୍ରକାର ମତ ଦେଖିବାକୁ ମିଳେ), ଆନୁମାନିକ ଭାବରେ କହିହେବ ଯେ ଏହା ତାଙ୍କ ମୃତ୍ୟୁର ଦୁଇ–ତିନି ବର୍ଷ ପୂର୍ବର ଲେଖା । ସେତେବେଳକୁ ଦକ୍ଷିଣାଞ୍ଚଳରେ ହମ୍ବୀର ଓ ତାଙ୍କ ପୁଅ 'ଦକ୍ଷିଣ କପିଳେଶ୍ୱରକୁମାର' ବେଶ୍ ପ୍ରଭାବ ବିସ୍ତାର କରି ରାଜତ୍ୱ କଲେଣି । (୯) କୌଣସି କାରଣରୁ କପିଳେନ୍ଦ୍ରଙ୍କ ମନରେ ହମ୍ବୀରଙ୍କୁ ରାଜ୍ୟ ନ ଦେବାର ବିଚାର ନିଶ୍ଚୟ ସେତିକିବେଳକୁ ଆସିଛି । କିନ୍ତୁ ଏ ବିଚାର ଯଦି ନ୍ୟାୟ ସଙ୍ଗତ ଓ ଯୁକ୍ତି ଯୁକ୍ତ ହୋଇ ନଥାନ୍ତା, ତେବେ ତାହାକୁ ସେ ଶ୍ରୀମନ୍ଦିର କାନ୍ଥରେ ଲେଖାଇ ପାରିନଥାନ୍ତେ । ଏ ଲେଖାଟିରୁ ତାଙ୍କର ମାନସିକ ଦ୍ୱନ୍ଦ୍ୱର ଚିତ୍ର ପ୍ରସ୍ଫୁଟିତ ହେଉଛି । ସେ କୌଣସି ସିଦ୍ଧାନ୍ତରେ ପହଞ୍ଚି ନପାରି "ତୁଯାହାକୁ ଅନୁଗ୍ରହକରିବୁ" ବୋଲି ଜଗନ୍ନାଥଙ୍କ ଉପରେ ଛାଡ଼ି ଦେଇଛନ୍ତି । ଏହା କୌଣସି ଗୋପନୀୟ ପାଞ୍ଜି ନୁହେଁ । ମନ୍ଦିର କାନ୍ଥରେ ସର୍ବସାଧାରଣଙ୍କ ଗୋଚରରେ ଏହା ଲେଖା ଯାଇଛି । ମାଦଳା ପାଞ୍ଜିର ତତ୍‌କାଳୀନ ପଞ୍ଜିକାର ଏହି ଲିପିର ଅର୍ଥ ଅର୍ଥାନ୍ତର ଯାହା ବୁଝିଲେ, ତାସହିତ ନିଜର କଳ୍ପନା ଓ ଅତିରଞ୍ଜନ ମିଶାଇ ଲେଖିଲେ–"ଏ ପୃଥ୍ୱୀ କାହାକୁ ଆଜ୍ଞା ହେବ, ମୁଁ ତାହା ଜାଣିବି । ସେହିଦିନ ରାତ୍ର ଆଜ୍ଞା ହୋଇଲା....... ।" କିନ୍ତୁ ମାଦଳାପାଞ୍ଜିର ଏହି ଲେଖା ପାଇଁ ଗଜପତି କପିଳେନ୍ଦ୍ରଦେବ କାହିଁକି ଦାୟୀ ହେବେ ? ଯଦି ଶାସକମାନଙ୍କ ନିର୍ଦ୍ଦେଶରେ ମାଦଳାପାଞ୍ଜି ଲେଖା ହେଉଥାନ୍ତା ତେବେ ମାଦଳାପାଞ୍ଜିର ପ୍ରତିପୃଷ୍ଠାରେ ରାଜାମାନଙ୍କୁ ଏପରି ହୀନ ଓ ହାସ୍ୟାସ୍ପଦକରି ବର୍ଣ୍ଣନା କରାଯାଇନଥାନ୍ତା (ମାଦଳାପାଞ୍ଜିରେ ଚୋଡ଼ଗଙ୍ଗଦେବଙ୍କୁ 'ରାଣ୍ଡିପୁଅ', କପିଳେନ୍ଦ୍ରଙ୍କୁ 'ଖପରାଚଟା' ଓ ସିଦ୍ଧେଶ୍ୱର' ଇତ୍ୟାଦି ଭାବରେ ବର୍ଣ୍ଣନା କରାଯାଇଛି) ।

ବର୍ତ୍ତମାନ ପ୍ରଶ୍ନ ହେଉଛି – ହମ୍ବୀରଙ୍କୁ ସିଂହାସନ ନ ଦେବା ଭଳି ଏକ ନିଷ୍ପତ୍ତି ଓ ତାହାପୁଣି ଶ୍ରୀମନ୍ଦିର କାନ୍ଥରେ ଲେଖାଇବାଭଳି–ନୈତିକ ଦୃଢ଼ତା କପିଳେନ୍ଦ୍ରଦେବଙ୍କ ମନକୁ ଆସିଲା କିପରି ? ଏହାର ଏକମାତ୍ର ସମ୍ଭାବ୍ୟ କାରଣ ମନକୁ ଆସୁଛି – ହମ୍ବୀର ପିତାଙ୍କ ବିରୁଦ୍ଧରେ ବିଦ୍ରୋହ କଲେକି ? ଠିକ୍ ଏତିକିବେଳେ ଦକ୍ଷିଣାଞ୍ଚଳରେ ପ୍ରବଳ ବିଦ୍ରୋହ ହୋଇଥିବାର ସୂଚନା ମାଦଳାପାଞ୍ଜିରୁ ଆରମ୍ଭକରି ଇତିହାସମାନଙ୍କରେ ମଧ୍ୟ ମିଳୁଛି । ଐତିହାସିକ ରାଖାଲ ଦାସ ବାନାର୍ଜୀ ଏ ବିଷୟରେ ଲେଖିଛନ୍ତି– "After fighting long wars with Bahamanis of Bidar and Vodeyars of Vijaynagar, he was faced with powerful rebels in his own country." (10) ଡ଼ଃ ନବୀନ କୁମାର ସାହୁ ଲେଖିଛନ୍ତି, "Even his eldest son Hamvira who had fought a number of battels for him at last joined hands with the rebels." (11)

ଅବଶ୍ୟ କେତେକ ଐତିହାସିକ କାର୍ଯ୍ୟ–କାରଣ ସମ୍ପର୍କରେ ଭିନ୍ନମତ ପୋଷଣ କରି ଆସିଛନ୍ତି । ସେମାନଙ୍କ ମତରେ

କପିଳେନ୍ଦ୍ର ଦେବ ପୁରୁଷୋତ୍ତମଙ୍କୁ ରାଜ୍ୟ ଦେବାର ନିଷ୍ପତ୍ତି ନେବାରୁ ହମ୍ବୀର ବିଦ୍ରୋହୀ ହେଲେ। କିନ୍ତୁ ଐତିହାସିକ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ମନେ କରନ୍ତି–ହମ୍ବୀର ଓ ତାଙ୍କ ପୁଅ ବିଦ୍ରୋହ କରିବାରୁ କପିଳେନ୍ଦ୍ର ଏ ପ୍ରକାର ନିଷ୍ପତ୍ତି ନେଲେ। ସେ ଲେଖିଛନ୍ତି–"The revolt of Hamvira aided by his son, would have been the cause of his father's partiality towards Purusottama." (12)

ତେବେ ଯାହାହେଉ, ହମ୍ବୀର ଯେ ଏ ବିଦ୍ରୋହର ନେତୃତ୍ୱ ନେଇଥିଲେ। ଏ ବିଷୟରେ ସବୁ ଇତିହାସ କିନ୍ତୁ ଏକମତ। କପିଳେନ୍ଦ୍ର ତା'ପରେ ବାରଯାର ଦକ୍ଷିଣକୁ ଯୁଦ୍ଧ ଯାତ୍ରାରେ ଯାଇଛନ୍ତି ଏବଂ ଶେଷରେ କୃଷ୍ଣାତୀରରେ ଶେଷ ନିଶ୍ୱାସ ତ୍ୟାଗ କରିଛନ୍ତି। ଏହି ଅଭିଯାନରେ ବାହାରିଯିବାର ଅବ୍ୟବହିତ ପୂର୍ବରୁ କପିଳେନ୍ଦ୍ର ଆଉ ଗୋଟିଏ ଅଭିଲେଖ ସେହି ଶ୍ରୀମନ୍ଦିର କାନ୍ଥରେ ଲେଖାଇଛନ୍ତି। ଏହି ଲିପିଟି ପୂର୍ବଲିପିଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ତାହା ନିମ୍ନରେ ଅବିକଳ ଉଦ୍ଧାର କରାଗଲା।

ଚତୁର୍ଥଲିପି ॥ ଶ୍ରୀମନ୍ଦିର ବାମପଟ କାନ୍ଥ ॥ ୨ ଫୁଟ ୮ ଇଞ୍ଚ×୯ ଇଞ୍ଚ ॥ ୬ ଧାଡ଼ି ॥ ୩୫ ଅଙ୍କ, ମେଷ, କୃଷ୍ଣଚତୁର୍ଥୀ, ବୁଧବାର ॥ ୧୪୬୪, ଏପ୍ରିଲ ୨୫ ତାରିଖ।

୧ମ ଧାଡ଼ି : ବୀରଶ୍ରୀ ଗଜପତି ଗଉଡେଶ୍ୱର ପ୍ରତାପ କପିଳେଶ୍ୱର ଦେବ ମହାରାଜାଙ୍କର ବିଜେ ରାଜ୍ୟେ।

୨ୟ ଧାଡ଼ି : ସମସ୍ତ ୩୫ ଶ୍ରେହୀ ମେଷ କୃ: ୪ ବୁଧବାର ଭୋଜଗନ୍ନାଥ ତୋହ ସେବକ ଏ–

୩ୟ ଧାଡ଼ି : ମନ୍ତ ଜଣାଉଅଛି ରାଇଜ ଜାକେ ଏ ପାଥାନ୍ତମାନଙ୍କ ମୁଣ୍ଡି ପାଇକ ରାଉତଙ୍କୁ କରି

୪ର୍ଥ ଧାଡ଼ି : xxxxxବାଳକାଲୁ ପୋଷି ଆଣିଲି ଏମାନେ ମୋତେ ସବୁହେଁ ଛାଡ଼ିଲେ

୫ମ ଧାଡ଼ି : ଏମାନଙ୍କୁ ଯେ ଯାହା ଅନୁରୂପେ ବିହିବି ନିଯୋଜିବି

୬ଷ୍ଠ ଧାଡ଼ି : ଭୋ ଜଗନ୍ନାଥ ଏକଥା ମୋ.ହର ଦୋଷ ଅଦୋଷ ବିସ୍ତର।

(ପାଠୋଦ୍ଧାର–ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ଭାଷାନ୍ତରଣ–ମନମୋହନ ଚକ୍ରବର୍ତ୍ତୀ)

ଏହି ଅଭିଲେଖଟି ମଧ୍ୟ କୌଣସି ଅନୁଦାନ ବା ଅନୁଶାସନ ନୁହେଁ। କିନ୍ତୁ କେତେକ ବିଜ୍ଞ ଆଲୋଚ ' ଙ୍କ। ସମସ୍ତ ଐତିହାସିକ ଏହି ଲେଖାର ପାଠ ବିସ୍ତର କରି ମତ ଦେଇଛନ୍ତି ଯେ ଏଥି ଜଗନ୍ନାଥ ପାଖରେ କେତେକ ସାମନ୍ତରାଜା ବା ଜମିଦାରଙ୍କ ବିରୁଦ୍ଧରେ କପିଳେନ୍ଦ୍ରଦେବଙ୍କର ଅଭିଯୋଗ। ସମ୍ରାଟ୍ ସେମାନଙ୍କୁ ଦଣ୍ଡ ଦେବାକୁ ଚାହାଁନ୍ତି। ତେଣୁ ଜଗନ୍ନାଥ ସମ୍ରାଟ୍‌ଙ୍କର ଦୋଷ ଅଦୋଷ ବିଚାର କରିବେ।

ଐତିହାସିକ ରାଖାଲ ଦାସ ଲେଖିଛନ୍ତି, "It records a pious wish on the part of the king and can not be fully understood on accuret of damage. Mr. Chakravarti informs us in a note that the Zamindar of Kundajori rebelled in the 35th Anka according to the Madala Panji and was helped by many of the Kapilendra's officers." (13)

ଐତିହାସିକ ପ୍ରଭାତ ମୁଖାର୍ଜୀ ଏ ସମ୍ପର୍କରେ ଲେଖିଛନ୍ତି –"In his Jagannath temple inscription dated 1464 he adderessed the deity complaining against the refractory conduct of some of his subordinate chiefs." (14) ସେପୁଣି ଅନ୍ୟତ୍ର କହିଛନ୍ତି, "In his fourth inscription (i.e., the 35th Anka) in the Jagnnath temple the king addressed Jagnnath complaining against the counduct of some vassals (Samanta) of the Kingdom." (15)

ଐତିହାସିକ ଡ଼ଃ ନବୀନ ସାହୁ ଲେଖିଛନ୍ତି, "One of his inscriptions dated in 35th Anka reveals that he was forsaken by some of his trusted people and he promised in the name of Jagnnath to punish them." (16)

ଐତିହାସିକ ଡ଼ଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଲେଖିଛନ୍ତି, "One of his inscriptions in the Jagannath temple at Puri dated AD 1464, states that he had been forsaken by his former soldiers and servants. Therefore, he entreats Lord Jagnnath to allow him to treat them as they deserve." (17)

ଆଲୋଚକ ଗୋପିନାଥ ମହାପାତ୍ର ଏ ସମ୍ପର୍କରେ ଲେଖିଛନ୍ତି, In the thirtyfifth regnal year he prayed to the Lord, whether he should punish the subordinate kings for their rebellious activities." (18)

ଲକ୍ଷ୍ୟ କରିବା କଥା– 'ସାଆନ୍ତ' ଶବ୍ଦଟିକୁ ପ୍ରାୟ ପ୍ରତ୍ୟେକ ଐତିହାସିକ ଜମିଦାର, ଅଧୀନସ୍ଥ ରାଜା, କର୍ମଚାରୀ, ମୁଖ୍ୟ, ସାମନ୍ତ, ସୈନ୍ୟ ବା ଭୃତ୍ୟ (ସେବକ) ଅର୍ଥରେ ହିଁ ଗ୍ରହଣ କରିଛନ୍ତି । ଲିପିଟିର ଗୋଟିଏ ଅତି ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ କିଛି ଅକ୍ଷର ନଷ୍ଟ ହୋଇଛି । ତା'ପରେ ଅଛି– "ବାଳକାଳୁ ପୋଷି ଆଣିଲି, ଏମାନେ ମୋତେ ସବୁହେଁ ଛାଡ଼ିଲେ । କୌଣସି ସାମନ୍ତ ରାଜା ବା ଜମିଦାରଙ୍କୁ ସମ୍ରାଟ 'ବାଳକାଳୁ' ପୋଷି ଆଣିବା ନିତାନ୍ତ ଅବାନ୍ତର କଥା । ଏହା କେବଳ ପୁଅନାତିଙ୍କ ପ୍ରତିହିଁ ପ୍ରଯୋଜ୍ୟ । ପୁଣି 'ଏମାନେ ମୋତେ ସବୁହେଁ ଛାଡ଼ିଲେ' ଅର୍ଥ କୌଣସି ସାମନ୍ତରାଜା ଅପେକ୍ଷା ସେହି ପୁଅ–ନାତିଙ୍କୁ କୁହାଯାଇଥିବା ଅଧିକ ଯୁକ୍ତି ସଙ୍ଗତ । କୌଣସି ରାଜପରିବାରରେ ରାଜା ପୁଅମାନଙ୍କୁ 'ସାଆନ୍ତ' ସମ୍ବୋଧନ ଏବେ ମଧ୍ୟ ପ୍ରଚଳିତ ଥିବା ଦୃଷ୍ଟିଗୋଚର ହେବ । ଫକୀରମୋହନ ସେନାପତିଙ୍କ ଏକାଧିକ ଉପନ୍ୟାସରେ ସାଆନ୍ତ ଶବ୍ଦର ଏହି ପ୍ରକାର ପ୍ରୟୋଗ ଲକ୍ଷ୍ୟଣୀୟ । ତା'ଛଡ଼ା କୌଣସି ସାମନ୍ତରାଜା ବା ଜମିଦାର ସମ୍ରାଟଙ୍କୁ ଛାଡ଼ି ଚାଲିଗଲେ ସମ୍ରାଟ ଏଥିରେ ବିଚଳିତ ହୋଇ ମନ୍ଦିର କାନ୍ଥରେ ଅଭିଲେଖ ଖୋଦେଇବା ନିତାନ୍ତ ଅଯୌକ୍ତିକର । ସେଭଳି ସାମନ୍ତଙ୍କୁ ଦଣ୍ଡଦେବା ପାଇଁ ଉତ୍କଳ ରାଜ ଶକ୍ତିର ଯଥେଷ୍ଟ କ୍ଷମତା ଥିଲା ଓ ଭୁବନେଶ୍ୱର ମନ୍ଦିର ଶିଳାଲିପିରେ ଏଭଳି ସାମନ୍ତଙ୍କ ପାଇଁ ଦଣ୍ଡବିଧି ସ୍ପଷ୍ଟ ଲେଖାହୋଇ ରହିଥିଲା । ଉକ୍ତ ନିର୍ଦ୍ଦେଶନାମାର ଇଂରାଜୀ ଅନୁବାଦ ଏହିପରି– **All the kings in my Orissa Kingdom should work for the good of the sovereign, should keep up virtuous ways, should not remain in bad ways. If they act badly towards the sovereign, they will be expelled from the kingdom and all their property confiscated." (19)** ଏଭଳି ସାମନ୍ତଙ୍କ ପାଇଁ ନିର୍ବାସନ ଓ ସମ୍ପତ୍ତି ବାଜ୍ୟାପ୍ତିକରଣ ଦଣ୍ଡ ବ୍ୟବସ୍ଥା ଥାଉଁ ଥାଉଁ ସମ୍ରାଟ ଏପରି ବ୍ୟାକୁଳତା ପ୍ରକାଶ କରିବାର ଅର୍ଥ କ'ଣ ?

ତେଣୁ ସ୍ୱୀକାର କରିବାକୁ ହେବ ଯେ, ଏ ଅଭିଲେଖରେ ଥିବା 'ସାଆନ୍ତ' ଶବ୍ଦର ଅର୍ଥ ସାମନ୍ତରାଜୀ ନୁହନ୍ତି, ବରଂ ରାଜକୁମାର ଗଣ, ଏମାନେ ବିଦ୍ରୋହ କରିଥିବାରୁ ଅର୍ଥାତ୍ ସମ୍ରାଟଙ୍କ ବିରୁଦ୍ଧରେ ଯାଇଥିବାରୁ ଛାଡ଼ିଥିବାରୁ ସେମାନଙ୍କ ଗୁଣ ଓ ଆଚରଣ ଅନୁସାରେ ସମ୍ପତ୍ତି ଓ ଅଧିକାର ବ୍ୟବସ୍ଥା କରିବା ପାଇଁ ଜଗନ୍ନାଥଙ୍କଠାରୁ ଅନୁମତି ମାଗିଛନ୍ତି । ଏମାନେ ମୋତେ ସବୁହେଁ ଛାଡ଼ିଲେ । ଭିତରେ ଯେଉଁ ହତାଶା ଓ କାରୁଣ୍ୟ ପ୍ରଚ୍ଛନ୍ନ ରହିଛି, ତାହା କୌଣସି ଜମିଦାର ପ୍ରତି କେବେହେଲେ ପ୍ରଯୋଜ୍ୟ ନୁହେଁ । ନିଜ ଲୋକ ବିପ୍ଳବ କଲେ, ପୁଅହୋଇ ବାପ ବିରୁଦ୍ଧରେ ଗଲେ ଏମିତି ଏକ ଅସହାୟ ଅବସ୍ଥା ସୃଷ୍ଟି ହୁଏ ଓ ସେତିକି ବେଳେ ମଣିଷ ଭଗବାନଙ୍କ ପାଖରେ ନିଜକୁ ସମର୍ପଣ କରେ । "ଯେ ଯାହା ଅନୁରୂପେ ବିହିବି ନିଯୋଜିବି"ର ଅର୍ଥ ସାମନ୍ତ ରାଜାମାନଙ୍କ ଦୋଷ ଅନୁରୂପ ଦଣ୍ଡ ବ୍ୟବସ୍ଥା ନୁହେଁ, ରାଜପୁତ୍ରମାନଙ୍କ ଗୁଣ ଓ ଆଚରଣ ଅନୁରୂପ ସମ୍ପତ୍ତି ବ୍ୟବସ୍ଥା କରିବା ଓ ନିଯୁକ୍ତି ଦେବା କଥା କୁହାଯାଇଛି । ପୁନଶ୍ଚ, କୌଣସି ସାମନ୍ତ ରାଜାପ୍ରତି ଦଣ୍ଡ ବ୍ୟବସ୍ଥା କରି ଜଗନ୍ନାଥଙ୍କୁ ଏହାର 'ଦୋଷ–ଅଦୋଷ ବିଚାର' କରିବାକୁ ପ୍ରାର୍ଥନା କରିବା ଏକାନ୍ତ ଅବାସ୍ତବ କଳ୍ପନା । ବରଂ ଜ୍ୟେଷ୍ଠକୁ ତା'ର ଜ୍ୟେଷ୍ଠତ୍ୱରୁ ବଞ୍ଚିତ କରିବାଭଳି ଏକ ଗୁରୁତର କାର୍ଯ୍ୟର ବିଚାର କରିବା ପାଇଁ ଜଗନ୍ନାଥଙ୍କୁ ଏପରି ନିବେଦନ କରାଯାଇଥିବା ଅଧିକ ଯୁକ୍ତିଯୁକ୍ତ ।

ଆଉ ଗୋଟିଏ ବଡ଼ ଜିନିଷ ଏ ଅଭିଲେଖରେ ଲକ୍ଷ୍ୟ କରିବା କଥା, ଏଥିରେ, କେବଳ 'ଗୌଡ଼େଶ୍ୱର' ଉପାଧିଟି ଲାଗିଛି, ଅର୍ଥାତ୍ 'ନବକୋଟି', 'କର୍ଣ୍ଣାଟ' ଓ 'କଳବର୍ଗ' ଇତ୍ୟାଦି ଶବ୍ଦ ଗଜପତିଙ୍କ ନାମ ସହିତ ସଂଯୁକ୍ତ ହୋଇନାହିଁ । କପିଳେନ୍ଦ୍ରଙ୍କ ଦିଗ୍‌ବିଜୟର ସାଲ ସହିତ ତାଙ୍କ ଅଭିଲେଖମାନଙ୍କୁ ମିଳାଇ ଦେଖିଲେ ସ୍ପଷ୍ଟ ବୁଝିହେବ – ଏସବୁ ଉପାଧି–ବିରୁଦ୍ଧ ତାଙ୍କ ପାଇଁ ତୁଚ୍ଛା ଅଳଙ୍କାର ନ ଥିଲା । ଯେତେବେଳେ ଯେଉଁ ଅଞ୍ଚଳ ତାଙ୍କ ଅଧିକାରକୁ ଆସିଛି, ସେତେବେଳେ ସେ ତାହା ଅଭିଲେଖରେ ବ୍ୟବହାର କରିଛନ୍ତି । (କିନ୍ତୁ କପିଳେନ୍ଦ୍ରଙ୍କ ପରବର୍ତ୍ତୀ ଗଜପତିମାନେ ଉପାଧିର ବାସ୍ତବତା ରକ୍ଷା କରିନାହାନ୍ତି) ତେଣୁ ଏହି ନିର୍ଦ୍ଦିଷ୍ଟ ଅଭିଲେଖଟିରେ କେବଳ ଗୌଡ଼େଶ୍ୱର ଉପାଧିଟିର ଉଲ୍ଲେଖ ଥିବାରୁ, ଏହା କ'ଣ ମନେକରିବା ଅସଙ୍ଗତ ହେବ ଯେ– ବିଦ୍ରୋହୀ ହମ୍ବୀର ନବକୋଟି ଓ କର୍ଣ୍ଣାଟ ସମେତ ଦାକ୍ଷିଣାତ୍ୟର ରାଜ୍ୟ ସମୂହ ନିଜ ଅକ୍ତିଆରରେ ରଖି ନିଜକୁ ସ୍ୱାଧୀନ ଘୋଷଣା କରିସାରିଥିଲେ ? ଶ୍ରୀମନ୍ଦିରରେ ଏହି ଲିପିଟି ଲେଖାଇବା ପରେ ପରେ କପିଳେନ୍ଦ୍ର ଦାକ୍ଷିଣାତ୍ୟ ଯୁଦ୍ଧରେ ପ୍ରାୟ ବ୍ୟସ୍ତ ରହିଛନ୍ତି ଓ କୃଷ୍ଣା ତଟରେ ପୁରୁଷୋତ୍ତମଙ୍କୁ ରାଜ୍ୟ ସମର୍ପଣ କରି ଶେଷ ନିଃଶ୍ୱାସ ତ୍ୟାଗ କରିଛନ୍ତି ।

କପିଳେନ୍ଦ୍ରଙ୍କ ଏଇ ୩୫ ଅଙ୍କରେ ଲିପିଟି ପ୍ରମାଣ କରିଛି, ପୁଅ–ନାତିଙ୍କ ଆଚରଣ ଅନୁସାରେ ସେମାନଙ୍କ ପାଇଁ ରାଜ୍ୟ ଓ ସମ୍ପତ୍ତି "ବିହିବା ନିଯୋଜିବା" ନିମନ୍ତେ ସେ ନିଜେହିଁ ସିଦ୍ଧାନ୍ତ ନେଇଛନ୍ତି ଓ ସେଭଳି କାର୍ଯ୍ୟର ଦୋଷାଦୋଷ ବିଚାର କରିବାର ଭାର ସେ ଜଗନ୍ନାଥଙ୍କ ଉପରେ ଛାଡ଼ିଦେଇଛନ୍ତି । ଏଥିରେ ଚକ୍ରର ଷଡ଼ଯନ୍ତ୍ର ଓ ମନ୍ଦିର ସେବକ ଗୋଷ୍ଠୀଙ୍କ ହାତଥିବା ପରିକଳ୍ପନା ନିତାନ୍ତ ଅସମୀଚିନ । ସ୍ୱୟଂ କପିଳେନ୍ଦ୍ରଦେବଙ୍କର ଏ କୈଫିୟତ୍ (ଦୋଷ–ଅଦୋଷ–ବିଚାର) ନେଇ ଏ ପର୍ଯ୍ୟନ୍ତ ଚଳିଆସିଥିବା ଯାବତୀୟ କଳ୍ପନା ଓ ଅନୁମାନର ଏବେ ଇତି ହେବା ଉଚିତ । ଇତିହାସ ନାମରେ ପ୍ୟାରିମୋହନଙ୍କଠାରୁ ନବୀନ କୁମାରଙ୍କ ପର୍ଯ୍ୟନ୍ତ ଯେଉଁ କାହାଣୀମାନ ଆମକୁ ଶୁଣାହୋଇ ଆସିଛି, ତାହା ଯେ ମାଦଳାପାଞ୍ଜିରୁ ଖୁବ୍ ବେଶୀ ଉନ୍ନତ ନୁହେଁ, ଏହା ବୋଧହୁଏ ବୁଝାଇବା ଆବଶ୍ୟକ ନାହିଁ ।

---

ପାଦଟୀକା :

(୧) ମାଦଳାପାଞ୍ଜି, ସଂ: ଡଃ ଆର୍ତ୍ତବଲ୍ଲଭ ମହାନ୍ତି, ପୃ: ୪୭–୪୮ ।

(୨ ତତ୍ରୈବ, ପୃଷ୍ଠା: ୪୬ ।

(୩) ଡଃ ନବୀନ କୁମାର ସାହୁ, History of Orissa, ପୃ: ୨୩୭ ।

(୪) ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, History of Orissa, ପୃ: ୨୦୮ ।

ଡଃ ପ୍ରଭାତ ମୁଖାର୍ଜୀ, History of the Gajapati Kings of Orissa, ପୃ: ୩୬ ।

୬) ଡଃ ରାଜେନ୍ଦ୍ରନାଥ ଦାସ, ଜନଶ୍ରୁତି କାହିଁକାହେଲୀ, ପୃ: ୩୮ ।

୭) ଅଭିଲେଖର କାଳନିରୂପଣ, ମନମୋହନ ଚକ୍ରବର୍ତ୍ତୀ ।

୮) ରାଖାଲ୍ ଦାସ ବାନାର୍ଜୀ, History of Orissa, ପୃ: ୩୦୧ ।

୯) ପ୍ରଭାତ ମୁଖାର୍ଜୀ, History of the Gajapati Kings of Orissa, ପୃ: ୪୯ ।

୧୦) ବାନାର୍ଜୀ, History of Orissa, ପୃ: ୩୦୪ ।

୧୧) ଡଃ ସାହୁ, History of Orissa, ପୃ: ୨୩୬ ।

୧୨) ଡଃ ପାଣିଗ୍ରାହୀ, History of Orissa, ପୃ: ୨୦୮ ।

୧୩) ବାନାର୍ଜୀ, History of Orissa, ପୃ: ୩୦୦ ।

(୧୪) ଡଃ ମୁଖାର୍ଜୀ, History of the Gajapati Kings of Orissa, ପୃ: ୩୬ ।

(୧୫) ତତ୍ରୈବ, ପୃ: ୪୬ ।

(୧୬) ଡଃ ସାହୁ, History of Orissa, ପୃ: ୨୩୫ ।

(୧୭) ଡଃ ପାଣିଗ୍ରାହୀ, History of Orissa, ପୃ: ୨୦୩ ।

(୧୮) ଡଃ ଗୋପିନାଥ ମହାପାତ୍ର, Jagannath in History & Regional Traditions of Orissa, ପୃ: ୧୦୩ ।

(୧୯) ବେଙ୍ଗଲ ଏସିଏଟିକ୍ ସୋସାଇଟି ପୁସ୍ତିକା (J.A.S.B.) Vol.XIII, P.P. 104 ଏବଂ ଡଃ ହରେକୃଷ୍ଣ ମହତାବ, History of Orissa ପୃ: ୩୧୧ ।



କରଞ୍ଜିଆ,
ମୟୂରଭଞ୍ଜ ।





କରଞ୍ଜିଆରୁ ପ୍ରକାଶ ପାଉଥିବା ସାପ୍ତାହିକ ପତ୍ରିକା "ସଚେତନ"ର ପ୍ରଥମ ବାର୍ଷିକୀ ଉତ୍ସବରେ ଜଙ୍ଗଲ ମନ୍ତ୍ରୀ, ଶ୍ରୀ ହରିହର ବଡ଼ିପାତ୍ର, ଉତ୍କଳ ପ୍ରସଙ୍ଗର ମୁଖ୍ୟ ସମ୍ପାଦକ, ଶ୍ରୀ ସତୀଶ ପାତ୍ର, ମୁଖ୍ୟ ଉପଦେଷ୍ଟା, ଶ୍ରୀ ବିଜୟ କୁମାର ପାତ୍ର, ସମ୍ପାଦକ, ରବି ରାଉତରାୟ ଓ ଆଇନଜ୍ଞ, ଶ୍ରୀ ଅମର ପାତ୍ର ।

# ସ୍ୱାସ୍ଥ୍ୟ ସେବା

ସଂକଳନ : ସୂଚନା ଓ ଲୋକ ସମ୍ପର୍କ ବିଭାଗ

"୨୦୦୦ ମସିହା ସୁଦ୍ଧା ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ" ନାମକ ଯେଉଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ତାହା ହାସଲ କରିବା ଲାଗି ଓଡ଼ିଶାର ବରେଣ୍ୟ ନେତା ଶ୍ରୀ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଗଠିତ ସରକାର ବଳିଷ୍ଠ ପଦକ୍ଷେପମାନ ଗ୍ରହଣ କରିଛନ୍ତି । ଏଣୁ ସ୍ୱାସ୍ଥ୍ୟ ସେବାର ବିଭିନ୍ନ ଶାଖା ଅର୍ଥାତ୍ ଏଲୋପାଥି, ଆୟୁର୍ବେଦିକ ଓ ହୋମିଓପାଥି କ୍ଷେତ୍ରରେ ଥିବା ସ୍ୱାସ୍ଥ୍ୟଗତ ଭିତ୍ତିଭୂମି ସମ୍ବଳିତ ସୁବିଧା ସୁଯୋଗମାନ ରାଜ୍ୟର ପୌର ତଥା ଗ୍ରାମାଞ୍ଚଳକୁ ସମ୍ପ୍ରସାରିତ କରିବା ଲାଗି ପଦକ୍ଷେପମାନ ଗ୍ରହଣ କରାଯାଉଛି । ଏହାଛଡ଼ା ମ୍ୟାଲେରିଆ, ବାତଜ୍ୱର, ଆ ମାଶୟ, କୁଷ୍ଠ, ଯକ୍ଷ୍ମା ଓ ଏଡ୍‌ସ୍ ଭଳି ଡିଆଁ ରୋଗଗୁଡ଼ିକର ନିରାକରଣ ଲାଗି ମଧ୍ୟ ପଦକ୍ଷେପମାନ ଗ୍ରହଣ କରାଯାଉଛି । ଏ ସବୁ ବ୍ୟବସ୍ଥା ଲାଗି ୧୯୯୧-୯୨ ବିଭାଗୀୟ ବଜେଟ୍ ଅଟକଳରେ ୧୯୦·୩୭ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି । ଉକ୍ତ ବଜେଟ୍ ଅଟକଳକୁ ସମ୍ପୂର୍ଣ୍ଣ ଭାବେ ଗ୍ରାମାଭିମୁଖୀ କରାଯାଉଛି ଓ ଏହାର ପ୍ରାୟ ଶତକଡ଼ା ୭୫ ଭାଗ ଅର୍ଥ ଗ୍ରାମାଞ୍ଚଳ ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମରେ ବ୍ୟୟ କରାଯିବା ପାଇଁ ପଦକ୍ଷେପ ଗ୍ରହଣ କରାଯାଉଛି ।

## ସହଜଲଭ୍ୟ ସ୍ୱାସ୍ଥ୍ୟ ଭିତ୍ତିଭୂମି :

ରାଜ୍ୟରେ ଅଦ୍ୟାବଧି ୯୨ ଗୋଟି ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦ୍ର, ୫୧୯ ଗୋଟି ଅତିରିକ୍ତ ଜନସ୍ୱାସ୍ଥ୍ୟ କେନ୍ଦ୍ର, ୧୭୨ ଗୋଟି ଆନୁଷଙ୍ଗିକ ସ୍ୱାସ୍ଥ୍ୟ କେନ୍ଦ୍ର, ୪୮୮ଟି ଆୟୁର୍ବେଦିକ ଚିକିତ୍ସାଳୟ ୩୮୨ ଗୋଟି ହୋମିଓପାଥିକ୍ ଚିକିତ୍ସାଳୟ, ୪ଟି ୟୁନାନି ଚିକିତ୍ସାଳୟ ଓ ୫,୯୨୭ଟି ଉପସ୍ୱାସ୍ଥ୍ୟ କେନ୍ଦ୍ର ରହିଛି । ୧୯୯୦-୯୧ ମସିହା ପାଇଁ ପ୍ରସ୍ତାବିତ ୧୦୦ଟି ନୂତନ ଜନସ୍ୱାସ୍ଥ୍ୟ କେନ୍ଦ୍ର, ୨୫ଟି ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦ୍ର, ୫୬ଟି ଆୟୁର୍ବେଦିକ ଚିକିତ୍ସାଳୟ, ୬୦ଟି ହୋମିଓପାଥିକ୍ ଚିକିତ୍ସାଳୟ ଓ ୪ଟି ୟୁନାନି ବ୍ୟତୀତ ୧୯୯୧-୯୨ ମସିହାରେ ନୂତନ କରି ୫୦ଟି ଜନସ୍ୱାସ୍ଥ୍ୟ କେନ୍ଦ୍ର ୩୫ଟି ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦ୍ର, ୨୦ଟି ଆୟୁର୍ବେଦିକ ଚିକିତ୍ସାଳୟ, ୨୦ଟି ହୋମିଓପାଥିକ୍ ଚିକିତ୍ସାଳୟ, ୨ଟି ୟୁନାନି ଚିକିତ୍ସାଳୟ ଖୋଲାଯିବା ନିମନ୍ତେ ସ୍ଥିର ହୋଇଛି । ଏହାଛଡ଼ା ଆୟୁର୍ବେଦିକ ଓ ହୋମିଓପାଥିକ୍ ନିର୍ଦ୍ଦେଶାଳୟର ତଦାରଖ ଶାଖାକୁ ସକ୍ରିୟ କରିବା ଲାଗି 'ପଞ୍ଚକର୍ମ' ନାମକ ଏକ ନୂତନ ଚିକିତ୍ସାଳୟ ଖୋଲିବା ଲାଗି ପ୍ରସ୍ତାବ ରଖାଯାଇଛି । ଉକ୍ତ ଚିକିତ୍ସାଳୟକୁ ୭ ଶଯ୍ୟା ବିଶିଷ୍ଟ କରାଯିବ ଓ ଏହା ୧୯୯୧-୯୨ ମସିହାରେ ଆରମ୍ଭ କରାଯିବାକୁ ସ୍ଥିରୀକୃତ ହୋଇଛି ।

## ଗ୍ରାମାଞ୍ଚଳର ହାସ୍‌ପାତାଳଗୁଡ଼ିକରେ ବିଶେଷଜ୍ଞଙ୍କ ସେବା ବ୍ୟବସ୍ଥା :

୧୯୯୧-୯୨ ମସିହା ମଧ୍ୟରେ ଭେଷଜ ବିଦ୍ୟାରେ ଓ ଶଲ୍ୟ ଶାସ୍ତ୍ରରେ ୪୬ ଗୋଟି ପଦବୀ ସୃଷ୍ଟି କରିବା ଲାଗି ସ୍ଥିର କରାଯାଇଛି । ଏହି ବିଶେଷଜ୍ଞମାନେ ଉନ୍ନୀତ ଜନସ୍ୱାସ୍ଥ୍ୟ କେନ୍ଦ୍ର ଓ ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦ୍ରମାନଙ୍କରେ କାର୍ଯ୍ୟ କରିବେ । ୧୯୯୧-୯୨ ମସିହାରେ ନିଦାନ ଶାସ୍ତ୍ର ଓ ନିଶ୍ଚେତନା ଶାସ୍ତ୍ରରେ ୨୫ ଗୋଟି ବିଶେଷଜ୍ଞଙ୍କୁ ସବ୍‌ଡିଭିଜନାଲ୍ ସ୍ତରୀୟ ହାସ୍‌ପାତାଳମାନଙ୍କରେ ଅବସ୍ଥାପିତ କରାଯିବ । ୩ ଗୋଟି ଦୁର୍ଘଟଣା ସେବା ସଂସ୍ଥା ସୃଷ୍ଟି କରିବା ପ୍ରସ୍ତାବ ମଧ୍ୟ ରଖାଯାଇଛି । ରଞ୍ଜନରଶ୍ମି ଯନ୍ତ୍ର ଓ ରୋଗୀ ଯାନ କ୍ରୟ କରିବା ପାଇଁ ୧୯୯୧-୯୨ ବଜେଟ୍ ଅଟକଳରେ ବ୍ୟବସ୍ଥା କରାଯାଇଛି ।

## ଦୃଷ୍ଟିହୀନତା ଓ ଟ୍ରାକମା ନିୟନ୍ତ୍ରଣ କାର୍ଯ୍ୟକ୍ରମ :

ଅନ୍ଧତ୍ୱ ଓ ଟ୍ରାକମା ନିୟନ୍ତ୍ରଣ ନିମନ୍ତେ ଉଦ୍ଦିଷ୍ଟ ଜାତୀୟ କାର୍ଯ୍ୟକ୍ରମର ମୂଳଲକ୍ଷ୍ୟ ହେଲା ୨୦୦୦ ମସିହା ସୁଦ୍ଧା ଦେଶରେ ଦୃଷ୍ଟିହୀନତାର ଅନୁପାତ ଶତକଡ଼ା ୧·୪ ଭାଗରୁ ୦·୩ ଭାଗକୁ ହ୍ରାସ କରିବା । ବାଲେଶ୍ୱର, କଳାହାଣ୍ଡି, ଫୁଲବାଣୀ, କେନ୍ଦୁଝର, ପୁରୀ, ବଲାଙ୍ଗୀର ଓ ମୟୂରଭଞ୍ଜ ଜିଲ୍ଲାର ସଦର ମହକୁମା ହାସ୍‌ପାତାଳଗୁଡ଼ିକରେ ଭ୍ରାମ୍ୟମାଣ ଚକ୍ଷୁ ଚିକିତ୍ସା ୟୁନିଟ୍‌ମାନ କାର୍ଯ୍ୟ କରୁଛି । ଏହାଛଡ଼ା ରାଜ୍ୟର ୩ ଗୋଟି ମେଡିକାଲ ହାସ୍‌ପାତାଳଗୁଡ଼ିକରେ ଆଉ ୩ ଗୋଟି ଭ୍ରାମ୍ୟମାଣ ଚକ୍ଷୁ ଚିକିତ୍ସାଳୟ ୟୁନିଟ୍ କାର୍ଯ୍ୟ କରୁଅଛି । ୧୯୮୯-୯୦ ମସିହା ମଧ୍ୟରେ ବୁର୍ଲାସ୍ଥିତ ବୀର ସୁରେନ୍ଦ୍ରସାଏ ମେଡିକାଲ କଲେଜ ହାସ୍‌ପାତାଳରେ ଏକ ଚକ୍ଷୁ ବ୍ୟାଙ୍କ୍ ପ୍ରତିଷ୍ଠା କରାଯାଇଛି ।

୧୯୯୦-୯୧ ମସିହା ମଧ୍ୟରେ ଅର୍ଥାତ୍ ୧୯୯୦ ମସିହା ନଭେମ୍ବର ମାସ ଶେଷ ସୁଦ୍ଧା ୧,୬୫,୯୮୫ ଚକ୍ଷୁ ପରୀକ୍ଷା ଓ ୬,୫୬୦ ଚକ୍ଷୁ ଅସ୍ତ୍ରୋପଚାର କରାଯାଇଛି ।

## କୁଷ୍ଠ ନିରାକରଣ କାର୍ଯ୍ୟକ୍ରମ :

୨୦୦୦ ମସିହା ସୁଦ୍ଧା ଦେଶରୁ ସମ୍ପୂର୍ଣ୍ଣ ଭାବେ କୁଷ୍ଠ ରୋଗ ବିଲୋପ ଲାଗି ଜାତୀୟ କୁଷ୍ଠ ନିରାକରଣକୁ ସକ୍ରିୟ ଭାବେ କାର୍ଯ୍ୟକାରୀ କରାଯାଉଛି । ଗଞ୍ଜାମ, ପୁରୀ, କଟକ, ମୟୂରଭଞ୍ଜ, ଢେଙ୍କାନାଳ ଏବଂ ବାଲେଶ୍ୱର ଜିଲ୍ଲାମାନଙ୍କରେ କୁଷ୍ଠ ରୋଗ ନିରାକରଣ ନିମନ୍ତେ ବହୁବିଧ ଔଷଧ ଚିକିତ୍ସା ବ୍ୟବସ୍ଥାକୁ କାର୍ଯ୍ୟକାରୀ କରାଯାଉଛି । ୧୯୯୦-୯୧ ମସିହାରେ ଏହି ଚିକିତ୍ସା ବ୍ୟବସ୍ଥାକୁ ସମ୍ବଲପୁର ଓ ବଲାଙ୍ଗୀର ଜିଲ୍ଲାରେ ଓ ୧୯୯୧-୯୨ ମସିହାରେ କୋରାପୁଟ, କଳାହାଣ୍ଡି ଓ କେନ୍ଦୁଝର ଜିଲ୍ଲାରେ ପ୍ରବର୍ତ୍ତନ କରିବା ଲାଗି ପ୍ରସ୍ତାବ ରଖାଯାଇଛି । ଅଦ୍ୟାବଧି ୧,୫୭,୮୬୨ ଜଣ କୁଷ୍ଠ ରୋଗୀଙ୍କୁ ବହୁବିଧ ଚିକିତ୍ସା ବ୍ୟବସ୍ଥା ପ୍ରଦାନ କରାଯାଇଛି ଓ ତନ୍ମଧ୍ୟରୁ ୧,୦୭,୮୪୬ ଜଣ କୁଷ୍ଠ ରୋଗୀ ଆରୋଗ୍ୟ ଲାଭ କରିଛନ୍ତି ଓ ୮୮,୩୩୪ ଜଣ କୁଷ୍ଠ ରୋଗୀ ଚିକିତ୍ସାଧୀନ ରହିଛନ୍ତି ।

## ଯକ୍ଷ୍ମା ନିୟନ୍ତ୍ରଣ କାର୍ଯ୍ୟକ୍ରମ :

ଯକ୍ଷ୍ମା ରୋଗ ଚିକିତ୍ସା କ୍ଷେତ୍ରରେ କେମୋଥେରାପି ନାମକ ଏକ ସ୍ୱଳ୍ପକାଳୀନ ଚିକିତ୍ସା ପଦ୍ଧତି ପ୍ରବର୍ତ୍ତନ କରାଯାଇ ଅତି ଅଳ୍ପ ସମୟ ମଧ୍ୟରେ ସମ୍ପୃକ୍ତ ରୋଗୀମାନଙ୍କୁ ଆରୋଗ୍ୟ କରାଯାଇପାରୁଛି । ଏହି ଚିକିତ୍ସା ବ୍ୟବସ୍ଥାକୁ ପୁରୀ, ଗଞ୍ଜାମ, ଢେଙ୍କାନାଳ, ମୟୂରଭଞ୍ଜ, କେନ୍ଦୁଝର, କଟକ, କୋରାପୁଟ, କଳାହାଣ୍ଡି ପ୍ରଭୃତି ଜିଲ୍ଲାମାନଙ୍କରେ ପ୍ରବର୍ତ୍ତନ କରାଯାଇଛି । ଖୁବ୍ ନିକଟରେ ଏହି ଚିକିତ୍ସା ବ୍ୟବସ୍ଥାକୁ ବାଲେଶ୍ୱର ଜିଲ୍ଲାରେ ପ୍ରବର୍ତ୍ତନ କରିବାକୁ ପ୍ରସ୍ତାବ ରଖାଯାଇଛି ।

## ଅଞ୍ଚଳ ଉନ୍ନୟନ ପାଇଁ ଦ୍ୱିତୀୟ ପର୍ଯ୍ୟାୟ କାର୍ଯ୍ୟକ୍ରମ :

ସମ୍ବଲପୁର, ସୁନ୍ଦରଗଡ଼, ମୟୂରଭଞ୍ଜ, କେନ୍ଦୁଝର ଓ ଢେଙ୍କାନାଳ ପ୍ରଭୃତି ୫ ଗୋଟି ଜିଲ୍ଲାରେ ବ୍ରିଟିଶ୍ ସରକାରଙ୍କ ସହାୟତା କ୍ରମେ ୧-୧୧-୧୯୮୯ ତାରିଖ ପରଠାରୁ ଦ୍ୱିତୀୟ ପର୍ଯ୍ୟାୟ ଅଞ୍ଚଳ ଉନ୍ନୟନ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରାଯାଇଛି । ଏଥିନିମନ୍ତେ ୬୫-୬୬ କୋଟି ଟଙ୍କାର ବ୍ୟୟ ଅଟକଳ କରାଯାଇଛି । ଏଥିଲାଗି ରାଜ୍ୟ ସରକାର, କେନ୍ଦ୍ର ସରକାର ଓ ବ୍ରିଟିଶ୍ ସରକାର ସେମାନଙ୍କର ଅଂଶ ସ୍ୱରୂପ ସମୁଦାୟ ବ୍ୟୟ ଅଟକଳର ଶତକଡ଼ା ୨୦.୧୫ ଓ ୬୫ ଭାଗ ଦେବେ । ଉକ୍ତ ପରିକଳ୍ପନା ଅନୁଯାୟୀ ସମ୍ପୃକ୍ତ ଜିଲ୍ଲାଗୁଡ଼ିକରେ ଗ୍ରାମାଞ୍ଚଳ ଲୋକମାନଙ୍କ ନିମନ୍ତେ ସ୍ୱାସ୍ଥ୍ୟଗତ ଭିତ୍ତିଭୂମିଗୁଡ଼ିକରେ ଉନ୍ନତି ବିଧାନ କରାଯାଇପାରିବ । ଡାକ୍ତରୀ ତଥା ଅର୍ଦ୍ଧ ଡାକ୍ତରୀ କର୍ମଚାରୀ ବିଶେଷ କରି ନର୍ସମାନଙ୍କୁ ତାଲିମ୍ ପ୍ରଦାନ କରି ମାନବ ସମ୍ବଳର ବିକାଶ ସାଧନ କରିବା ହେଉଛି ଉକ୍ତ ପ୍ରକଳ୍ପର ମୂଳ ଲକ୍ଷ୍ୟ । ଏହାଛଡ଼ା ଉକ୍ତ ପରିକଳ୍ପନା ଅନୁଯାୟୀ ମୃତ୍ୟୁ ମୁଖରେ ପଡୁଥିବା ଆଦିବାସୀ ଓ ସୁଦୂର ଅଞ୍ଚଳର ମହିଳା, ଶିଶୁ ଓ ଗର୍ଭବତୀମାନଙ୍କ ମୃତ୍ୟୁ ହାର ହ୍ରାସ କରିବା ଲାଗି ବ୍ୟାପକ ଚିକିତ୍ସା ବ୍ୟବସ୍ଥା ସମେତ କେତେକ ଆଦିବାସୀ ବ୍ଲକ୍‌ରେ ଭ୍ରାମ୍ୟମାଣ ସ୍ୱାସ୍ଥ୍ୟ ଚିକିତ୍ସାଗାର ଓ ବିଦ୍ୟାଳୟ ସ୍ୱାସ୍ଥ୍ୟ ଚିକିତ୍ସାଗାର ବ୍ୟବସ୍ଥା ପ୍ରବର୍ତ୍ତନ କରାଯାଇଛି । ୧୯୯୦-୯୧ ମସିହାରେ ଉକ୍ତ କାର୍ଯ୍ୟକ୍ରମଗୁଡ଼ିକୁ କାର୍ଯ୍ୟକାରୀ କରିବା ଲାଗି ୬.୦୨ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି ଓ ୧୯୯୧-୯୨ ମସିହାରେ ୧୮.୪୪ କୋଟି ଟଙ୍କା ବ୍ୟୟ କରାଯିବା ଲାଗି ବ୍ୟବସ୍ଥା ହୋଇଛି ।

## ପରିବାର କଲ୍ୟାଣ କାର୍ଯ୍ୟକ୍ରମ :

ଯୋଗ୍ୟ ଦମ୍ପତିମାନଙ୍କୁ ବନ୍ଧ୍ୟାକରଣ ବ୍ୟବସ୍ଥା ଗ୍ରହଣ କରିବାକୁ ପ୍ରବର୍ତ୍ତାଇବା ଓ ସନ୍ତାନ ଜନ୍ମ କ୍ଷେତ୍ରରେ ବ୍ୟବଧାନ ରକ୍ଷା କରିବା ନିମନ୍ତେ ସେମାନଙ୍କୁ ପ୍ରୋତ୍ସାହିତ କରାଯାଉଛି । ସାର୍ବଜନୀନ ଟୀକାଦାନ କାର୍ଯ୍ୟକ୍ରମ ମାଧ୍ୟମରେ ଶିଶୁମାନଙ୍କୁ ଡିପ୍‌ଥେରିଆ, ହୁପିଂକଫ୍, ଟିଟାନସ୍, ମିଳିମିଳା, ଯକ୍ଷ୍ମା ଓ ପୋଲିଓ ପ୍ରଭୃତି ରୋଗ ଦାଉରୁ ରକ୍ଷା କରାଯିବା ପାଇଁ ପଦକ୍ଷେପ ଗ୍ରହଣ କରାଯାଉଛି ।

## ଡାକ୍ତରୀ ଶିକ୍ଷା ଓ ବିଶେଷଜ୍ଞ ଚିକିତ୍ସା ବ୍ୟବସ୍ଥା :

ରାଜ୍ୟର ୩ ଗୋଟି ଡାକ୍ତରୀ ମହାବିଦ୍ୟାଳୟଗୁଡ଼ିକରେ ଗୁରୁତ୍ୱପୂର୍ଣ୍ଣ ବିଷୟରେ ସ୍ନାତକ ଓ ସ୍ନାତକୋତ୍ତର ଶିକ୍ଷା ପ୍ରଦାନ କରାଯାଉଛି ଓ କଟକସ୍ଥିତ ଏସ୍: ସି: ବି: ମେଡିକାଲ କଲେଜରେ ହୃଦ୍‌ରୋଗ ଓ ସ୍ନାୟୁରୋଗ ବିଷୟରେ ପରବର୍ତ୍ତୀ ଉଚ୍ଚତାଲିମ୍ ଶିକ୍ଷାଦାନ କରାଯାଉଛି ।

## ମାଗଣାରେ ଯୋଗାଇ ଦିଆଯାଉଥିବା ରୋଗୀ ଖାଦ୍ୟ ଓ ଔଷଧଗୁଡ଼ିକର ସଂଶୋଧିତ ମୂଲ୍ୟ :

୧-୧-୧୯୯୧ ତାରିଖ ପରଠାରୁ ଡାକ୍ତରଖାନାଗୁଡ଼ିକରେ ଚିକିତ୍ସିତ ହେଉଥିବା ରୋଗୀମାନଙ୍କୁ ଯୋଗାଇ ଦିଆଯାଉଥିବା ଔଷଧଗୁଡ଼ିକର ମୁଣ୍ଡପିଛା ହାର ଟ ୬.୫୦ରୁ ଟ ୯.୫୦ ପର୍ଯ୍ୟନ୍ତ ବୃଦ୍ଧି କରାଯାଇଛି । ଏହାଛଡ଼ା ରୋଗୀମାନଙ୍କର ଆବଶ୍ୟକ ଅନୁଯାୟୀ ଗଜ୍, ବ୍ୟାଣ୍ଡେଜ୍, ସିରିଟ୍ ଓ ସାଲାଇନ୍ ଦିଆଯିବା ଲାଗି ବ୍ୟବସ୍ଥା କରାଯାଇଛି । ସାଧାରଣ ରୋଗୀ ଓ ଯକ୍ଷ୍ମା ରୋଗୀମାନଙ୍କୁ ଦିଆଯାଉଥିବା ଖାଦ୍ୟର ମୁଣ୍ଡପିଛା ହାର ଅଧିକା ଦୁଇଟଙ୍କାକୁ ବୃଦ୍ଧି କରାଯାଇଛି । ଏହା ଫଳରେ ସାଧାରଣ ରୋଗୀ ଓ ଯକ୍ଷ୍ମାରୋଗୀମାନଙ୍କର ମୁଣ୍ଡପିଛା ଖାଦ୍ୟ ହାର ଯଥାକ୍ରମେ ସାତ ଟଙ୍କା ଓ ଆଠ ଟଙ୍କା ରଖାଯାଇଛି ।

## ଔଷଧଗୁଡ଼ିକର ଗୁଣାତ୍ମକ ମାନ ନିର୍ଦ୍ଧାରଣ କ୍ଷେତ୍ରରେ ସମ୍ପୃକ୍ତ ବିଭାଗର ଦାୟିତ୍ୱ :

୧୯୯୦–୯୧ ମସିହା ମଧ୍ୟରେ ଅର୍ଥାତ୍ ୯୦ ମସିହା ଡିସେମ୍ବର ମାସ ଶେଷ ସୁଦ୍ଧା ଔଷଧ ନିୟନ୍ତ୍ରଣ ସଂସ୍ଥା ତରଫରୁ ୨୦୮ ଗୋଟି ଔଷଧ ପ୍ରସ୍ତୁତକାରୀ ୧୯୫୦ ଗୋଟି ବିକ୍ରୟ ଭଣ୍ଡାର ତଦାରଖ କରିଛନ୍ତି ତଥା ବିକ୍ରୟ ହେଉଥିବା ଓ ପ୍ରସ୍ତୁତ ଔଷଧଗୁଡ଼ିକୁ ପରୀକ୍ଷା ନିରୀକ୍ଷା କରିଛନ୍ତି । ବିଧିବଦ୍ଧ ବ୍ୟବସ୍ଥା ଭଙ୍ଗ କରିଥିବା ୫୯୯ ଗୋଟି ଔଷଧ ପ୍ରସ୍ତୁତକାରୀ ସଂସ୍ଥାଗୁଡ଼ିକୁ 'କାରଣ ଦର୍ଶାଅ' ନୋଟିସ୍ ଜାରି କରାଯାଇଥିଲା । ବିହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇ୧୬୭ ଗୋଟି ଔଷଧ ପ୍ରସ୍ତୁତକାରୀ ସଂସ୍ଥାର ଲାଇସେନ୍ସ ସସ୍‌ପେଣ୍ଡ୍ କରାଯାଇଛି । ଏହାଛଡ଼ା ୧୬୭ ଗୋଟି ସଂସ୍ଥାର ଲାଇସେନ୍ସକୁ ରଦ୍ଦ କରାଯାଇଛି । ୧୯୯୦–୯୧ ମସିହା ମଧ୍ୟରେ ଭୁବନେଶ୍ୱରସ୍ଥିତ ରାଜ୍ୟ ଔଷଧ ପରୀକ୍ଷାଗାର ୫୩୨ ଗୋଟି ଔଷଧ ନମୁନା ପରୀକ୍ଷା କରିଛନ୍ତି । ଉକ୍ତ ପରୀକ୍ଷାଗାରକୁ ଆବଶ୍ୟକ ବୈଷୟିକ କର୍ମଚାରୀ ଓ ଯନ୍ତ୍ରପାତି ଯୋଗାଇ ଦେଇ ଯେପରି ସମସ୍ତ ପ୍ରକାରର ଔଷଧ ନମୁନା ପରୀକ୍ଷା କରିବା କ୍ଷେତ୍ରରେ ଶକ୍ତି ସାମର୍ଥ୍ୟ ବୃଦ୍ଧି ପାଇପାରିବ, ସେଥିନିମନ୍ତେ ଆବଶ୍ୟକ ପଦକ୍ଷେପମାନ ଗ୍ରହଣ କରାଯାଉଛି । ଚଳିତ ବର୍ଷ ଉକ୍ତ ପରୀକ୍ଷାଗାର ନିମନ୍ତେ ୨୦ ଲକ୍ଷ ଟଙ୍କାର ଯନ୍ତ୍ରପାତି କ୍ରୟ କରାଯାଉଛି ।




ରାଜ୍ୟ ସୂଚନା ଭବନଠାରେ ଆୟୋଜିତ ରାଜ୍ୟସ୍ତରୀୟ ପ୍ରକୃତି ମିତ୍ର ଓ ପ୍ରକୃତି ବନ୍ଧୁ ପୁରସ୍କାର ଉତ୍ସବରେ ମୁଖ୍ୟମନ୍ତ୍ରୀ, ଶ୍ରୀ ବିଜୁ ପଟ୍ଟନାୟକଙ୍କ ଉଦ୍‌ବୋଧନ । ଜଙ୍ଗଲ ବିଭାଗ ମନ୍ତ୍ରୀ, ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର ମଞ୍ଚାସୀନ ।



# ଆଦିନାଟ୍ୟକାର ଜଗନ ମୋହନ ଲାଲଙ୍କ ସ୍ମରଣେ

ସେକ୍ ମତଲୁବ୍ ଅଲି

ବିଗତ ଶତାବ୍ଦୀର କଥା–ଉତ୍କଳୀୟ ଭାଷାଭାଷି ଅଞ୍ଚଳ ଏକାଠି ନଥିଲା । ତତ୍କାଳୀନ ଓଡ଼ିଶାର ସମାଜ, ସଂସ୍କୃତି ଓ ଧର୍ମ କ୍ଷେତ୍ରରେ ଏକ ଅବକ୍ଷୟର ଅବସ୍ଥା ଦେଖାଦେଇଥିଲା । ୧୮୬୬ ମସିହା ନ'ଅଙ୍କ ଦୁର୍ଭିକ୍ଷ ହେତୁ ଅର୍ଥନୈତିକ ଅବସ୍ଥା ସମ୍ପୂର୍ଣ୍ଣ ଭୁଷୁଡ଼ି ପଡ଼ିଥିଲା ।୧୮୬୯ରେ ଓଡ଼ିଆ ଭାଷା ବିଲୋପ ଆନ୍ଦୋଳନ–କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କର "ଓଡ଼ିଆ ଏକଟା ଭାଷା ନୟ", ପୁସ୍ତିକା ଆଦିକବି ସାରଳା ଦାସ, କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ଭାଷାର ଭିତିକୁ ପ୍ରଶ୍ନ କରିଛି !! ଏହି ସମସ୍ତ ସମସ୍ୟା ଓ ସଂଘର୍ଷ ଭିତରେ ବନ୍ଧୁ ଯୋଗବନ୍ଧୁ ମନିଷୀଙ୍କର ଅସୀମ ସାଧନା, ତ୍ୟାଗ ଓ ନିଷ୍ଠା ହେତୁ ସଂହତି ଏବଂ ସଂଗ୍ରାମ ମୁଣ୍ଡ ଟେକି ଉଠିଥିଲା ।ଭାଷା ଓ ସଂସ୍କୃତିର ସୁରକ୍ଷା, ସାମାଜିକ ସଂସ୍କାର ଏବଂ ଜାତୀୟ ସ୍ୱାଭିମାନ ପ୍ରତିଷ୍ଠା ପାଇଁ ସେତେବେଳେ ଯେଉଁମାନେ ଅଙ୍ଗୀକାରବଦ୍ଧ ଓ ଅଗ୍ରଣୀ ଥିଲେ ସେମାନଙ୍କ ମଧ୍ୟରେ ନୀରବ ସାଧକ ଜଗନ୍‌ମୋହନ ଲାଲ୍ ଥିଲେ ଅନ୍ୟତମ ।

ଉନବିଂଶ ଶତାବ୍ଦୀର ଶେଷ ଭାଗରେ ଓଡ଼ିଆ ସାହିତ୍ୟର ସମୃଦ୍ଧିର ସଂଗ୍ରାମରେ ଲାଲାଜୀ ଥିଲେ ଅନ୍ୟତମ ସ୍ରଷ୍ଟା ଏବଂ ସୁଦକ୍ଷ ସାରଥୀ ।

ଆମ ସାହିତ୍ୟରେ ଯାତ୍ରା ସାହିତ୍ୟର ପରମ୍ପରା ଯେପରି ପ୍ରାଚୀନ ଏବଂ ସେହିପରି ଜନପ୍ରିୟ । ରାମଲୀଳା, କୃଷ୍ଣଲୀଳା, ରାହସ, ଗୀତିନାଟ୍ୟ ମଧ୍ୟ ଉତ୍କଳୀୟ ସାହିତ୍ୟରେ ବହୁ ସଂଖ୍ୟାରେ ବିଭିନ୍ନ ସମୟରେ ରଚିତ ହୋଇ ଜନ–ମନୋରଞ୍ଜନ କରିଆସିଛି । ଏହା ବ୍ୟତୀତ ଗଜପତି କପିଳେନ୍ଦ୍ର ଦେବଙ୍କ ନାଟକ 'ପର୍ଶୁରାମ ବିଜୟ', ରାୟ ରାମାନନ୍ଦଙ୍କର 'ଜଗନ୍ନାଥ ବଲ୍ଲଭ' ନାଟକ ଏବଂ ରଘୁନାଥ ପରିଚ୍ଛାଙ୍କର 'ଗୋପୀନାଥ ବଲ୍ଲଭ' ନାଟକ ନାଟ୍ୟ ପରମ୍ପରାରେ ଉଲ୍ଲେଖନୀୟ ସୃଷ୍ଟି । କିନ୍ତୁ ଏଗୁଡ଼ିକ ପୂର୍ଣ୍ଣାଙ୍ଗ ନାଟକ ନୁହେଁ । କଠିନ ସଂସ୍କୃତ ଶବ୍ଦ ପରିପୂର୍ଣ୍ଣ ସଙ୍ଗୀତମୟ ଗୀତିନାଟ୍ୟ । କିନ୍ତୁ ସେ ସମୟର ଜଣେ ଡେପୁଟି କଲେକ୍ଟର, କଟକ ଜିଲା ଅନ୍ତର୍ଗତ ମାହାଙ୍ଗା ନିବାସୀ ଜଗନ୍‌ମୋହନ ଲାଲଙ୍କ ରଚିତ 'ବାବାଜୀ' ନାଟକ ୧୮୭୭ରେ ପ୍ରକାଶିତ ହେଲା । ପୌରାଣିକ କଥା ବା କିମ୍ବଦନ୍ତୀମୂଳକ କାହାଣୀ ନ ନେଇ ସାମାଜିକ ବିଷୟବସ୍ତୁକୁ ନେଇ ସେ ପ୍ରଥମେ ନାଟକ ରଚନା କଲେ । ଏହି ନାଟକ ରଚନା ପୂର୍ବରୁ ଏପରିକି କବିବର ରାଧାନାଥ ରାୟଙ୍କର ଓଡ଼ିଆ କାବ୍ୟ କବିତା ରଚନା ପୂର୍ବରୁ ଲାଲା ମହାଶୟଙ୍କର 'ଭ୍ରମ ଭଞ୍ଜନ' କାବ୍ୟ ପ୍ରକାଶିତ ହୋଇ ସ୍କୁଲର ପାଠ୍ୟପୁସ୍ତକ ଭାବେ ଗୃହୀତ ହୋଇଥିଲା । ଏହା ସହିତ ଟମ୍ସନଙ୍କର ରଚିତ ଓଡ଼ିଶା ଇତିହାସର ମର୍ମାନୁବାଦ "ଓଡ଼ିଶା ବିଷୟ" ୧୮୭୬ରେ ପ୍ରକାଶିତ ହୋଇଥିଲା ପାଶ୍ଚାତ୍ୟ ସାହିତ୍ୟ, ଜାତୀୟ ଇତିହାସରେ ଲାଲ ମହାଶୟଙ୍କର ଯଥେଷ୍ଟ ଅଧ୍ୟୟନ ଥିଲା । କର୍ମବୀର ଗୌରୀଶଙ୍କର ରାୟଙ୍କର ସେ ଥିଲେ ଘନିଷ୍ଠ ବନ୍ଧୁ । ବ୍ରାହ୍ମସମାଜ ଓ ରାଜା ରାମମୋହନ ରାୟଙ୍କର ଆହ୍ୱାନରେ ସେ ଆକୃଷ୍ଟ ହୋଇଥିଲେ । ସାହିତ୍ୟ ସୃଷ୍ଟିରେ ଲାଲା ମହାଶୟ ନାଟକ ରଚନାରେ ବ୍ରତୀହେଲେ । ନିଜ ଗାଁ ମାହାଙ୍ଗାରେ ସେ ଏକ ସ୍ଥାୟୀ ରଙ୍ଗମଞ୍ଚ 'ରାଧାକାନ୍ତ' ରଙ୍ଗମଞ୍ଚ ପ୍ରତିଷ୍ଠା କଲେ । ଏହି ମଞ୍ଚର ଅଭିନୀତ ଅନ୍ୟତମ ସାମାଜିକ ନାଟକ 'ବାବାଜୀ' ।

ତତ୍କାଳୀନ ସାମାଜିକ, ଧାର୍ମିକ ଓ ଅର୍ଥନୈତିକ ପରିସ୍ଥିତିର 'ବାବାଜୀ' ନାଟକ ଏକ ନିଖୁଣ ଛବି । ଜମିଦାରଙ୍କର ଅତ୍ୟାଚାର, ଶୋଷଣ–ମଠ ମହନ୍ତଙ୍କର ବ୍ୟଭିଚାର–ଅର୍ଦ୍ଧଶିକ୍ଷିତ ଯୁବକମାନଙ୍କର ଉଚ୍ଛୃଙ୍ଖଳତା ଏବଂ ଚାରିତ୍ରିକ ଅଧୋଗତି, ମଦ୍ୟପାନ ଏବଂ ଗୁଣି ଗାରୁଡ଼ି, କୁସଂସ୍କାର କଥା ଜଗନମୋହନ ଲାଲା ନିର୍ଭୀକଭାବରେ 'ବାବାଜୀ' ନାଟକରେ ଉଲ୍ଲେଖ କରିଛନ୍ତି । ଉକ୍ତ ନାଟକର ନାୟକ ବାବାଜୀ, ପ୍ରଥମେ ଏକ ନିଶାଗ୍ରସ୍ତ ବ୍ୟକ୍ତି ଠାରୁ ଅପଦସ୍ତ ଓ ବ୍ୟଭିଚାରଗ୍ରସ୍ତ ମଠରୁ ପ୍ରତାରିତ ଓ ଅପମାନିତ ହୋଇ ଗାଁର ଶେଷମୁଣ୍ଡ ତୋଟାରେ ବିଶ୍ରାମ କଲା ସମୟରେ କେତେକ ଲୋକଙ୍କୁ ଉପଦେଶ ଦେଇଛନ୍ତି । ଅଧୋପତିତ ମଣିଷ ହୃଦୟରେ ଅନୁତାପ ଏବଂ ପରିବର୍ତ୍ତନ ଆଣିବାରେ ସେ ସକ୍ଷମ ହୋଇଛନ୍ତି । ଏହା ନାଟକଟିର ମୁଖ୍ୟ ବିଷୟ । ଏହା ବ୍ୟତୀତ ଲାଲ ମହାଶୟ ନଅଙ୍କ ଦୁର୍ଭିକ୍ଷ ସମୟରେ ଯେଉଁ ଅସହାୟ ଲୋକ 'ଛତର'ରେ ଖାଇ ଜାତି ହରାଇ ଥିଲେ–ପାଦ୍ରିମାନଙ୍କର ପ୍ରଲୋଭନରେ ପଡ଼ି ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରୁଥିବା ବ୍ୟକ୍ତିମାନଙ୍କ କଥା ଉଲ୍ଲେଖ କରିବା ସହିତ ଧର୍ମ, ସଂସ୍କୃତି ଓ ଭାଷାର ସମସ୍ୟା କଥା ଦର୍ଶାଇଛନ୍ତି ଏବଂ ଶାଣିତ ବ୍ୟଙ୍ଗୋକ୍ତି ମଧ୍ୟ କରିଛନ୍ତି । ଦୃଶ୍ୟ ବିନ୍ୟାସ ଚରିତ୍ରଙ୍କ

ବିଶିଷ୍ଟ ଏହି ବାବାଜୀ ନାଟକ ମଧ୍ୟାହ୍ନ ପୂର୍ବରୁ ଆରମ୍ଭ ହୋଇ ସନ୍ଧ୍ୟାରେ ଶେଷ ହୋଇଛି ।

ଜଗନମୋହନ ଲାଲ ଉଚ୍ଚ ଶିକ୍ଷିତ, ଅଭିଜ୍ଞ, ସମାଜସେବି ଓ ସଂସ୍କାରକ ଥିବାରୁ ଏଭଳି ଏକ ଚିନ୍ତା ଉଦ୍ରେକ, ଜାତୀୟ ସ୍ୱାଭିମାନ ଭିତ୍ତିକ ଆଧୁନିକ, ସାମାଜିକ, ବାବାଜୀ ନାଟକ ରଚନା କରି ନିଜ ଘରେ ପ୍ରତିଷ୍ଠିତ ରାଧାକାନ୍ତ ରଙ୍ଗମଞ୍ଚରେ ନିଜ ପରିବାରେ ଲୋକଙ୍କ ସହିତ ମଞ୍ଚସ୍ଥ କରିଥିଲେ – ନିର୍ଦ୍ଦେଶନା ଦେଇଥିଲେ ଏବଂ ନିଜେ ନାଟକର ନାୟକ 'ବାବାଜୀ' ଭୂମିକାରେ ଅଭିନୟ କରିଥିଲେ । ସେତେବେଳେ ଏଭଳି କାର୍ଯ୍ୟ କରିବା ଏକ ଐତିହାସିକ ଘଟଣା । ଲାଲ ମହାଶୟ ତାହା ସଫଳତାର ସହିତ କରିଥିଲେ । ପୁନଶ୍ଚ ବାବାଜୀ ନାଟକରେ ଗତାନୁଗତିକ ନାଟକ ଶୈଳୀ ଓ ସଂସ୍କୃତ ନାଟକର ଭାରାକ୍ରାନ୍ତ ବ୍ୟବସ୍ଥାକୁ ପରିତ୍ୟାଗ କରି ନନ୍ଦୀ, ସୂତ୍ରଧର ଭଳି ଚରିତ୍ରର ଅବତାରଣା ନକରି ସାମାଜିକ ସମସ୍ୟାକୁ ଭିତ୍ତିକରି ପାତ୍ରମୁଖୀ ସଂଳାପ ସଂଯୋଗକରି ଜଗନମୋହନ ଲାଲ ଓଡ଼ିଆ ନ୍ୟଟ୍ୟ ସାହିତ୍ୟର ଆଦି ପର୍ବରେ ଯେଉଁ ନୂତନ ପରମ୍ପରା ସୃଷ୍ଟି କଲେ ତାହା ଓଡ଼ିଆ ନାଟ୍ୟ ସାହିତ୍ୟ ଇତିହାସରେ ଏକ ବିପ୍ଳବ – ନବନାଟ୍ୟ ଆନ୍ଦୋଳନର ଆଦିପର୍ବ କହିଲେ ଅତ୍ୟୁକ୍ତି ହେବ ନାହିଁ ।

'ସତୀ' ଏବଂ 'ପ୍ରୀତି' ଲାଲ ମହାଶୟଙ୍କର ଆଉ ଦୁଇଟି ଘଟଣା ବହୁଳ ସାମାଜିକ ନାଟକ, ଜମିଦାରି ଶାସନର ଅତ୍ୟାଚାର, ଶୋଷଣ କଥା 'ସତୀ' ନାଟକରେ ଉତ୍ଥାପିତ ହୋଇଛି । ସତୀ ନାଟକର ନାୟିକା ଲାବଣ୍ୟ ନାରୀର ଗୌରବ ସତୀତ୍ୱ ରକ୍ଷା ପାଇଁ ନିଜର ଜୀବନ ଉତ୍ସର୍ଗ କରିଛି ତାହା ଏକ ମର୍ମାନ୍ତିକ ଓ କାରୁଣ୍ୟ ଭରା ଦୃଶ୍ୟ । ଏହା ଏକ ବିୟୋଗାତ୍ମକ ନାଟକ । ଅପର ପକ୍ଷରେ ପ୍ରୀତି ତାଙ୍କର ତୃତୀୟ ସାମାଜିକ ନାଟକ । ପ୍ରୀତି ବା ପ୍ରଣୟ ପାଇଁ ଦୁଇଟି ପ୍ରାଣ ଅଙ୍ଗୀକାର ବଦ୍ଧ ହେଲେ ଉଚ୍ଚ ନିଚ, ଛୁଆଁ ଅଛୁଆଁ ଏବଂ ଯୌତୁକର ସମସ୍ୟା ସେଠାରେ ବାଧା ବନ୍ଧନ ସୃଷ୍ଟି କରିପାରେ ନାହିଁ । ଏହି ନାଟକରେ ନାୟିକା ସୁମତୀ ଏବଂ ନାୟକ ଜେନାମଣି ସାମନ୍ତ ରାୟଙ୍କ ଜୀବନରେ ତାହାହିଁ ଘଟିଛି । ଦୁଇଟି ଯାକ ନାଟକରେ ଚରିତ୍ରିକ ବିଶ୍ଳେଷଣ ଏବଂ ମାନସିକ ଦ୍ୱନ୍ଦ୍ୱ ଅତି ଉନ୍ନତ ଏବଂ ଉଲ୍ଲେଖନୀୟ । ପାତ୍ରାଭିମୁଖୀ ସଂଳାପର ମଧ୍ୟ ବୈଚିତ୍ର୍ୟତା ରହିଛି । ହିନ୍ଦି ରାଗ ରାଗିଣୀର ବ୍ୟବହାର ନାଟକରେ ପ୍ରଦତ୍ତ ଭଜନଗୁଡ଼ିକରେ ମଧ୍ୟ ସୁସ୍ପଷ୍ଟ ।

ନାଟକ ଏକ ଗଣତାନ୍ତ୍ରିକ କଳା । ସାମାଜିକ ରୁଚି ବଦଳରେ ନାଟକ ତାର ମୋଡ଼ ବଦଳାଏ । ସମାଜ ସଚେତନ ସ୍ରଷ୍ଟା ସମୟର ଆବଶ୍ୟକତାକୁ ଅନୁଭବ କରି ନାଟକର ବିଷୟ ବସ୍ତୁ ଗ୍ରହଣ କରେ । ସମାଜରେ ଆଲୋଡ଼ନ ଓ ସଂସ୍କାର ଆଣେ । ଯେଉଁଥିପାଇଁ କୁହାଯାଏ – **Drama is a copy of life, a mirror of customs–a reflection of truth.** ଜଗନମୋହନ ଲାଲ ତାହାହିଁ କରିଛନ୍ତି । ଅଭିଜ୍ଞ ବିବେକି ଭବିଷ୍ୟତ ଦ୍ରଷ୍ଟା ଜଗନମୋହନ ଲାଲ ସଂସ୍କାର ପାଇଁ, ନୀତିର ସୁରକ୍ଷା ପାଇଁ ସେ ସମସ୍ତଙ୍କୁ ସଚେତନ କରିଛନ୍ତି । ତାଙ୍କ ସମୟର ଅନ୍ୟ ନାଟ୍ୟକାରମାନେ ଯାହା କରିବାକୁ ସକ୍ଷମ ହୋଇପାରି ନାହାନ୍ତି ।

ଆଧୁନିକ ଓଡ଼ିଆ ନାଟକର ଆଦିପର୍ବରେ ନାଟ୍ୟକାର ଜଗନମୋହନ ଲାଲ ତାଙ୍କ ନାଟକଗୁଡ଼ିକରେ ଜୀବନର ନୂତନ ବାର୍ତ୍ତା ଓ ମୂଲ୍ୟ ବୋଧ ଯେପରି ସୃଷ୍ଟି କରିଛନ୍ତି – ସାମାଜିକ ସଂସ୍କାର ଓ ଭବିଷ୍ୟତ ବାର୍ତ୍ତା ପ୍ରଦାନ କରିଛନ୍ତି, ମାତୃଭାଷା ଓ ସମାଜର ଅବହେଳିତ ବର୍ଗଙ୍କୁ ମଞ୍ଚ ଉପରେ ଯେଉଁ ନୂତନ ଜୀବନ ଦେଇଛନ୍ତି – ନୂତନ ସମ୍ଭାବନା ସୃଷ୍ଟି କରିଛନ୍ତି – ତାହା ଅତୁଳନୀୟ – ଆଦିସ୍ରଷ୍ଟା ପାଖରେ ହିଁ ତାହା କେବଳ ସମ୍ଭବ – ଯେଉଁଥି ପାଇଁ ଓଡ଼ିଆ ନାଟ୍ୟ ସାହିତ୍ୟର ଇତିହାସରେ ଲାଲା ମହାଶୟ ଆଜି ଆଦିନାଟ୍ୟକାର ଭାବରେ ପ୍ରତିଷ୍ଠିତ ।
ଗଭୀର

ସେହି କାଳଜୟୀ ସାରସ୍ୱତ ସାଧକ ଆଦି ନାଟ୍ୟକାର ଜଗନମୋହନ ଲାଲଙ୍କର ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ଗଭିର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁ ।

---

ମାହାଙ୍ଗା,
କଟକ ।

---

■ ଏକ ସ୍ୱାଧୀନ ରାଷ୍ଟ୍ରରେ ପ୍ରତ୍ୟେକେ ନିଜ ନିଜର ଶାସକ କର୍ତ୍ତା । ପ୍ରତ୍ୟେକେ ନିଜ ନିଜକୁ ଏଭଳି ଭାବେ ଶାସନ କରନ୍ତି ଯେପରିକି ପଡୋଶୀଙ୍କ ପ୍ରତି କୌଣସି ପ୍ରତିବନ୍ଧକ ସୃଷ୍ଟି ହୁଏ ନାହିଁ ।

**–ଗାନ୍ଧିଜୀ**

# ଓଡ଼ିଶା ହସ୍ତଶିଳ୍ପର ପ୍ରସାର ଓ ପ୍ରଚାରରେ ହସ୍ତଶିଳ୍ପ ନିଗମର ଭୂମିକା

ତ୍ରିଲୋଚନ ପ୍ରଧାନ

ଜାତୀୟ ସ୍ତରରେ ହେଉ ଅବା ଆନ୍ତର୍ଜାତୀୟ ସ୍ତରରେ ହେଉ, ଓଡ଼ିଶା କହିଲେ, ଜଣେ ପର୍ଯ୍ୟଟକର ମାନସ ଚକ୍ଷୁରେ ପ୍ରଥମେ ଆସେ ପୁରୀର ଶ୍ରୀମନ୍ଦିର ଓ କୋଣାର୍କର ସୂର୍ଯ୍ୟ ମନ୍ଦିର। ଏହି ମନ୍ଦିର ଦ୍ୱୟର ସ୍ଥାପତ୍ୟକଳା ନିତ୍ୟ ନୂତନ। ଓଡ଼ିଶାରେ ପର୍ଯ୍ୟଟକର ପରବର୍ତ୍ତୀ ଆକର୍ଷଣ ଓଡ଼ିଶାର ହସ୍ତଶିଳ୍ପ। କଳିଙ୍ଗର ବିଶୁ ମହାରଣା ବା ଧର୍ମା ଆଜି ଓଡ଼ିଶା ମାଟିରେ ନାହାନ୍ତି ସତ, ମାତ୍ର ତାଙ୍କରି ଦାୟାଦମାନଙ୍କ ନିପୁଣ ହାତରେ ଓଡ଼ିଶା ଆଜି ଗୌରବାନ୍ୱିତ।

ପଥର ଖୋଦେଇ ମୂର୍ତ୍ତି ହେଉ ବା ହସ୍ତତନ୍ତ ଶାଢୀ ହେଉ, ପିପିଲିର ଚାନ୍ଦୁଆ ହେଉ ଅବା ଯେ କୌଣସି ହସ୍ତଶିଳ୍ପ ହେଉ, ଉପରୋକ୍ତ ମହାନ୍ କୀର୍ତ୍ତିଦ୍ୱୟର ସୂଚନା ଓ ସଙ୍କେତ ସବୁଠି ପରିସ୍ଫୁଟ। ଓଡ଼ିଶାର ହସ୍ତଶିଳ୍ପ ଓଡ଼ିଶା ମାଟିରେ ଆଦୃତ ହେଉ ବା ନ ହେଉ, ଏହା ଦେଶ ବିଦେଶରେ ବେଶ୍ ସୁନାମର ଅଧିକାରୀ। ଓଡ଼ିଶାର ପଥର ମୂର୍ତ୍ତି, ଚାନ୍ଦୁଆ, ଶିଙ୍ଗକାମ, ରୂପା–ତାରକସି ଓ ହସ୍ତତନ୍ତ ଶାଢୀ ଭାରତର ବିଭିନ୍ନ ନଗରୀ ମହାନଗରୀ ତଥା ବିଦେଶରେ ଏକ ସ୍ୱତନ୍ତ୍ର ସ୍ଥାନ ସୃଷ୍ଟି କରିଛି।

ଓଡ଼ିଶା ହସ୍ତଶିଳ୍ପ ସମୂହର ସୁସଙ୍ଗଠିତ ଭାବରେ ପ୍ରସାର ଓ ପ୍ରଚାର ପାଇଁ ୧୯୫୯ ମସିହାରେ ଓଡ଼ିଶା ହସ୍ତଶିଳ୍ପ ନିଗମ ଗଠିତ ହୋଇଥିଲା। ସମବାୟ ଭିତ୍ତିରେ ଗଠିତ ଏହି ନିଗମ ବହୁ ଉତ୍ଥାନ ପତନ ଭିତରେ ନିଜର ଲକ୍ଷ୍ୟ ପଥରେ ଆଗେଇ ଚାଲିଛି। ଓଡ଼ିଶାର ହସ୍ତଶିଳ୍ପ ଓଡ଼ିଆ ଜାତିର ଗର୍ବ ଓ ଗୌରବ। ଓଡ଼ିଶାର ପାରମ୍ପରିକ କଳା ଓ ଭାସ୍କର୍ଯ୍ୟ, ଏହି ନିଗମର ବିକ୍ରୟ କେନ୍ଦ୍ର "ଉତ୍କଳିକା"ରେ ଆଜି ଜୀବନ୍ତ।

ଓଡ଼ିଶା ହସ୍ତଶିଳ୍ପର ପ୍ରସାର ଓ ପ୍ରଚାର ପାଇଁ କେବଳ ଓଡ଼ିଶା ନୁହେଁ, କଲିକତା, ଦିଲ୍ଲୀ, ମାଡ୍ରାସ, ବାଙ୍ଗାଲୋର ଓ ହାଇଦ୍ରାବାଦ ପରି ନଗରୀ – ମହାନଗରୀ ମାନଙ୍କରେ ଏହି ନିଗମର ୧୯ଟି ବିକ୍ରୟ କେନ୍ଦ୍ର "ଉତ୍କଳିକା" ରହିଅଛି। ଏତଦ୍ ବ୍ୟତୀତ ଏହି ନିଗମ ଭାରତର ବିଭିନ୍ନ ନଗରୀ ମହାନଗରୀ ମାନଙ୍କରେ ହସ୍ତଶିଳ୍ପ ମେଳାର ଆୟୋଜନ କରିଥାନ୍ତି। କେବଳ ସେତିକି ନୁହେଁ, ବିଦେଶରେ ଆନ୍ତର୍ଜାତିକ ସ୍ତରରେ ହେଉଥିବା ପ୍ରଦର୍ଶନୀରେ ଏହି ନିଗମ ଅଂଶ ଗ୍ରହଣ କରି ଓଡ଼ିଶା ହସ୍ତଶିଳ୍ପର ପ୍ରସାର ଓ ପ୍ରଚାର କରି ଆସୁଅଛି।

ବିଗତ ବର୍ଷମାନଙ୍କର ହିସାବ ଅନୁଧ୍ୟାନ କଲେ ଜଣାଯାଏ ଯେ ଏହି ନିଗମର କାର୍ଯ୍ୟଦକ୍ଷତା ବିଶେଷ ଭାବେ ବୃଦ୍ଧି ପାଇଛି। ୧୯୮୦–୮୧ ରେ ଏହି ନିଗମ ମାତ୍ର ୩୯·୪୪ ଲକ୍ଷ ଟଙ୍କାର ବ୍ୟବସାୟ କରିଥିବାବେଳେ ୧୯୯୦–୯୧ ରେ ୩୬୮·୪୦ ଲକ୍ଷ ଟଙ୍କାର ବ୍ୟବସାୟ କରିବାକୁ ସମର୍ଥ ହୋଇପାରିଛି। ଜାତୀୟ ଓ ଆନ୍ତର୍ଜାତିକ ସ୍ତରରେ ଓଡ଼ିଶା ହସ୍ତଶିଳ୍ପର ପ୍ରସାର ଓ ପ୍ରଚାର ପାଇଁ ବିଭିନ୍ନ ପଦକ୍ଷେପ ନିଆଯାଇଥିବାରୁ ଏହି ଅଭିବୃଦ୍ଧି ସମ୍ଭବ ହୋଇପାରିଛି। ଆନ୍ତର୍ଜାତିକ ସ୍ତରରେ ବ୍ୟାବସାୟିକ ଅଭିବୃଦ୍ଧି ପାଇଁ ଏହି ନିଗମ ବିଭିନ୍ନ ରପ୍ତାନୀ ଅନୁଷ୍ଠାନର ସଭ୍ୟ ହୋଇଛି।

ହସ୍ତଶିଳ୍ପର ପ୍ରସାର ଓ ପ୍ରଚାର ବ୍ୟତୀତ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ଆର୍ଥିକ ସହାୟତାରେ ଏହି ନିଗମ ରାଜ୍ୟର ବିଭିନ୍ନ ପ୍ରାନ୍ତରରେ ପଶମ ଗାଲିଚା ପ୍ରଶିକ୍ଷଣ କେନ୍ଦ୍ର ସ୍ଥାପନ କରି ପ୍ରଶିକ୍ଷଣ ଦେବାର ଦାୟିତ୍ୱ ବହନ କରିଛି। ଏତଦ୍ ବ୍ୟତୀତ ଏହି ନିଗମ କଟକ ଜିଲ୍ଲାର ଭଟିମୁଣ୍ଡା ଠାରେ କଂସା ପିତଳର ଏକ ସେବାକେନ୍ଦ୍ର ସ୍ଥାପନ କରୁଛନ୍ତି। ଏହି ନିଗମ କଞ୍ଚାମାଲ କେନ୍ଦ୍ର, ସାଧାରଣ ସେବାକେନ୍ଦ୍ର, ଧନ୍ଦା ଉନ୍ନୟନ କେନ୍ଦ୍ର, ପ୍ରଶିକ୍ଷଣ ତଥା ଉତ୍ପାଦନ କେନ୍ଦ୍ର ଗଠନ କରିବା ପରି ଅନେକ ଉନ୍ନୟନ କାର୍ଯ୍ୟକ୍ରମ ହାତକୁ ନେଇଛି। ୧୯୮୮–୮୯ ମସିହାରେ ଦୁର୍ଭିକ୍ଷ ପ୍ରପୀଡ଼ିତ କଳାକୁଶଳୀଙ୍କ ପ୍ରସ୍ତୁତ ହସ୍ତଶିଳ୍ପ ସାମଗ୍ରୀର ବିକ୍ରୟ ନିମନ୍ତେ ଏହି ନିଗମ ବିଭିନ୍ନ ପ୍ରକାର କାର୍ଯ୍ୟକ୍ରମ ଗ୍ରହଣ କରିଥିଲା। ରାଜ୍ୟ ସରକାରଙ୍କ କଳାପଟା ଯୋଜନା ମାଧ୍ୟମରେ ଏହି ନିଗମ ହସ୍ତଶିଳ୍ପ ସାମଗ୍ରୀର ବ୍ୟବସାୟ କରି ଆସୁଅଛି।

ଓଡ଼ିଶାରୁ ମିଳୁଥିବା ରଙ୍ଗ ପଥରର ସଦୁପଯୋଗ ପାଇଁ ଓଡ଼ିଶା ଖଣି ନିଗମରୁ ରଙ୍ଗ ପଥର ଆଣି ଏହି ନିଗମ କଳାହାଣ୍ଡି ଜିଲ୍ଲାର ଭବାନୀପାଟଣା ଠାରେ ଏକ ରଙ୍ଗ ପ୍ରଶିକ୍ଷଣ ତଥା ଉତ୍ପାଦନ କେନ୍ଦ୍ର ଓ ଭୁବନେଶ୍ୱରରେ ଏକ ଉତ୍ପାଦନ କେନ୍ଦ୍ର ପ୍ରତିଷ୍ଠା କରି ରଙ୍ଗ ବାଣିଜ୍ୟ କରୁଅଛି।

ଏସବୁ ସତ୍ତ୍ୱେ ଓଡ଼ିଶା ହସ୍ତଶିଳ୍ପର ପ୍ରସାର ଓ ପ୍ରଚାର ପାଇଁ ଆହୁରି ଅନେକ ପଦକ୍ଷେପ ଗ୍ରହଣ କରିବାର ଅଛି। ନିଗମତରଫରୁ ବର୍ତ୍ତମାନ ସୁଦ୍ଧା ଖୋଲା ଯାଇଥିବା ବିକ୍ରୟ କେନ୍ଦ୍ର ପର୍ଯ୍ୟାପ୍ତ ନୁହେଁ। ଭାରତର ବିଭିନ୍ନ ନଗରୀ, ମହାନଗରୀ ମାନଙ୍କରେ ଆହୁରି ବିକ୍ରୟ କେନ୍ଦ୍ର ଖୋଲାଯିବାର ଆବଶ୍ୟକତା ରହିଛି। ଓଡ଼ିଶା ବାହାରେ ଓଡ଼ିଶା ହସ୍ତଶିଳ୍ପର ଚାହିଦା ଅନୁଭବ କରି ନିଗମ ତରଫରୁ ବମ୍ବେ ଓ ପୁନାଠାରେ ଦୁଇଟି ବିକ୍ରୟ କେନ୍ଦ୍ର ଖୋଲାଯିବା ପାଇଁ ପ୍ରାରମ୍ଭିକ କାର୍ଯ୍ୟ ଆଗେଇ ଚାଲିଛି। ଆଗ୍ରା, ଲକ୍ଷ୍ନୌ, ବରୋଦା, ଅହମଦାବାଦ ଓ ଟାଟାନଗର ପରି ନଗରୀ ମହାନଗରୀ ମାନଙ୍କରେ ବିକ୍ରୟ କେନ୍ଦ୍ର ଖୋଲିବାର ଯଥେଷ୍ଟ ଆବଶ୍ୟକତା ରହିଛି।

ହସ୍ତଶିଳ୍ପର ପ୍ରସାର ଓ ପ୍ରଚାର ପାଇଁ ରାଜ୍ୟ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ସ୍ୱତନ୍ତ୍ର ଭାବେ ଏକ କୁଟୀର ଶିଳ୍ପ ନିର୍ଦ୍ଦେଶାଳୟ ଓ ରପ୍ତାନୀ ନିଗମ ଗଠନ କରିବାକୁ ସିଦ୍ଧାନ୍ତ ନେଇଥିବା ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ। ଏହାଦ୍ୱାରା ଓଡ଼ିଶା ହସ୍ତଶିଳ୍ପର ପ୍ରସାର ଓ ପ୍ରଚାର ଆହୁରି ଆଗେଇଯିବ, ଏଥିରେ ସନ୍ଦେହ ନାହିଁ।

ନିଗମର କାର୍ଯ୍ୟଦକ୍ଷତା ବୃଦ୍ଧି କରିବା ନିମନ୍ତେ ନିଗମର ଏକ ନିଜସ୍ୱ ଡିଜାଇନ ସେଣ୍ଟରର ଆବଶ୍ୟକତା ରହିଅଛି। ରାଜ୍ୟ ସରକାରଙ୍କ ଡିଜାଇନ୍ ସେଣ୍ଟରକୁ ନିଗମକୁ ହସ୍ତାନ୍ତର କରାଗଲେ ଏହି ଅସୁବିଧା ଦୂର ହେବା ସଙ୍ଗେ ସଙ୍ଗେ ନିଗମର ଏ ସଂକ୍ରାନ୍ତରେ ହେଉଥିବା ବ୍ୟୟଭାରକୁ ରୋକାଯାଇ ପାରନ୍ତା। ହସ୍ତଶିଳ୍ପର ବିକ୍ରୟ ବୃଦ୍ଧି ନିମନ୍ତେ ସରକାରୀ ବେସରକାରୀ କାର୍ଯ୍ୟାଳୟ ଓ ହୋଟେଲ ମାନଙ୍କରେ ହସ୍ତଶିଳ୍ପ ସଜାଇବା ପାଇଁ ସରକାରୀ ସ୍ତରରେ ନୀତି ନିର୍ଦ୍ଧାରଣ ହେବାର ଆବଶ୍ୟକତା ରହିଛି। ଏତଦ୍ ବ୍ୟତୀତ ହସ୍ତଶିଳ୍ପର କାର୍ଯ୍ୟାଳୟ ଉପଯୋଗୀ ମନୋହାରୀ ସାମଗ୍ରୀ ସରକାରୀ କାର୍ଯ୍ୟାଳୟରେ ବ୍ୟବହାର ହେବାପାଇଁ ନିୟମ ପ୍ରଣୟନ କରାଯିବାର ଆବଶ୍ୟକତା ଅଛି।

ଓଡ଼ିଶାର ହସ୍ତଶିଳ୍ପ ଓଡିଆ ଜାତିର ଗର୍ବ ଓ ଗୌରବ ହୋଇଥିବାରୁ ଏହାର ସୁପ୍ରସାର ନିମନ୍ତେ ନିଗମର କାର୍ଯ୍ୟ ଦକ୍ଷତାକୁ ଆହୁରି ସୁଦୂର ପ୍ରସାରିତ କରିବେ। ରାଜ୍ୟ ସରକାରଙ୍କ ପ୍ରୋତ୍ସାହନ, ଅଗଣିତ କଳାକୁଶଳୀଙ୍କ ସହଯୋଗ, ଗ୍ରାହକମାନଙ୍କର ପୃଷ୍ଠପୋଷକତା ଓ ନିଗମ କର୍ମକର୍ତ୍ତା ଏବଂ କର୍ମଚାରୀଙ୍କ ପରିଶ୍ରମ ନିଗମର କାର୍ଯ୍ୟ ଦକ୍ଷତାକୁ ସୁଦୂର ପ୍ରସାରିତ କରି ଏକ ମହାନ୍ ଐତିହ୍ୟ ଗଢ଼ି ତୋଳିବ, ଏଥିରେ ସନ୍ଦେହର ଅବକାଶ ନାହିଁ।

ଅଧ୍ୟକ୍ଷ,
ଓଡ଼ିଶା ରାଜ୍ୟ ସମବାୟ ହସ୍ତଶିଳ୍ପ ନିଗମ,
ଭୁବନେଶ୍ୱର।



ଭାରତର ପୂର୍ବତନ କେନ୍ଦ୍ର ମନ୍ତ୍ରୀ, ଡକ୍ଟର୍ କରଣ ସିଂହ ରାଜଭବନଠାରେ ରାଜ୍ୟପାଳ, ଶ୍ରୀ ଯଜ୍ଞଦତ୍ତ ଶର୍ମାଙ୍କୁ ସାକ୍ଷାତ କରୁଛନ୍ତି।

# ଧନ୍ୟ ଆଲୋ ବାଉରାଣୀ !

ରାଧାମୋହନ ଗଡ଼ନାୟକ

ବୀର ହରେକୃଷ୍ଣପୁର ଶାସନ ଭିତରେ
ନାରିକେଳ ବଗିଚାର ଗୋହିରୀ ପଥରେ
କଳରବ ଜାଗିଅଛି ଆଜି,
ବନ୍ଧ ବାଡ଼ ସତେ ଯେମନ୍ତେ
ଯାଇଅଛି ଭାଜି ।

ଆଖପାଖ ଶାସନରୁ
ଗାଁଗଣ୍ଡା ଅଞ୍ଚଳରୁ
ଛୁଟିଛନ୍ତି ବିପୁଳ ଜନତା
ଅପୂରୁବ ମୁହୂର୍ତ୍ତ ଏ ଅପୂରୁବ ଦୃଶ୍ୟ
ଅପୂରୁବ ସୌଭାଗ୍ୟର କଥା ।

ଗାନ୍ଧୀ ନିଜେ କରିଛନ୍ତି
ଶୁଭ ଶିରୀ ଭରିଛନ୍ତି
ଚତୁର୍ଦ୍ଦିଗେ ଗାଁରେ ଗାଁରେ,
ବାଟେ ଘାଟେ
ଘରେ ଘରେ
ଦୁଆରେ, ଦୁଆରେ ।

ବାଳ ବୃଦ୍ଧ ଟୋକା ଯୁବା ଦଳଙ୍କ କଣ୍ଠରୁ
ଜୟ ଗାନ୍ଧୀ,
ଜୟ ଗାନ୍ଧୀ,
ଜୟରବ ବାରବାର ଉଠୁଛି ନିନାଦି ।

ମାଆ ବୋହୂମାନଙ୍କ ମୁଖରୁ
ହୁଳି ହୁଳହୁଳି
ମହର୍ଷିରୁ ପଡ଼ୁଛି ଉଚ୍ଛୁଳି ।

ଦୂର ଆଉ ନିକଟରୁ
ଆସୁଛନ୍ତି କେତେ ନରନାରୀ,
ଘୁଲି ଘୁଲି
କଣଶୁଣା ପଦା କିଆରୀରେ ।

ଆଉ କେତେ ଶଗଡ଼ ଗାଡ଼ିରେ,
ଆଉ କେତେ ଦୋଳା, ସୁଆରୀରେ ।

ବାପା, ଦାଦା, ଅଜାଙ୍କର — କାନ୍ଧପରେ ବସି
ଆସୁଛନ୍ତି କେତେ ପିଲାପିଲୀ,
ଅବାରିତ କଣ୍ଠେ ତୋଳି
ଆନନ୍ଦର ହାଲ ହୋଳି ।
ଅପୂରୁବ, ଅଭିନବ ଶିରୀ ।

ହରିଜନ ପାଣ୍ଠି ଲାଗି ଗାନ୍ଧୀ ବାବା
ମାଗୁଛନ୍ତି ଭିକ୍ଷା
କେ ଦେଉଛି ସୁନା, ରୁପା, ଅଳଙ୍କାର,
କେ ଦେଉଛି ଟଙ୍କା ବା ପଇସା ।
ବାଉରାଣୀ ବୁଢ଼ୀଟିଏ ବାଉରି ସାହିର
ଭଙ୍ଗୀ ଶୁଳିଆର,
ପଚାଶରୁ ବୋଧହୁଏ ବେଶୀ ହେବ
ବୟସ ତାହାର ।

ହସ ହସ ମୁହେଁ ଯାଇ ଠିଆ ହେଲା
ଗାନ୍ଧୀଙ୍କର ଦୃଷ୍ଟି — ସାମନାରେ,
ହସଟାଏ ହସିଦେଇ ମହାତ୍ମା
ହାତ ପାତି ମାଗିଲେ ତାହାରେ ।

କଅଣ ତାହାର ଅଛି,
ଟଙ୍କା କି ପଇସା କିଛି,
ସାଙ୍ଗେ ସାଙ୍ଗେ ଦେବ ସେ କଅଣ ?
ମନେ ପଡ଼ିଗଲା ତା'ର
ଶରଧାର ଅଳଙ୍କାର
ନାକର ଭୂଷଣ ।

ତିରିଶ ବର୍ଷର ତଳେ
ପିନ୍ଧିଥିଲା ସରାଗରେ

ଯାହା ସେଇ ଗୁଣାଟିକି ବୁଢ଼ୀ,
ଟାଣି ଦେଲା ଖୁବ୍ ତରତରେ ।

ନାକ ଚିରି ହୋଇଗଲା
ହାଇରେ କଅଣ ଭଲା !
ଗଣ୍ଡି–ଜରଜର ସେଇ ଗହଣାଟି
ସଁପିଦେଲା ଗାନ୍ଧୀଙ୍କ ହସ୍ତରେ ।

ରକ୍ତ ଧାର ଧାର ହୋଇ
ଟୋକିକି ପଡ଼ିଲା ବୋହି,
ନିଗିଡ଼ି ପଡ଼ିଲା ତାର
ଓଠରେ, ପାଟିରେ,
ବାକି ଆଉ କେତେ ଟୋପା
ପଡ଼ିଗଲା
ତଳେ ସେ ମାଟିରେ ।

ଗାନ୍ଧୀଙ୍କ ମୁହଁକୁ ସେଠି
ଚାହିଁଅଛି ବୁଢ଼ୀ
ବୁଢ଼ୀର ମୁହଁକୁ ଗାନ୍ଧୀ
ଚାହିଁଛନ୍ତି
ଅପୂର୍ବ ମାଧୁରୀ !
ଦୁହିଁଙ୍କ ମୁହଁକୁ ପୁଣି ବିସ୍ମୟରେ
ଚାହିଁଛନ୍ତି ଲୋକେ,
"ଧନ୍ୟ ଆଲୋ ବାଉରାଣୀ"
ଉଚ୍ଚାରଣ କରୁଛନ୍ତି ଥୋକେ ।

(ମହାତ୍ମା ଗାନ୍ଧୀଙ୍କର ଓଡ଼ିଶା ଶୁଭାଗମନରେ ୧୯୬୯ରେ ପ୍ରକାଶିତ **"ପଥେ ପଥେ** ପଦରେଣୁ"ର ଗୋଟିଏ ଲେଖାରୁ କଥାବସ୍ତୁ ଗୃହୀତ ।)

**—ଲେଖକ**

**ବାଣୀ ବିତାନ,**
**ପୋ: ଅ: ଅନଗୁଳ ।**

---

ବିବେକାନନ୍ଦ କହିଛନ୍ତି ଯେ ପ୍ରତ୍ୟେକ ମନୁଷ୍ୟ ସତ୍ତାରେ ବ୍ରହ୍ମଶକ୍ତି ବିଦ୍ୟମାନ ଏବଂ ନାରାୟଣ ଦରିଦ୍ର ଓ ବଞ୍ଚିତ ରୂପରେ ଆମ୍ଭମାନଙ୍କର ସେବା ପ୍ରତ୍ୟାଶା କରୁଅଛନ୍ତି । କି ଅପୂର୍ବ ବାଣୀ ! ଏହା ମାନବର ଚେତନା ରାଜ୍ୟରେ ତାହାର ସ୍ୱାର୍ଥର କ୍ଷୁଦ୍ରତା ଓ ବନ୍ଧନରୁ ଅନନ୍ତ ମୁକ୍ତିର ପଥକୁ ଆଲୋକିତ କରୁଅଛି । ଏହା କୌଣସି ବିଶେଷ ଆଚରଣ ବିଧିର ନୈତିକ ନିର୍ଦ୍ଦେଶ ନୁହେଁ, ଆମ୍ଭମାନଙ୍କର ଆଚରଣକୁ ଶୃଙ୍ଖଳିତ କରିବା ଉଦ୍ଦେଶ୍ୟରେ ଏହା କୌଣସି ସଂକୀର୍ଣ୍ଣ ବିଧାନ ନୁହେଁ । ଏହି ବାଣୀରେ ଅସ୍ପୃଶ୍ୟତା ପ୍ରଥାର ବିରୋଧ ନିହିତ ରହିଅଛି ।

ଏହି ବିରୋଧ କୌଣସି ରାଜନୈତିକ ପ୍ରଯୋଜନ ଉପରେ ପ୍ରତିଷ୍ଠିତ ନୁହେଁ, ମାତ୍ର ଏହି ବାଣୀ ଓ ମନୁଷ୍ୟର ମାନବିକତା ପ୍ରତି ଅପମାନ ପରସ୍ପର ବିରୋଧୀ, କାରଣ ଅସ୍ପୃଶ୍ୟତା ପ୍ରଥା ଦ୍ୱାରା ଆମ୍ଭେମାନେ ପ୍ରତ୍ୟେକ ନିଜକୁ ନିଜେ ଅପମାନିତ କରିଅଛୁ ।

ବିବେକାନନ୍ଦଙ୍କର ଏହି ବାଣୀ ପୂର୍ଣ୍ଣ-ମାନବିକତାରେ ଜାଗ୍ରତ ହେବାପାଇଁ ଏକ ଆହ୍ୱାନ । ଏହା ଦେଶର ଯୁବକବୃନ୍ଦଙ୍କୁ କର୍ମ, ତ୍ୟାଗ ଓ ଆମୋତ୍ସର୍ଗ ମଧ୍ୟ ଦେଇ ବିଭିନ୍ନ ପଥରେ ମୁକ୍ତି ଅଭିମୁଖରେ ପରିଚାଳିତ କରିଅଛି ।

—ରବୀନ୍ଦ୍ର ନାଥ ଠାକୁର

# ପଶୁ ପାଳନ ଓ ଗୋ-ସମ୍ପଦର ବିକାଶ

ସଂକଳନ : ସୂଚନା ଓ ଲୋକ ସମ୍ପର୍କ ବିଭାଗ

ପଶୁ ପାଳନ ଓ ଦୁଗ୍ଧ ଉତ୍ପାଦନ ରାଜ୍ୟର ସାମାଜିକ ଓ ଅର୍ଥନୈତିକ ବ୍ୟବସ୍ଥାର ଉନ୍ନତି କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ଗରିବ କୃଷୀ ଓ ବେକାର ଯୁବକମାନଙ୍କୁ ଉନ୍ନତ ଧରଣର ପଶୁ ଓ କୁକୁଡ଼ା ଯୋଗାଇ ଦେଇ ଦୁଗ୍ଧ ମାଂସ ଓ ଅଣ୍ଡା ଉତ୍ପାଦନ ବୃଦ୍ଧି କରିବା ହେଉଛି ଏହି କାର୍ଯ୍ୟକ୍ରମର ଆଭିମୁଖ୍ୟ । ଏହାଫଳରେ ସମ୍ପୃକ୍ତ ବ୍ୟକ୍ତିମାନେ ନିଜ ନିଜର ଜୀବିକା ନିର୍ବାହ କରିବା ଦିଗରେ ଉପକୃତ ହୋଇ ପାରିବେ ।

ଉକ୍ତ ଆଭିମୁଖ୍ୟକୁ ଭିତ୍ତି କରି ପଶୁପାଳନ ବିଭାଗର କାର୍ଯ୍ୟକଳାପ ନିମ୍ନରେ ପ୍ରଦତ୍ତ ହେଲା :

କୃଷୀମାନେ ପାଳିଥିବା ପଶୁ ସମ୍ପଦକୁ ରୋଗମୁକ୍ତ ରଖିବା ଓ ସେମାନଙ୍କ ଲାଗି ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ କରିବା ସଙ୍ଗେ ସଙ୍ଗେ ଆବଶ୍ୟକ ସ୍ଥଳେ ବୈଷୟିକ ସାହାଯ୍ୟ ଯୋଗାଇ ଦେବା ନିମନ୍ତେ ସମଗ୍ର ରାଜ୍ୟରେ ୬୧୪ଟି ପଶୁ ଚିକିତ୍ସାଳୟ ଓ ୨,୮୧୬ଟି ପଶୁ ଚିକିତ୍ସା କେନ୍ଦ୍ର କାର୍ଯ୍ୟ କରୁଛି ।

ଉନ୍ନତ ଧରଣର ପଶୁମାନଙ୍କୁ ରୋଗମୁକ୍ତ ରଖିବା ଲାଗି ଆବଶ୍ୟକୀୟ ପଦକ୍ଷେପ ନିଆଯାଇଛି ଓ ୧୯୯୦-୯୧ ମସିହାରେ ୧,୦୬,୬୨୯ ପଶୁଙ୍କୁ ପ୍ରତିଷେଧକ ଟୀକା ପ୍ରଦାନ କରାଯାଇଛି ।

ଏକ କେନ୍ଦ୍ରୀୟ ପ୍ରକଳ୍ପ ଅନୁଯାୟୀ କଟକ-ଭୁବନେଶ୍ୱର ସହରର ଗୃହପାଳିତ କୁକୁରଗୁଡ଼ିକୁ ରୋଗରୁ ରକ୍ଷା କରିବା ଲାଗି ନିୟମିତ ଭାବେ ଟୀକା ପ୍ରଦାନ କରାଯାଉଛି ଓ ଏଭଳି ବ୍ୟବସ୍ଥାକୁ ରାଜ୍ୟର ଅନ୍ୟ ସହରଗୁଡ଼ିକୁ ସମ୍ପ୍ରସାରଣ କରିବା ଲାଗି ବିହିତ ପଦକ୍ଷେପମାନ ନିଆଯାଉଛି ।

କେନ୍ଦ୍ରୀୟ ଯୋଜନାର ଏକ ପ୍ରକଳ୍ପ ଅନୁଯାୟୀ ଯେପରି ଆଗାମୀ ୬ ବର୍ଷ ମଧ୍ୟରେ ରାଜ୍ୟର ପଶୁ ସମ୍ପଦକୁ ରୋଗ ଦାଉରୁ ରକ୍ଷା କରାଯାଇ ପାରିବ, ସେଥି ନିମନ୍ତେ ବିହିତ ପଦକ୍ଷେପମାନ ଗ୍ରହଣ କରାଯାଉଛି । ଚଳିତ ବର୍ଷ ମଧ୍ୟରେ ୬,୫୫,୬୬୨ ସଂଖ୍ୟକ ପଶୁଙ୍କୁ ରୋଗ ଆକ୍ରମଣରୁ ରକ୍ଷା କରାଯାଇ ପାରିଛି ।

ରାଜ୍ୟର ୩୨୩୧ ପଶୁ ଚିକିତ୍ସାଳୟଗୁଡ଼ିକରେ ୬୨·୮୦ ଲକ୍ଷ ରୁଗ୍ଣ ପଶୁଙ୍କର ଚିକିତ୍ସା କରାଯାଇଛି । ଏହା ବ୍ୟତୀତ ୩୬·୪୦ ଲକ୍ଷ ପଶୁଙ୍କୁ ଟୀକା ପ୍ରଦାନ କରାଯାଇଛି ।

ଓଡ଼ିଶା ବାଇଓଲୋଜିକାଲ ପ୍ରଡକ୍ଟ ପ୍ରତିଷ୍ଠାନ ହେଉଛି ରାଜ୍ୟର ଏକମାତ୍ର ଟୀକା ଉତ୍ପାଦନକାରୀ ପ୍ରତିଷ୍ଠାନ । ଏହି ଅନୁଷ୍ଠାନକୁ ଆବଶ୍ୟକୀୟ ଉନ୍ନତ ଯନ୍ତ୍ରପାତି ଯୋଗାଇ ଦିଆଯାଇ ଉକ୍ତ ପ୍ରତିଷ୍ଠାନକୁ ଅଧିକ ଉତ୍ପାଦନକ୍ଷମ କରାଯାଇ, ୧୯୯୦-୯୧ ମଧ୍ୟରେ ୮୩,୧୪,୮୯୫ ଟୀକା ଉକ୍ତ ପ୍ରତିଷ୍ଠାନ ତରଫରୁ ଉତ୍ପାଦନ କରାଯାଇ ପାରିଛି ।

କଂସେଇଖାନାଗୁଡ଼ିକର ଆଧୁନିକୀକରଣ କରିବା ଲାଗି ଏକ ନୂତନ କାର୍ଯ୍ୟକ୍ରମ ଗ୍ରହଣ କରାଯିବା ପାଇଁ ପ୍ରସ୍ତାବ ରହିଛି ।

## ପଶୁ ସମ୍ପଦର ବିକାଶ :

ଉନ୍ନତ ପ୍ରଜନନ ପ୍ରଣାଳୀରେ ଦେଶୀ ଗାଈମାନଙ୍କଠାରୁ ଉନ୍ନତ ଧରଣର ବାଛୁରୀ ପ୍ରଜନନ ନିମନ୍ତେ ସମ୍ପୃକ୍ତ ବିଭାଗ ତରଫରୁ ବ୍ୟାପକ କାର୍ଯ୍ୟକ୍ରମମାନ ହାତକୁ ନିଆଯାଇଛି ।

ସମଗ୍ର ରାଜ୍ୟରେ ରହିଥିବା ୧,୫୫୬ ଗୋଟି କୃତ୍ରିମ ପ୍ରଜନନ କେନ୍ଦ୍ର ମଧ୍ୟରୁ ୧,୩୧୦ କେନ୍ଦ୍ରକୁ ହିମାଙ୍କ ପ୍ରଜନନ କେନ୍ଦ୍ର ରୂପେ ପରିଣତ କରାଯାଇଛି ଓ ଅବଶିଷ୍ଟ ୧୪୬ କେନ୍ଦ୍ରକୁ ୧୯୯୧-୯୨ ସୁଦ୍ଧା ହିମାଙ୍କ ପ୍ରଜନନ କେନ୍ଦ୍ର ରୂପେ ପରିଣତ କରିବାର ପ୍ରସ୍ତାବ ରହିଛି । ଅଷ୍ଟମ ଯୋଜନା କାଳ ମଧ୍ୟରେ ପର୍ଯ୍ୟାୟକ୍ରମେ ହିମାଙ୍କ ପ୍ରଜନନ କୌଶଳକୁ ଅବଶିଷ୍ଟ ପଶୁ ଚିକିତ୍ସାଳୟରେ କାର୍ଯ୍ୟକାରୀ କରାଯିବା ପାଇଁ ସିଦ୍ଧାନ୍ତ ନିଆଯାଇଛି ।

କେନ୍ଦ୍ରୀୟ ଯୋଜନା ପ୍ରକଳ୍ପ ଅନୁଯାୟୀ ବାଲେଶ୍ୱର, ମୟୂରଭଞ୍ଜ ଓ ସୁନ୍ଦରଗଡ଼ ଜିଲ୍ଲାଗୁଡ଼ିକରେ ଏହି ହିମାଙ୍କ ପ୍ରଜନନ କୌଶଳକୁ କାର୍ଯ୍ୟକାରୀ କରିବା ଲାଗି ବ୍ୟବସ୍ଥା ଗ୍ରହଣ କରାଯାଇଛି ।

ରାଜ୍ୟରେ ରହିଥିବା ପାଞ୍ଚ ଗୋଟି ଫ୍ରୋଜେନ୍ ସିମେନ୍ ବ୍ୟାଙ୍କ ବ୍ୟତୀତ ଖୋର୍ଦ୍ଧା, ବାଲେଶ୍ୱର, ବ୍ରହ୍ମପୁରଠାରେ ଆଉ ତିନି ଗୋଟି

ସେହିଭଳି ବ୍ୟାଙ୍କ୍ ପ୍ରତିଷ୍ଠା କରିବା ଲାଗି ପଦକ୍ଷେପ ଗ୍ରହଣ କରାଯାଇଛି ।

ଉନ୍ନତ, ଷଣ୍ଢ ଓ ସେଗୁଡ଼ିକ ଦ୍ୱାରା ଉତ୍ପନ୍ନ ବାଛୁରୀଗୁଡ଼ିକର ଗୁଣାତ୍ମକ ମାନ ନିରୀକ୍ଷଣ କରିବା ଲାଗି କେନ୍ଦ୍ରୀୟ ଯୋଜନା ଅନୁଯାୟୀ କଟକଠାରେ ଏକ ଫ୍ରୋଜେନ୍‌ସ ନିରୀକ୍ଷଣ ପ୍ରକଳ୍ପ କାର୍ଯ୍ୟକାରୀ ହେଉଛି ।

ଉନ୍ନତ ଷଣ୍ଢ ଗୁଡ଼ିକୁ ବିଭିନ୍ନ ପ୍ରାକୃତିକ ଉତ୍ପାଦନ ଅଞ୍ଚଳଗୁଡ଼ିକରେ ବଣ୍ଟନ ଲାଗି ରାଜ୍ୟରେ ୧୨ ଗୋଟି ପଶୁ ଉତ୍ପାଦନ ଫାର୍ମ କାର୍ଯ୍ୟ କରୁଛି ।

"ଉତ୍କଳ ଗୋ-ମଙ୍ଗଳ ସମିତି" ତରଫରୁ ୧୬୨ଟି ଉନ୍ନତ ଧରଣର ଷଣ୍ଢ ରାଜ୍ୟରେ ଦୁର୍ଗମ ଅଞ୍ଚଳକୁ ପଠାଯାଇଛି । ଚଳିତ ବର୍ଷ ମଧ୍ୟରେ ଆଉ ୫୦୦ ଗୋଟି ଉନ୍ନତ ଧରଣର ଷଣ୍ଢଙ୍କୁ ପ୍ରାକୃତିକ ପଶୁ ଉତ୍ପାଦନ କେନ୍ଦ୍ରଗୁଡ଼ିକୁ ପଠାଯିବା ଲାଗି ବ୍ୟବସ୍ଥା କରାଯାଉଛି । ଉନ୍ନତ ଧରଣର ମଇଁଷି ଉତ୍ପାଦନ କରିବା ଲାଗି ଚିଲିକା ଅଞ୍ଚଳକୁ ୧୬ ଗୋଟି ପୋଡ଼ ପଠାଯାଇଛି । ୧୯୯୦-୯୧ ମସିହା ମଧ୍ୟରେ ୮,୩୪୬ ପ୍ରାକୃତିକ ବ୍ୟବସ୍ଥା ଜରିଆରେ ୪,୦୭୫ ଗୋଟି ବାଛୁରୀ ଜନ୍ମଲାଭ କରିଛନ୍ତି ।

ବାଛୁରୀ ପାଳନ କାର୍ଯ୍ୟକ୍ରମ ଅନୁଯାୟୀ ଉନ୍ନତ ଧରଣର ମାଈ ବାଛୁରୀ ଓ ୬୦୦ ଗୋଟି ନୂଆ ବାଛୁରୀମାନଙ୍କୁ ଖାଦ୍ୟ ପଦାର୍ଥ ଯୋଗାଣ କ୍ଷେତ୍ରରେ ସୁବିଧା ସୁଯୋଗ ଯୋଗାଇ ଦିଆଯାଇଛି ଏବଂ ୫,୦୦୦ ଛଡ଼ା ଓ ୬୦୦ ଗୋଟି ନୂତନ ବାଛୁରୀଙ୍କୁ ୪ ମାସରୁ ୩୨ ମାସ ପର୍ଯ୍ୟନ୍ତ ଖାଦ୍ୟ ପଦାର୍ଥ ଯୋଗାଇ ଦେବା ନିମନ୍ତେ ବିଶେଷ ପଦକ୍ଷେପମାନ ଗ୍ରହଣ କରାଯାଇଛି ।

ଚଳିତ ଆର୍ଥିକ ବର୍ଷ ମଧ୍ୟରେ ଉନ୍ନତ ଧରଣର ପଶୁ ସମ୍ପଦ ସୃଷ୍ଟି କରିବା, ଦୁଗ୍ଧ ବିକ୍ରୟ ପାଇଁ ବଜାର ସୃଷ୍ଟି ଲାଗି ଗଞ୍ଜାମ ଜିଲ୍ଲାରେ "ଇଣ୍ଡୋ-ସୁଇସ୍ ପ୍ରକଳ୍ପ" ନାମକ ଏକ ନୂତନ ପରିକଳ୍ପନା କାର୍ଯ୍ୟକାରୀ ହେବାକୁ ଯାଉଛି ।

କୋରାପୁଟ ଜିଲ୍ଲାରେ ପଶୁ ସମ୍ପଦର ଉନ୍ନତି ବିଧାନ କରିବା ସଙ୍ଗେ ସଙ୍ଗେ ଉତ୍ପାଦିତ ଦୁଗ୍ଧର ବିକ୍ରିବଟା ବ୍ୟବସ୍ଥାକୁ ସୁଗମ କରିବା ଲାଗି "ଇଣ୍ଡୋ-ଡାନିସ୍" ନାମକ ଏକ ନୂତନ ପରିକଳ୍ପନା ପ୍ରକଳ୍ପ କାର୍ଯ୍ୟକାରୀ କରାଯିବ ।

## 'ଘାସ' ଓ ଖାଦ୍ୟ ଉତ୍ପାଦନ ବ୍ୟବସ୍ଥା :

ରାଜ୍ୟରେ ଅଦ୍ୟାବଧି ୬ ଗୋଟି ଘାସ ବିହନ ଉତ୍ପାଦନ ଫାର୍ମ ରହିଛି । ୧୯୯୦-୯୧ ମସିହା ମଧ୍ୟରେ ୧୬୧.୭୩ କୁଇଣ୍ଟାଲ 'ଘାସ' ବିହନ ଉତ୍ପାଦନ କରାଯାଇ ମାଗଣାରେ ଚାଷୀମାନଙ୍କୁ ଯୋଗାଇ ଦିଆଯାଇଛି ।

୧୯୯୦-୯୧ ମସିହାରେ ଚାଷୀମାନେ ଯେପରି ନିଜ ଜମିରେ ଘାସ ଚାଷ କରିପାରିବେ ସେଥିପାଇଁ ସେମାନଙ୍କୁ ମାଗଣାରେ ୧୧,୪୯୧ ଗୋଟି ଛୋଟ ସରଞ୍ଜାମ ବାକ୍ସ ଯୋଗାଇ ଦିଆଯାଇଛି ।

ଘାସ ଉତ୍ପାଦନ ନିମନ୍ତେ ସମ୍ପୃକ୍ତ ଚାଷୀମାନଙ୍କୁ ତାଲିମ୍ ଦେବା ଲାଗି ରାଜ୍ୟରେ ବିଭିନ୍ନ ସ୍ଥାନମାନଙ୍କରେ ୧୨୪ ଗୋଟି ତାଲିମ୍ ଶିବିର ଅନୁଷ୍ଠିତ ହୋଇଯାଇଛି ।

## କୁକୁଡ଼ା ପାଳନ ଉନ୍ନୟନ ବ୍ୟବସ୍ଥା :

ସୁନ୍ଦରଗଡ଼ସ୍ଥିତ କୁକୁଡ଼ା ଉନ୍ନୟନ କେନ୍ଦ୍ର ଓ ଖପୁରିଆଠାରେ ଥିବା ବତକ ପାଳନ କେନ୍ଦ୍ରକୁ ଅଧିକ ଉତ୍ପାଦନକ୍ଷମ କରାଯାଇ ରାଜ୍ୟର ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମ ଯୋଜନା ଅନୁଯାୟୀ ଆଗ୍ରହୀ କୁକୁଡ଼ା ଚାଷୀମାନଙ୍କୁ ୨୦,୦୦୦ ଅଣ୍ଡା ଓ କୁକୁଡ଼ା ଛୁଆ ଏବଂ ୫,୦୦୦ ବତକ ଛୁଆ ଯୋଗାଇ ଦେବାର ବ୍ୟବସ୍ଥା କରାଯାଇଛି ।

୧,୦୦୦ ରୁ ୫,୦୦୦ ପର୍ଯ୍ୟନ୍ତ ଛୋଟ କୁକୁଡ଼ା ଛୁଆ ପାଳନ କରିବା ଲାଗି କୁକୁଡ଼ା ଚାଷୀମାନଙ୍କୁ କମ୍ ସୁଧରେ ଋଣ ଯୋଗାଇ ଦିଆ ଯାଉଛି । ଏଥିଲାଗି ଚଳିତ ବର୍ଷ ବଜେଟ୍‌ରେ ୨୫ ଲକ୍ଷ ଟଙ୍କାର ବ୍ୟୟ ଅଟକଳ କରାଯାଇଛି ଏବଂ ୧୯୯୧-୯୨ ମସିହା ଲାଗି ୩୭ ଲକ୍ଷ ଟଙ୍କାର ପ୍ରସ୍ତାବ ରହିଛି । ଓପଲ୍‌ଫେଡ୍ ଦ୍ୱାରା ଏହି କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରାଯାଉଛି ।

ସରକାରଙ୍କ ସମ୍ପୃକ୍ତ ବିଭାଗ ଏବଂ ଓପଲ୍‌ଫେଡ୍ ଦ୍ୱାରା କୁକୁଡ଼ା ଚାଷୀ, ବିଭାଗୀୟ ପଦାଧିକାରୀ, ବେକାର ଯୁବକ ଏବଂ ଉଦ୍ୟୋଗୀମାନଙ୍କୁ କୁକୁଡ଼ା ପାଳନ ପରିଚାଳନାଗତ ସଂସ୍ଥା ଦ୍ୱାରା ତାଲିମ୍ ଦିଆଯାଉଛି ।

କେନ୍ଦ୍ର ଯୋଜନା ପରିକଳ୍ପନା ମାଧ୍ୟମରେ କୁକୁଡ଼ା ପାଳନ କାର୍ଯ୍ୟକ୍ରମ ଅବ୍ୟାହତ ରହିଛି ।

ଦ୍ୱିତୀୟ ଓ ତୃତୀୟ ପର୍ଯ୍ୟାୟରେ ଓମ୍‌ଫେଡ୍ ପ୍ରକଳ୍ପ କାର୍ଯ୍ୟକାରୀ ହେଉଥିବା ଜିଲ୍ଲାମାନଙ୍କରେ ଗୋ-ସମ୍ପଦର ବିକାଶ ଓ ଦୁଗ୍ଧ ବିକ୍ରୟ ନିମନ୍ତେ ଚଳିତ ଆର୍ଥିକ ବର୍ଷରେ ୧୨୪ ଲକ୍ଷ ଟଙ୍କା ଓମ୍‌ଫେଡ୍ ସଂସ୍ଥାକୁ ମଞ୍ଜୁର କରାଯାଇଛି ।

ଦୁଗ୍ଧ ସଂଘ ଦୁଗ୍ଧ ବିକ୍ରି ପାଇଁ ଓ ପରିଚାଳନାଗତ ରିହାତି ଲାଗି ଚଳିତ ବର୍ଷ ବଜେଟ୍‌ରେ ୨୬.୮୫ ଲକ୍ଷ ଟଙ୍କାର ଆର୍ଥିକ ସାହାଯ୍ୟ ଦେବାରେ ବ୍ୟବସ୍ଥା ହୋଇଛି ।

## ଅନ୍ୟାନ୍ୟ କାର୍ଯ୍ୟକ୍ରମ :

କେନ୍ଦ୍ରୀୟ ପ୍ରଯୋଜିତ କାର୍ଯ୍ୟକ୍ରମ ଅନୁଯାୟୀ ଏକ ସ୍ୱତନ୍ତ୍ର ପଶୁପାଳନ ଓ ପ୍ରଜନନ କାର୍ଯ୍ୟକ୍ରମ ମାଧ୍ୟମରେ ୨,୨୮୬ ସଂଖ୍ୟକ ଉନ୍ନତ ମାଈ ବାଛୁରୀ ବିଭିନ୍ନ ଜିଲ୍ଲା ଯଥା:-କଟକ, ପୁରୀ, ଢେଙ୍କାନାଳ, କେନ୍ଦୁଝର, ସମ୍ବଲପୁର, ବଲାଙ୍ଗୀର ଏବଂ କୋରାପୁଟ ଜିଲ୍ଲାମାନଙ୍କୁ ରିହାତି ଦରରେ ଯୋଗାଇ ଦିଆଯାଇଛି ଏବଂ

ବଲାଙ୍ଗୀର ଜିଲ୍ଲାରେ ୨୩୯ଟି ମେଣ୍ଢା ପାଳନ ୟୁନିଟ୍ ସ୍ଥାପନ କରାଯାଇଛି ।

ଦରିଦ୍ରତମ ପରିବାରର ଅର୍ଥନୈତିକ ଥଇଥାନ କାର୍ଯ୍ୟକ୍ରମ ଏବଂ ସମନ୍ୱିତ ଗ୍ରାମ୍ୟଉନ୍ନୟନ କାର୍ଯ୍ୟକ୍ରମ ଜରିଆରେ ଯଥାକ୍ରମେ ୨୪୦ଟି ଏବଂ ୧୯,୪୦୨ଟି ପରିବାର ଏପର୍ଯ୍ୟନ୍ତ ଉପକୃତ ହୋଇଛନ୍ତି । ସେମାନଙ୍କୁ ଗୋ–ପାଳନ, କୁକୁଡ଼ା ପାଳନ, ଛେଳି, ମେଣ୍ଢା ଏବଂ ଘୁଷୁରୀ ୟୁନିଟ୍ ଯୋଗାଇ ଦିଆଯାଇଛି ।

ହରିଜନ ଓ ଆଦିବାସୀ ହିତାଧିକାରୀମାନଙ୍କୁ ଯୋଗାଇ ଦେ[illegible] ନିମନ୍ତେ କୋରାପୁଟଠାରେ ଏକ ବ୍ରଏଲର୍ ଠେକୁଆ ଫାର୍ମ ସ୍ଥାପ[illegible] କରାଯାଇଛି । ଏପର୍ଯ୍ୟନ୍ତ ୩୬ଟି ପରିବାର ଏହି କାର୍ଯ୍ୟକ୍[illegible] ମାଧ୍ୟମରେ ଉପକୃତ ହୋଇଛନ୍ତି ।

କେନ୍ଦୁଝର ଜିଲ୍ଲାର ମାଟକାମ୍ବେଡ଼ାଠାରେ ଚଳିତ ଆ[illegible] ବର୍ଷରେ ଗୋଟିଏ ଘୁଷୁରୀ ଫାର୍ମ ପ୍ରତିଷ୍ଠା କରାଯାଇଛି ପ୍ରୋଜେକ୍ଟ ଅଞ୍ଚଳମାନଙ୍କୁ ନିକଟ ଭବିଷ୍ୟତରେ ବାଢ଼ି ଓ ଘୁଷୁ[illegible] ଯୋଗାଇ ଦିଆଯିବା ନିମନ୍ତେ ପଦକ୍ଷେପ ନିଆଯାଉଛି ।




ଧଉଳିଠାରେ ଅନୁଷ୍ଠିତ ନୂଆଖାଇ ଉତ୍ସବରେ ମୁଖ୍ୟମନ୍ତ୍ରୀ, ଶ୍ରୀ ବିଜୁ ପଟ୍ଟନାୟକ ।



# ଶହୀଦ ଦିବାକର : ଏକ କ୍ରାନ୍ତିକାରୀ ବ୍ୟକ୍ତିତ୍ୱ

ଶ୍ରୀ ବ୍ରଜ ପାଇକରାୟ

ବହୁ ସ୍ୱାର୍ଥତ୍ୟାଗୀ ନିଷ୍ଠାପର ବିପ୍ଳବୀ ବଣମଲ୍ଲୀ ପରି ଝରି ପଡ଼ିଛନ୍ତି । ଇତିହାସ ସେମାନଙ୍କ ପଦଧ୍ୱନୀ ଶୁଣିଥିଲେ ମଧ୍ୟ ଆଜିର ଯୁବ ସମାଜ ସେହି ମହାନ୍ ବିପ୍ଳବୀମାନଙ୍କର ତ୍ୟାଗ, ସାହସ, ସଂଗ୍ରାମ ଓ ଦେଶପ୍ରେମର କାହାଣୀ ସମ୍ବନ୍ଧରେ ଅବଗତ ହେବା ପାଇଁ ଉପଯୁକ୍ତ ସୁଯୋଗ ଓ ପରିବେଶ ନପାଇଲେ ଜାତି ପ୍ରାଣରେ ନୂତନ ସ୍ପନ୍ଦନ ଆସିବ ନାହିଁ । ବ୍ରିଟିଶ୍ ସାମ୍ରାଜ୍ୟବାଦର ଛତ୍ରଛାୟା ତଳେ, ଗଡ଼ଜାତ ରାଜନ୍ୟମଣ୍ଡଳୀର ଅନ୍ଧାରି ଶାସନତଳେ ଏ ଦେଶର ଅଗଣିତ ନିରୀହ ଜନ ସାଧାରଣ କିପରି ଦଳିତ, ଲାଞ୍ଛିତ, ନିର୍ଯ୍ୟାତୀତ ଓ ମର୍ଯ୍ୟାଦା ବିହୀନ ଜୀବନ ଯାପନ କରୁଥିଲେ, ତାହା ସ୍ୱାଧୀନୋତ୍ତର ଭାରତବର୍ଷର ନାଗରିକ ହୁଏତ କଳ୍ପନା କରି ପାରିବେ ନାହିଁ । ହେଲେ ଇତିହାସର ସେହି ନିଷ୍ଠୁରସତ୍ୟକୁ କୌଣସି ସମୟରେ ଏଡ଼ାଇ ଦିଆଯାଇ ନ ପାରେ । ସ୍ୱାଧୀନତାର ପ୍ରାକ୍ କାଳରେ ଓଡ଼ିଶାର ଢେଙ୍କାନାଳ, ତାଳଚେର, ନୀଳଗିରି ଏବଂ ରଣପୁର ପ୍ରଭୃତି ଗଡ଼ଜାତରେ ପ୍ରଜାମାନଙ୍କ ଉପରେ ହେଉଥିବା ଅକଥନୀୟ ଅତ୍ୟାଚାର, ଶୋଷଣ ଓ ଜୁଲମକୁ ସୋଭିଏତ୍ ରୁଷ୍‌ର ଜାର୍ ଅମଳର ଶାସନ, ଜର୍ମାନୀର ନାଜିନେତା ହିଟଲର୍‌ର ଲୋମହର୍ଷଣକାରୀ ନିର୍ମମତା ଏବଂ ଇଟାଲୀର ଏକଛତ୍ରବାଦୀ ଫାସିଷ୍ଟଶାସକ ମୁସୋଲିନ୍‌ର ନୃଶଂସତା ସହ ତୁଳନା କରାଯାଇ ପାରେ । ଶୋଷିତ, ଅତ୍ୟାଚାରିତ ଓ ନିର୍ଯ୍ୟାତିତ ଜନସାଧାରଣଙ୍କ ନ୍ୟାର୍ଯ୍ୟ ମାନବିକ ଅଧିକାର ପାଇଁ ଏବଂ ସମସ୍ତ ପ୍ରକାର ଅନ୍ୟାୟ ଓ ଜୁଲମର ପ୍ରତିକାର ପାଇଁ ଅବିରତ ସଂଗ୍ରାମରତ ବିପ୍ଳବୀମାନଙ୍କ ନିଃସ୍ୱାର୍ଥ ତ୍ୟାଗ ଓ ସଂଗ୍ରାମୀ ମନୋଭାବ ଚିନ୍ତାକଲେ ବିସ୍ମୟରେ ଅଭିଭୂତ ହେବାକୁ ପଡ଼େ । ଏଇ ପରିପ୍ରେକ୍ଷୀରେ ଭାରତୀୟ ସ୍ୱାଧୀନତା ସଂଗ୍ରାମ ତଥା ରଣପୁର ବିଦ୍ରୋହର ଅନମନୀୟ ଯୋଦ୍ଧା ଏବଂ ପ୍ରଜା ଆନ୍ଦୋଳନର ପଙ୍କପୁରୋଧା ବିପ୍ଳବୀ ଦିବାକର ପରିଡ଼ାଙ୍କ ଗଭୀର ଦେଶ ପ୍ରୀତି ଓ ଅସୀମ ତ୍ୟାଗପୁତ ଆଦର୍ଶ ଜୀବନ ସମ୍ବନ୍ଧରେ କିଞ୍ଚିତ୍ ଆଲୋକପାତ କଲେ ସେହି ମହାନ୍ ବ୍ୟକ୍ତିତ୍ୱ ସମ୍ମୁଖରେ ମସ୍ତକ ସ୍ୱତଃ ଅବନତ ହୋଇଯାଏ ।

ବ୍ରିଟିଶ୍ ଶାସନ ସମୟର କଥା । ଗଡ଼ଜାତ ରାଜାମାନେ ବ୍ରିଟିଶ୍ ସରକାରଙ୍କ ପ୍ରଭୁତ୍ୱ ସ୍ୱୀକାର କରି ଏବଂ ତାଙ୍କ ପ୍ରତି ଆନୁଗତ୍ୟ ପ୍ରଦର୍ଶନ କରି ସ୍ୱକ୍ଷମତା ବଜାୟ ରଖିବା ପାଇଁ ଓ ବିଳାସ ବ୍ୟସନରେ ଜୀବନ ଅତିବାହିତ କରିବା ପାଇଁ ଲକ୍ଷ୍ୟ ସ୍ଥିର କରିଥିଲେ । କୌଶଳୀ ଇଂରେଜ ସରକାର ଗଡ଼ଜାତ ରାଜାମାନଙ୍କୁ ନିୟନ୍ତ୍ରଣାଧୀନ କରି ରଖିବା ପାଇଁ ପଲିଟିକାଲ ଏଜେଣ୍ଟମାନଙ୍କୁ ନିଯୁକ୍ତି ଦେଇଥିଲେ । ଓଡ଼ିଶା ଗଡ଼ଜାତ ସମୂହର ମୁଖ୍ୟ ମୁକାମ ସମ୍ବଲପୁରଠାରେ ଅବସ୍ଥାପିତ ହୋଇଥିଲା ।

ନୃଶଂସ ହତ୍ୟାକାରୀ ଓ ଭୟଙ୍କର ଅପରାଧୀମାନଙ୍କୁ ଜେଲ୍‌ର ସ୍ୱତନ୍ତ୍ର ସେଲ୍‌ରେ ରଖାଯିବା ପରି ପରାଧୀନ ଭାରତବର୍ଷରେ ଗଡ଼ଜାତର ଅନ୍ଧାରି ଶାସନ ତଳେ ରଣପୁରର ପ୍ରଜାବୃନ୍ଦ ଅଧିକ ନିଷ୍ପେଷିତ ଅବସ୍ଥାରେ କାଳାତିପାତ କରୁଥିଲେ । ଶୋଷଣ, ଅନ୍ୟାୟ, ଅତ୍ୟାଚାର, ଭୟ, ଆତଙ୍କ ଓ ଉଦ୍‌ବେଗରେ ଜନଜୀବନ ଅତିଷ୍ଠ ଓ ବିପର୍ଯ୍ୟସ୍ତ ହୋଇ ଉଠୁଥିଲେ ମଧ୍ୟ କେହିଜଣେ ପ୍ରତିବାଦର ସ୍ୱର ଉତ୍ତୋଳନ କରିବା ପାଇଁ ସାହସ କରୁନଥିଲେ । କାରଣ ରାଜା ସ୍ୱୟଂ ବିଷ୍ଣୁଙ୍କର ଅଂଶ ବିଶେଷ, ପୂର୍ବଜନ୍ମର ଅଶେଷ ପୁଣ୍ୟବଳରେ ଏଜନ୍ମରେ ଶାସନ କରିବା ପାଇଁ ଭଗବାନଙ୍କ ଦ୍ୱାରା ମର୍ତ୍ତ୍ୟକୁ ପ୍ରେରିତ ହୋଇଛନ୍ତି ଏବଂ ତାଙ୍କ ବିରୁଦ୍ଧରେ କୌଣସି ପ୍ରକାର ଅସନ୍ତୋଷ ପ୍ରକାଶ କରିବା ଘୋର ପାପ ଇତ୍ୟାଦି ଅଜବ୍, ଯୁକ୍ତିହୀନ ଧର୍ମୀୟ ଚେତାବନୀ ଅତ୍ୟାଚାରିତ ପ୍ରଜାବର୍ଗଙ୍କୁ ଅଧିକ ନିରୀହ ହେବାପାଇଁ ସତେ ଯେମିତି ପ୍ରେରଣା ଯୋଗାଉ ଥିଲା । ଜନସାଧାରଣଙ୍କ ମନ ଓ ଚିନ୍ତାଧାରାରେ ଭାଗ୍ୟବାଦର ଯେଉଁ ପ୍ରଭାବ, ତାର ସୁଯୋଗ ନେଇ ଏବଂ ଧର୍ମକୁ ଅସ୍ତ୍ରରୂପେ ବ୍ୟବହାର କରି ସମସ୍ତ ସୁଖ ସୁବିଧା ଉପଭୋଗ କରୁଥିବା ରାଜା ଓ ରାଜ କର୍ମଚାରୀଗଣ ଶୋଷଣ ଓ ଜୁଲମର କ୍ଲେଶକର ଧାରା ଅବ୍ୟାହତ ରଖିଥିଲେ। ଯାହା ଫଳରେ କି ପ୍ରଜାମାନଙ୍କ ଚିନ୍ତାଧାରା ସ୍ଥାଣୁ ଅବସ୍ଥାରେ ରହିବା ପାଇଁ ବାଧ୍ୟ ହୋଇ ଥିଲା । ଏହିପରି ସମୟରେ ଜୀବନର ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟକୁ ବଳିଦେଇ, ଜନସେବାକୁ ଜୀବନର ପରମବ୍ରତରୂପେ ଗ୍ରହଣ କରି, ରାଜା, ଦାରୋଗା, ଦେୱାନ, ପିଆଦା, ଅମଲାମାନଙ୍କ ଅନ୍ୟାୟ ଓ ଜୁଲମର ଉଚ୍ଛେଦ ସାଧନ ପାଇଁ ଏବଂ ବେଠି, ଭେଟି, ନଜରାନା ଭଳି ନାରକୀୟ ପ୍ରଥାର ବିଲୋପ ନିମନ୍ତେ ତେଜସ୍ୱୀ ଓ ଶିକ୍ଷିତ ତରୁଣ ଦିବାକର ବିପ୍ଳବର ଆଗ୍ନେୟ ବଳୟକୁ ଲର୍ମ ପ୍ରଦାନ କରିଥିଲେ ।

ବିପ୍ଲବୀ ଦିବାକର ବ୍ୟକ୍ତିଗତ ଭାବରେ ରାଜାଙ୍କ ଦ୍ୱାରା ଅତ୍ୟାଚାରିତ ହୋଇ ନଥିଲେ ଏବଂ ତାଙ୍କର ପରିବାରବର୍ଗ ଗଜପତି ରାଜାଙ୍କ ସ୍ୱତନ୍ତ୍ର ସନନ୍ଦ ବଳରେ ରଣପୁରର ବେଠି ପ୍ରଥାରୁ ମୁକ୍ତ ଥିଲେ । ହେଲେ, କୌଣସି ସ୍ୱାର୍ଥ ନଥାଇ ବିଦ୍ରୋହ, ବିପ୍ଳବ ଓ ଆନ୍ଦୋଳନର ଦୁର୍ଗମ ପଥକୁ ବରଣ କରିବା ମୂଳରେ ନିହିତ ଥିଲା ଦିବାକରଙ୍କ ଗଭୀର ସ୍ୱଦେଶ ପ୍ରୀତି ତଥା ପିତାଙ୍କ ତ୍ୟାଗପୂତ ଜୀବନର ଆଦର୍ଶ ଏବଂ ନିରୀହ ଜନସାଧାରଣଙ୍କ ପ୍ରତି ହୃଦୟର ସ୍ୱତଃସ୍ଫୂର୍ତ୍ତ ଶ୍ରଦ୍ଧା ।

୧୯୧୧ ମସିହା ନଭେମ୍ବର ୩୦ ତାରିଖ ଦିନ ରଣପୁର ଅନ୍ତର୍ଗତ ଗଡ଼ବାଣିକିଲ ଗ୍ରାମର ବିଶୋୟୀ ସାମନ୍ତ ଶ୍ରୀ ହରିହର ପରିଡ଼ା ଓ ତାରାଦେବୀଙ୍କ ପରିବାରରେ ଦିବାକର ଜନ୍ମ ନେଇଥିଲେ ଓ ଛାତ୍ରାବସ୍ଥାରୁ ତାଙ୍କର ତୀକ୍ଷ୍ଣ ଧୀଶକ୍ତିର ସମ୍ୟକ୍ ପରିଚୟ ମିଳିଥିଲା । ସେ ଏକାଧାରରେ କବି, ଜ୍ୟୋତିଷଶାସ୍ତ୍ର ବିଶାରଦ ଏବଂ ସ୍ୱାଧୀନଚେତା ଯୁବକ ଥିଲେ । ତାଙ୍କ ରଚିତ "ଶ୍ରୀ ଶ୍ରୀ ଆର୍ତ୍ତେଶ୍ୱର ଦେବଙ୍କ ଜଣାଣ" ପୁସ୍ତକ ଏବଂ "ଜାତକାଳଙ୍କାର"ଗ୍ରନ୍ଥହିଁ ତାଙ୍କ ପ୍ରତିଭାର ସ୍ୱାକ୍ଷର ବହନ କରେ । ପିତା ହରିହର ୧୮୯୮ ମସିହାରେ ରଣପୁରରେ ଘଟିଥିବା ପ୍ରଜାମେଳିରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ପିତାଙ୍କ ନିର୍ଭୀକତା ଓ ନିରୀହ ଜନସାଧାରଣଙ୍କ ପ୍ରତି ଗଭୀର ଶ୍ରଦ୍ଧା ତରୁଣ ଦିବାକରଙ୍କ ଉପରେ ବିଶେଷଭାବେ ରେଖାପାତ କରିଥିଲା ।

ରଣପୁର ରାଜତନ୍ତ୍ରର ଅତ୍ୟାଚାରୀ ନମୁନା "ସଡ଼କବେଠି"ର ଏକ ଲୋମହର୍ଷଣକାରୀ ଦୃଶ୍ୟ ବିପ୍ଳବୀ ଦିବାକରଙ୍କ ହୃଦୟରେ ସୃଷ୍ଟି କରିଥିଲା ଗଭୀର ଆଲୋଡ଼ନ । ବେଠିଆ ପ୍ରଜାଙ୍କ ଉପରେ ଦାରୋଗାର ନିର୍ମମ ଲାଠି ପ୍ରହାର ଏବଂ ସେମାନଙ୍କ ନେତ୍ର ପ୍ରାନ୍ତରୁ ଝରିପଡୁଥିବା ବିନ୍ଦୁ ବିନ୍ଦୁ ଅଶ୍ରୁର ଅବାରିତ ଧାରା ଆଉ ଶରୀରରୁ ନିଗିଡ଼ି ପଡୁଥିବା ବୁନ୍ଦା ବୁନ୍ଦା ତାଜାରକ୍ତ ତାଙ୍କ ମନରେ ସୃଷ୍ଟି କରିଥିଲା ଗଭୀର କ୍ଷୋଭ । ଗଡ଼ଜାତି ଅନ୍ୟାୟ ଓ ଜୁଲମର ବିଲୋପ ସାଧନ ପାଇଁ ସେ ନେଇଥିଲେ ଦୁର୍ବାର ଶପଥ । ଅନ୍ତରଙ୍ଗ ବାଲ୍ୟସାଥୀ ରଘୁନାଥଙ୍କ ସହାୟତାରେ ରଣପୁରର ଉଦାସୀନ ଯୁବଶକ୍ତି, ମାଳୁଆ ଆଦିବାସୀ ପ୍ରଜା ଏବଂ ନିଦ୍ରିତ ଜନଶକ୍ତିକୁ ଗଭୀର ଭାବେ ପ୍ରଭାବିତ କରି ଥିଲେ । ପ୍ରଜାଆନ୍ଦୋଳନକୁ ତ୍ୱରାନ୍ୱିତ କରିବା ପାଇଁ ତାଙ୍କ ରଚି ଉଦ୍‌ବୋଧନ ସଙ୍ଗୀତ ଓ ଓଜସ୍ୱିନୀ ବକ୍ତୃତାର ଥିଲା ପ୍ରମୁ ଭୂମିକା ।

୧୯୩୯ ମସିହା ଜାନୁୟାରୀ ୫ ତାରିଖ ପୌ.ଷ ପୂର୍ଣ୍ଣିମା ରଣପୁ ତଥା ସମଗ୍ର ଦେଶପାଇଁ ଏକ ସ୍ମରଣୀୟ ଦିବସ । ପ୍ରଜାମଣ୍ଡଳ ଆହ୍ୱାନ କ୍ରମେ ରଣପୁରଗଡ଼ ରାଜଉଆସ ସାମ୍ନାରେ ହୋଇଥ ବିପୁଳ ଜନସମାଗମ । ଠିକ୍ ସେହି ସମୟରେ ଅପ୍ରତ୍ୟାଶି ଭାବରେ ପ୍ରବଳ ପ୍ରତାପୀ ବ୍ରିଟିଶ ପଲିଟିକାଲ ଏଜେଣ୍ଟ ମେଜ ବେଜେଲଗେଟ୍ ମିଲିଟାରୀ ଜୱାନ୍‌ଙ୍କ ସହ ଆନ୍ଦୋଳନ ଦମ କରିବା ପାଇଁ ଆସି ଘଟଣାକ୍ରମେ ଉତ୍ତେଜିତ ପ୍ରଜାଙ୍କ ନିର୍ମମ ଲ ମାଡ଼ରେ ମୃତ୍ୟୁ ବରଣ କରେ । ପ୍ରତିଶୋଧ ପରାୟଣ ବ୍ରିଟି ସରକାର ବେଜେଲଗେଟ୍ ହତ୍ୟା ପାଇଁ ଦାୟୀକରି ବିପ୍ଳବ ଦିବାକର ଓ ରଘୁନାଥଙ୍କୁ ଗିରଫ କଲେ ବ୍ରିଟିଶ୍ ଗୋରା ବିଚାରପ ସିଅର୍‌ର୍ ସାହେବ୍‌ର ଇଜଲାସ୍‌ରେ ବିଚାର ନାମରେ ପ୍ରହସ ଚାଲିଲା ଓ ଶେଷରେ ବିପ୍ଳବୀ ଦ୍ୱୟଙ୍କୁ ମୃତ୍ୟୁଦଣ୍ଡ ଆଦେ ହେଲା ।

୧୯୪୧ ମସିହା ଅପ୍ରେଲ ୪ ତାରିଖ ସୂର୍ଯ୍ୟୋଦୟ ପୂର୍ ଜନ୍ମମାଟି ରଣପୁରରୁ ବହୁତ ଦୂରରେ ଏବଂ ତାଙ୍କର ପ୍ରିୟ ଜନତା ଅଗୋଚରରେ ବିହାର ରାଜ୍ୟର ଭାଗଲପୁର ଜେଲ୍ ଫାଶୀଖୁଣ୍ଟ ଚଢ଼ି ବିପ୍ଳବୀ ହୁଅନ୍ତି ଅମର ପଥର ଯାତ୍ରୀ ।

ଭାରତୀୟ ସ୍ୱାଧୀନତା ସଂଗ୍ରାମ ଓ ଗଡ଼ଜାତ ଆନ୍ଦୋଳନ ଅ ଇତିହାସର ବିଷୟବସ୍ତୁ । ଶହୀଦ୍ ଦିବାକର ଆଉ ଆମ ମଧ୍ୟ ନାହାନ୍ତି । ହେଲେ ଅତ୍ୟାଚାର, ନିର୍ଯ୍ୟାତନା ଓ ଜୁଲମ ବିରୁଦ୍ଧ ତାଙ୍କର ସାଲିସ୍‌ହୀନ ସଂଗ୍ରାମର ବାର୍ତ୍ତା, ସାମ୍ପ୍ରତିକ ଯୁବ ସମାଜ ଏବଂ ଭବିଷ୍ୟତର ଦାୟାଦମାନଙ୍କୁ ଅନ୍ୟାୟ ବିରୁଦ୍ଧରେ ସଙ୍ଗଠି ହେବାପାଇଁ ଯୁଗେ ଯୁଗେ ପ୍ରେରଣା ଯୋଗାଇ ଥିବ ।

D/28, S. B. I. Colony
Unit-4, Bhubaneswar.

"ଏହି ମୂକ, ଅବସାଦଗ୍ରସ୍ତ ଏବଂ ବିନୀତ ବ୍ୟକ୍ତିଙ୍କ ମୁହଁରେ ଆମକୁ ଆଶାର ପରିଭାଷା ଫୁଟାଇବାକୁ ହେବ, ଏହି ଅବସନ୍ନ, ଦୁର୍ବଳ ଏବଂ ପରିତ୍ୟକ୍ତ ବ୍ୟକ୍ତିଙ୍କ ହୃଦୟରେ ଆମକୁ ମାନବିକତାର ଆଶା ଜାଗରିତ କରିବାକୁ ହେବ ।"

ରବୀନ୍ଦ୍ରନାଥ




## ଜଗନ୍ନାଥପୁରର ସଫଳ ପରିକଳ୍ପନା

ଗାଁଟିର ନାମ "ଜଗନ୍ନାଥପୁର" । କେନ୍ଦୁଝର ଜିଲ୍ଲା ଚମ୍ପୁଆ ବ୍ଲକ୍ ଅନ୍ତର୍ଗତ ଏକ ଉପାନ୍ତ ଗ୍ରାମ । ପୁଣ୍ୟତୋୟା ବୈତରଣୀ ନଦୀ କୂଳରେ ଅବସ୍ଥିତ ଆଦିବାସୀ ବହୁଳ, ୪୮୭ ଜଣ ବସବାସ କରୁଥିବା ଏହି ଗ୍ରାମରେ ୩୯୫ ଜଣ ହେଉଛନ୍ତି ଆଦିବାସୀ ଏବଂ ୫୬ ଜଣ ହରିଜନ ସମ୍ପ୍ରଦାୟର ।

ଦାରିଦ୍ର୍ୟତାର କଷାଘାତରେ କାଳାତିପାତ କରୁଥିବା ଏହି ସରଳ ନିରିହ ଆଦିବାସୀମାନେ ଚିନ୍ତା କରିନଥିଲେ ଯେ ସେମାନଙ୍କର ଜୀବନରେ ଦିନେ ପରିବର୍ତ୍ତନର ମୃଦୁମଳୟର ସ୍ପର୍ଶ ଲାଗିବ । ସେମାନେ ବସବାସ କରୁଥିବା ପାହାଡ଼ିଆ ଟାଙ୍ଗର ଭୂଇଁ ମଧ୍ୟ ଶସ୍ୟ ଶ୍ୟାମଳା ହୋଇ ପାରିବ । ପ୍ରାୟ ସାତ ମାସ ତଳେ କେନ୍ଦୁଝର ଜିଲ୍ଲାପାଳ ଶ୍ରୀ ଅରୁଣ କୁମାର ପଣ୍ଡା ଏହି ଗ୍ରାମ ପରିଦର୍ଶନରେ ଯାଇଥିଲେ । ଲୋକମାନଙ୍କର ଦୁଃଖ ଦୁର୍ଦ୍ଦଶା କଥା ଚିନ୍ତାକରି ତାଙ୍କର ସେହି ଟାଙ୍ଗରା ଭୂଇଁରେ କଦଳୀ ଚାଷ କରାଇବା ନିମନ୍ତେ ସ୍ଥିର କରାଗଲା । କଦଳୀ ଚାଷ ଯେ କେବଳ କଟକ, ପୁରୀ, ବାଲେଶ୍ୱର ପ୍ରଭୃତି ଉର୍ବର ଜମିରେ ଭଲ ଫଳିପାରେ ତାହା ନୁହେଁ, ପାହାଡ଼ିଆ ଟାଙ୍ଗରା ଭୂଇଁରେ ମଧ୍ୟ ଏହା ଖୁବ୍ ଭଲ ହୋଇପାରେ, ତା'ର ମୂଳ ସାକ୍ଷୀ ଆଜିର ଜଗନ୍ନାଥପୁର ଗ୍ରାମ ।

ଜିଲ୍ଲାପାଳଙ୍କ ନିର୍ଦ୍ଦେଶ କ୍ରମେ ବି:ଡ:ଓ: ଶ୍ରୀ ହରିବଲ୍ଲଭ ମିଶ୍ର ଏବଂ ତାଙ୍କର କର୍ମଚାରୀମାନେ ଆପ୍ରାଣ ଉଦ୍ୟମକରି ଏହି ଗ୍ରାମର ୨୯ଟି ଆଦିବାସୀ ପରିବାରଙ୍କ ଦାରିଦ୍ର୍ୟ ଦୂରୀକରଣ ଯୋଜନାରେ ୨୨ ଏକର ଜମିରେ ସ୍ୱତନ୍ତ୍ର 'ବାମନ' ଧରଣର କଦଳୀ ଚାଷ କରିବା ପାଇଁ ସାହାଯ୍ୟ ଯୋଗାଇ ଦେଲେ । ସେମାନଙ୍କୁ ଆଇ:ଆର:ଡି:ପି: ହିତାଧିକାରୀ ଏକର ପ୍ରତି ୧୦,୮୦୦ ଟଙ୍କା ଋଣ ପ୍ରଦାନ କରାଗଲା ଏବଂ ସେଥିରୁ ୫ ହଜାର ଟଙ୍କା ଛାଡ଼ କରାଗଲା । ୨୨ ଏକର ପରିମିତ ଏହି କଦଳୀ ଚାଷ ଜିଲ୍ଲାର ସବୁଠାରୁ ବଡ଼ କଦଳୀ ବଗିଚା । ବର୍ତ୍ତମାନ ପ୍ରାୟ ପ୍ରତ୍ୟେକ ଗଛରେ କଦଳୀ କାନ୍ଦି । ସେଥିରେ ଜଳସେଚନର ବ୍ୟବସ୍ଥା ପାଇଁ ୩ ଗୋଟି ଉଠାଜଳସେଚନ ପ୍ରକଳ୍ପ ନିର୍ମାଣ କରାଯାଇଛି । ବର୍ତ୍ତମାନ ସେହି ଚାଷୀମାନଙ୍କ ମଧ୍ୟରେ ଅନେକ ଉତ୍ସାହ । ମନରେ ଅନେକ ଭରସା । ଏକର ପ୍ରତି ପ୍ରାୟ ୩୦ ହଜାର ଟଙ୍କା ପାଇ ପାରିବେ ବୋଲି ଆଶାକରିଛନ୍ତି ।

ଯାହା କେବଳ କଟକ, ପୁରୀ, ବାଲେଶ୍ୱର ପ୍ରଭୃତି ଉର୍ବର ଜମିରେ ସମ୍ଭବ । ତାହା ମଧ୍ୟ ଏହି ପାହାଡ଼ିଆ ଟାଙ୍ଗର ଭୂଇଁରେ ସମ୍ଭବ । କାରଣ ସେମାନେ ସକ୍ଷମ । ଆଜି ସେମାନଙ୍କ ମନରେ ଅନେକ ଆଶାର ଫୁଲ । ଅନେକ ସ୍ୱପ୍ନର ମୀନାର । ଆଜି ଜଗନ୍ନାଥପୁର ଗ୍ରାମ ହସୁଛି ।

---

**ପ୍ରଭାକର ସାହୁ,**
**ଉପଖଣ୍ଡ ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ,**
**ଚମ୍ପୁଆ ।**

## ଶକ୍ତି ସଂରକ୍ଷଣ

ଦେଶର ଅର୍ଥନୈତିକ ଓ ସାମାଜିକ ପ୍ରଗତି ପାଇଁ ଯେଉଁସବୁ ଶକ୍ତି ସମ୍ପଦର ବ୍ୟବହାର କରାଯାଏ ସେଥିମଧ୍ୟରୁ ବିଦ୍ୟୁତ୍‌ଶକ୍ତି ଯେ ଏକ ମୁଖ୍ୟ ଭୂମିକା ଗ୍ରହଣ କରିଛି ଏଥିରେ ଦ୍ୱିମତ ହେବାର ଅବକାଶ ନାହିଁ । ଆମର ଚାହିଦା ମୁତାବକ ଯଦି ଏହାର ଉତ୍ପାଦନ ଓ ବଣ୍ଟନ ହୋଇପାରନ୍ତା ତେବେ ଚିନ୍ତା କରିବାର କୌଣସି ଆବଶ୍ୟକତା ନାହିଁ । କିନ୍ତୁ ଯେତେବେଳେ ଏହାର ଅନାଟନ ପଡ଼େ ଏବଂ ଉନ୍ନତି କାର୍ଯ୍ୟ ବାଧାପ୍ରାପ୍ତ ହୋଇ ଜନସାଧାରଣ ଅସୁବିଧାର ସମ୍ମୁଖୀନ ହୁଅନ୍ତି ସେତେବେଳେ ବିକଳ୍ପ ବ୍ୟବସ୍ଥା ଗ୍ରହଣ କରିବା ସଙ୍ଗେସଙ୍ଗେ ସୀମିତ ବିଦ୍ୟୁତ୍ ଶକ୍ତିର ଯଥାର୍ଥ ବିନିଯୋଗ କରାଯାଇ ଏହାର ସଂରକ୍ଷଣ ଉପରେ ଗୁରୁତ୍ୱ ଦେବା ଅପରିହାର୍ଯ୍ୟ ହୋଇପଡ଼େ । ବର୍ତ୍ତମାନ ଆମ ଦେଶ ଏହି ଶକ୍ତି ସଙ୍କଟର ସମ୍ମୁଖୀନ ହୋଇଛି ।

ବିଦ୍ୟୁତ୍‌ଶକ୍ତି ଚାହିଦା ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଛି ଏହାର ନିଅଣ୍ଟିଆ ପରିମାଣ ବର୍ତ୍ତମାନ ସର୍ବଭାରତୀୟସ୍ତରରେ ପ୍ରାୟ ଶତକଡା ୧୯ ଭାଗ ଥିବାବେଳେ ଓଡ଼ିଶାରେ ଏହାର ପରିମାଣ ପ୍ରାୟ ୩୫ ଭାଗ । ସପ୍ତମ ଯୋଜନା ଶେଷ ସୁଦ୍ଧା ଦେଶରେ ପ୍ରାୟ ୧୦ ହଜାର ମେଗାୱାଟ ଶକ୍ତି ନିଅଣ୍ଟ ପଡ଼ିବ ବୋଲି ଅଟକଳ

ଏହି ନିଅଣ୍ଟିଆ ପରିମାଣକୁ ପୂରଣ କରି ଅଷ୍ଟମ କରାଯାଇଥିଲା । ଏହି ନିଅଣ୍ଟିଆ ପରିମାଣକୁ ପୂରଣ କରି ଅଷ୍ଟମ ଯୋଜନା କାଳ ମଧ୍ୟରେ ୩୮ ହଜାର ମେଗାୱାଟ ସ୍ଥାପିତ କ୍ଷମତା ବିଶିଷ୍ଟ ନୂତନ ବିଦ୍ୟୁତ୍ କେନ୍ଦ୍ର ସ୍ଥାପନ ପାଇଁ ଯେଉଁ ବିପୁଳ ପରିମାଣର ଅର୍ଥ ଆବଶ୍ୟକ ହେବ ତାହା ଯୋଗାଇ ଦେବା ସମ୍ଭବପର ହୋଇ ନ ପାରେ । ଏକ ସମୀକ୍ଷାରୁ ଜଣାଯାଏ ଯେ, ଅଷ୍ଟମ ଯୋଜନା ଶେଷ ସୁଦ୍ଧା ଆମ ଦେଶରେ ୧୩ ହଜାର ମେଗାୱାଟ ବିଦ୍ୟୁତ୍‌ଶକ୍ତି ନିଅଣ୍ଟ ପଡ଼ିବ । ତେଣୁ ବିଦ୍ୟୁତ୍ ସଙ୍କଟର ମୁକାବିଲା କରିବା ସଙ୍ଗେ ସଙ୍ଗେ ଏହାର ସଂରକ୍ଷଣ ଉପରେ ପ୍ରତ୍ୟେକସ୍ତରରେ ବିଭିନ୍ନ କାର୍ଯ୍ୟକ୍ରମ ହାତକୁ ନିଆଯାଇ ସେଗୁଡ଼ିକ ଯଥାରୀତି ପାଳନ କରିବା ପାଇଁ ଉଦ୍ୟମ ଆରମ୍ଭ ହୋଇଛି ।

ସ୍ୱାଧୀନତା ପରେ ପରେ ବିଦ୍ୟୁତ୍‌ଶକ୍ତିର ଉତ୍ପାଦନ ପାଇଁ ବିପୁଳ ପରିମାଣର ଅର୍ଥ ବିନିଯୋଗ କରାଯାଇ ଥିଲେ ମଧ୍ୟ ଏହି ଶକ୍ତିକୁ କିପରି ଫଳପ୍ରଦ ଭାବେ ବିନିଯୋଗ କରାଯିବ ସେ ବିଷୟରେ କୌଣସି ଗୁରୁତ୍ୱ ଦିଆଯାଇ ନଥିଲା । ଏବେ ଏହି ଶକ୍ତି ସଙ୍କଟର ଗୁରୁତ୍ୱ ଉପଲବ୍ଧି କରି ଜାତୀୟସ୍ତରରେ ବ୍ୟାପକ ଯୋଜନା ପ୍ରସ୍ତୁତ କରାଯାଇ କାର୍ଯ୍ୟକାରୀ ହେଉଛି । ବାସ୍ତବ କ୍ଷେତ୍ରରେ ଦେଖିବାକୁ ଗଲେ ଶକ୍ତି ସଂରକ୍ଷଣ ଅର୍ଥ ନୁହେଁ ଆମର ଯଥାର୍ଥ ଚାହିଦାକୁ ସଙ୍କୁଚିତ କରିବା । ଅନ୍ୟ ପକ୍ଷରେ କମ୍ ବିଦ୍ୟୁତ୍‌ଶକ୍ତି ବିନିଯୋଗ କରି କିପରି ଅଧିକ ଉତ୍ପାଦନ ହୋଇ ପାରିବ ତାହା ଦେଖିବା କଥା । ଅପଚୟ ରୋକିବା ହେଉଛି ଏହାର ମୁଖ୍ୟ ଉଦ୍ଦେଶ୍ୟ ।

ଆମ ଦେଶରେ ଶିଳ୍ପକେନ୍ଦ୍ରଗୁଡ଼ିକ ମୋଟ ଚାହିଦାର ପ୍ରାୟ ଶତକଡା ୫୦ରୁ ୬୦ ଭାଗ ଶକ୍ତି ବିନିଯୋଗ କରିଥାନ୍ତି । ହିସାବରୁ ଜଣାଯାଏ ଯେ, ଏହି ଶିଳ୍ପ କେନ୍ଦ୍ରଗୁଡ଼ିକ ଉପରେ ଯଦି ୧୦ ଭାଗ ବିଦ୍ୟୁତ୍ କଟକଣା କରାଯାଏ ତେବେ ବାର୍ଷିକ କ୍ଷତିର ପରିମାଣ ହେବ ପ୍ରାୟ ୭ ହଜାର କୋଟି ଟଙ୍କା । ଆଧୁନିକ କୌଶଳ ଗ୍ରହ[ଣ] କରାଗଲେ ଉତ୍ପାଦନରେ କୌଣସି ଅସୁବିଧା ଦେଖା ନ ଯାଇ ପ୍ରାୟ ୨୫ ଭାଗ ବିଦ୍ୟୁତ୍‌ଶକ୍ତି ସଞ୍ଚୟ କରାଯାଇ ପାରିବ ।

କୃଷି ଉତ୍ପାଦନ ବୃଦ୍ଧି କରିବା ପାଇଁ ଆମ ଦେଶରେ ପ୍ରାୟ ୬[...] ଭାଗ ବିଦ୍ୟୁତ୍‌ଚାଳିତ ପମ୍ପ ସ୍ଥାପନ କରାଯାଇଛି । ଏହି ପ[...] ସେଟଗୁଡ଼ିକରେ ଫୁଟଭାଲଭ, ଲୁହା ପାଇପ ପରିବର୍ତ୍ତେ ପଲିଥ[...] ପାଇପ, ଆବଶ୍ୟକତାକୁ ଚାହିଁ ମଟର ବ୍ୟବହାର କରାଗଲେ ବାର୍ଷି[କ] ପ୍ରାୟ ୩୦ ଭାଗ ବିଦ୍ୟୁତ୍‌ଶକ୍ତି ସଞ୍ଚୟ କରାଯାଇ ପାରିବ । ଘରୋଇ ବ୍ୟବସାୟ – ବାଣିଜ୍ୟ ପାଇଁ କିଭଳି କିସମର ବିଦ୍ୟୁ[ତ୍] ଉପକରଣ ବ୍ୟବହାର କରାଯାଇଥାଏ । ଆମର ଅସାବଧାନତ[ା] ଯୋଗୁଁ ମୂଲ୍ୟବାନ୍ ବିଦ୍ୟୁତ୍‌ଶକ୍ତିର ଅଯଥା ଅପଚୟ ହେବା ସଙ୍ଗେ ସଙ୍ଗେ ଆମକୁ ବିଦ୍ୟୁତ୍ ବିଲ ବାବଦରେ ଅଧିକ ଖର୍ଚ୍ଚାନ୍ତ ହେବାକୁ ପଡ଼େ । ଭାରତୀୟମାନଙ୍କ ସଂସ୍ଥା ଅନୁମୋଦିତ ବିଦ୍ୟୁ[ତ୍] ଉପକରଣ ବିନିଯୋଗ କରିବା ସଙ୍ଗେ ସଙ୍ଗେ ଅନାବଶ୍ୟକ ସ୍ଥଳେ ବିଦ୍ୟୁତ୍ ବିନିଯୋଗ ବନ୍ଦ କରି ଦିଆଗଲେ ପ୍ରାୟ ୧୫ରୁ ୨୦ ଭାଗ ଶକ୍ତି ସଞ୍ଚୟ କରାଯାଇ ପାରିବ । ବିଦ୍ୟୁତ୍‌ଶକ୍ତି ପରିବର୍ତ୍ତେ ବିକଳ୍[ପ] ବ୍ୟବସ୍ଥା ସ୍ୱରୂପ ଏବେ ବହୁଳ ଭାବେ ସୌରଶକ୍ତି, ଗୋବର ବାଷ୍[ପ] ପବନ ଚାଳିତ ଶକ୍ତି ପ୍ରଭୃତି ଅଣପାରମ୍ପରିକ ଶକ୍ତି ବ୍ୟବହା[ର] କରାଗଲାଣି ।

ପ୍ରତ୍ୟେକ ବିଦ୍ୟୁତ୍ ବ୍ୟବହାରକାରୀ ଯେଉଁ ବିଦ୍ୟୁତ୍‌ଶ[କ୍ତି] ବ୍ୟବହାର କରୁଛନ୍ତି ତାହାର ଏକ ତାଲିକା ପ୍ରସ୍ତୁତ କରି ଗୋଟି[ଏ] ମାସରେ କେତେ ୟୁନିଟ ବିଦ୍ୟୁତ୍ ଖର୍ଚ୍ଚ ହେଉଛି, ବିଦ୍ୟୁତ୍ ବିଲ୍ କେତେ ଦେବାକୁ ପଡୁଛି, ତାହା ହିସାବ କରି କଣ କଲେ କମ୍ ଖର୍ଚ୍ଚରେ ବିଶେଷ ଉପକୃତ ହୋଇପାରିବେ ସେ ବିଷୟରେ ଚିନ୍ତାକରିବା ଆବଶ୍ୟକ ।



ସଂସ୍କୃତି ମନ୍ତ୍ରୀ, ଶ୍ରୀ ଶରତ କୁମାର କର ଓ ମୁଖ୍ୟମନ୍ତ୍ରୀଙ୍କ ପ୍ରମୁଖ ସଚିବ, ଶ୍ରୀ ପ୍ୟାରୀମୋହନ ମହାପାତ୍ର କୋଣାର୍କ ସୂର୍ଯ୍ୟ ମନ୍ଦିର ଶବରୀ ଶ୍ରୀକ୍ଷେତ୍ର ବୁଲି ଦେଖୁଛନ୍ତି ।




## ଶିଶୁମାନେ ଦେଶର ଉଜ୍ଜ୍ୱଳ ଭବିଷ୍ୟତ, ମହାନ ସମ୍ପତ୍ତି

"ଦେଶର ଉଜ୍ଜ୍ୱଳ ଭବିଷ୍ୟତ ଏବଂ ମହାନ୍ ପୁଞ୍ଜି ଶିଶୁମାନଙ୍କର ଉଚିତ ଲାଳନପାଳନ ଅତ୍ୟାବଶ୍ୟକ ବୋଲି ଓଡ଼ିଶାର ରାଜ୍ୟପାଳ ମାନ୍ୟବର ଶ୍ରୀ ଯଜ୍ଞଦତ୍ତ ଶର୍ମା ପ୍ରକାଶ କରିଛନ୍ତି । ପବିତ୍ର ଶିଶୁ ଦିବସ ଅବସରରେ ପଞ୍ଚାୟତରାଜ ବିଭାଗ ତରଫରୁ ରାଜ୍ୟ ସୂଚନା ଭବନଠାରେ ଆୟୋଜିତ ଶିଶୁ ଚଳଚିତ୍ର ଉତ୍ସବ ଉଦ୍‌ଘାଟନ କରି ରାଜ୍ୟପାଳ ପ୍ରକାଶ କରିଛନ୍ତି ଯେ ଶିଶୁମାନେ ଦେଶର ଭାବୀ ନାଗରୀକ । ସେମାନଙ୍କର କୃତିତ୍ୱ, ପ୍ରତିଭା ଓ ମନୀଷାର ସର୍ବାଙ୍ଗୀନ ବିକାଶ ନିମନ୍ତେ ଶିଶୁ ସ୍ୱାସ୍ଥ୍ୟକୁ ଅଗ୍ରାଧିକାର ଦିଆଯିବା ଉଚିତ । ସେମାନଙ୍କୁ ଯତ୍ନର ସହିତ ସୁସ୍ଥସବଳ କରି ବଢ଼ାଇବାକୁ ସେ ପରାମର୍ଶ ଦେଇଥିଲେ । ଭବିଷ୍ୟତର ସୁରକ୍ଷା ନିମନ୍ତେ ବର୍ତ୍ତମାନ ଅଙ୍ଗୀକାରବଦ୍ଧ ହେଉ ବୋଲି ସେ ଆଶା ପ୍ରକାଶ କରିଥିଲେ । ଏହି ଉତ୍ସବରେ ସଭାପତିତ୍ୱ କରି ପଞ୍ଚାୟତରାଜ ମନ୍ତ୍ରୀ ଡକ୍ଟର ଦାମୋଦର ରାଉତ ଶିଶୁମାନଙ୍କର ବୌଦ୍ଧିକ ଓ ସାମାଜିକ ସମୃଦ୍ଧି ଏବଂ ସ୍ୱାସ୍ଥ୍ୟରକ୍ଷା ନିମନ୍ତେ ରାଜ୍ୟପାଳଙ୍କ ଅଧ୍ୟକ୍ଷତାରେ ରାଜ୍ୟ ଶିଶୁକଲ୍ୟାଣ ପରିଷଦ ତରଫରୁ ବିଭିନ୍ନ କାର୍ଯ୍ୟକରାଯାଇଛି ବୋଲି ବ୍ୟକ୍ତ କରିଥିଲେ । ଶିଶୁମାନଙ୍କ ପ୍ରତି ଅବହେଳା ପ୍ରଦର୍ଶନ କଲେ ସମାଜର ପ୍ରଗତି ସମ୍ଭବ ନୁହେଁ । ଦେଶର ପ୍ରାୟ ୪୦ ଭାଗ ଶିଶୁ ପୁଷ୍ଟିହୀନତାର ଶିକାର ହେଉଛନ୍ତି ବୋଲି ଚିନ୍ତା ବ୍ୟକ୍ତ କରି ଶିଶୁମାନଙ୍କର ଶାରୀରିକ ବିକାଶ ପାଇଁ ସର୍ବାଦୌ ଉଦ୍ୟମ କରାଯିବା ଉଚିତ ବୋଲି ସେ ପରାମର୍ଶ ଦେଇଥିଲେ । ଯୋଜନା ପ୍ରଣୟନ କାଳରେ ଏଥିପ୍ରତି ଯଥେଷ୍ଟ ଧ୍ୟାନ ନଦିଆଯିବା ଯୋଗୁଁ ଏପ୍ରକାର ସମସ୍ୟାର ସୃଷ୍ଟି ହୋଇଛି ବୋଲି ମତ ଦେଇଥିଲେ । ପଞ୍ଚାୟତରାଜ ବିଭାଗ ଶାସନ ସଚିବ ଶ୍ରୀ କେ.ବି. ବର୍ମା ସ୍ୱାଗତ ଭାଷଣ ଦେଇଥିଲେ ଓ ସମାଜ ମଙ୍ଗଳ ନିର୍ଦ୍ଦେଶିକା ଶ୍ରୀମତୀ ସୁବର୍ଣ୍ଣରାଣୀ ଧନ୍ୟବାଦଅର୍ପଣ କରିଥିଲେ ।

ଏହି ଚଳଚିତ୍ର ଉତ୍ସବରେ ୯ଟି ଶିଶୁଚଳଚିତ୍ର ସ୍ଥାନ ପାଇଛି । ଏହି ଅବସରରେ I.N.C.E.F. ସ୍ୱେଚ୍ଛାସେବୀ ଅନୁଷ୍ଠାନ ତରଫରୁ ମୂକ ଓ ବଧିର ପିଲାମାନଙ୍କ ଦ୍ୱାରା ପ୍ରସ୍ତୁତ ହସ୍ତକର୍ମ ଓ ଚିତ୍ରକଳା ପ୍ରଦର୍ଶନୀକୁ ମଧ୍ୟ ରାଜ୍ୟପାଳ ଶ୍ରୀ ଶର୍ମା ସୂଚନା ଭବନଠାରେ ଉଦ୍‌ଘାଟନ କରି ବୁଲି ଦେଖିବା ସହ ଅସହାୟ ଓ ଶାରୀରିକ ଅକ୍ଷମ ବାଳକ ବାଳିକାମାନଙ୍କୁ ଆତ୍ମନିର୍ଭରଶୀଳ କରିବାର ପ୍ରୟାସ ବାସ୍ତବିକ ପ୍ରଶଂସନୀୟ ବୋଲି ମତପ୍ରକାଶ କରିଥିଲେ ।

## ସର୍ବଭାରତୀୟ ଶିଶୁ ମେଳାରେ ମୋନାଲିସାଙ୍କ କୃତିତ୍ୱ

ନୂଆ ଦିଲ୍ଲୀଠାରେ ଏକ ସପ୍ତାହ ସର୍ବ ଭାରତୀୟ ଜାତୀୟ ସଂହତି ଶିବିର ଅନୁଷ୍ଠିତ ହୋଇଥିଲା । ଭାରତୀୟ ଶିଶୁ କଲ୍ୟାଣ ପରିଷଦ ଏହି ଶିବିର ଆୟୋଜନ କରିଥିଲେ । ଜାତୀୟ ପୁରସ୍କାର ପ୍ରାପ୍ତ ୮ ବର୍ଷରୁ ୧୪ ବର୍ଷ ବାଳକ ବାଳିକାମାନେ ଏହି ଶିଶୁ ମେଳାରେ ଯୋଗ ଦେବାକୁ ଓଡ଼ିଶା ଶିଶୁ କଲ୍ୟାଣ ପରିଷଦ କୁମାରୀ ମୋନାଲିସା ଦେବୀଙ୍କୁ ଦିଲ୍ଲୀ ପଠାଇଥିଲେ । ସମଗ୍ର ଭାରତର ବିଭିନ୍ନ ରାଜ୍ୟରୁ ଦୁଇଶହ ଶିଶୁ ପ୍ରତିନିଧି ଯୋଗ ଦେଇଥିଲେ । ଶ୍ରୀମତୀ ଶିଲା କାଉଲ ଉଦ୍‌ଘାଟନ ଉତ୍ସବରେ ଯୋଗ ଦେଇ ପିଲାମାନଙ୍କୁ ଉଦ୍‌ବୋଧନ ଦେଇଥିଲେ ।

ବିଭିନ୍ନ ପ୍ରାନ୍ତରରୁ ଆସିଥିବା ଶିଶୁ ପ୍ରତିନିଧିମାନେ ଏହି ଶିବିର ରହଣି ସମୟରେ ଶୃଙ୍ଖଳା ସମୟ, ନିୟମ, ପାଳନ, ବ୍ୟବହାର, ସ୍ନେହ, ଶ୍ରଦ୍ଧା ଏବଂ ପାରସ୍ପରିକ ଚଳଣି ଚିନ୍ତାଧାରା, ପୋଷାକ, ପରିଚ୍ଛେଦ, ବେଶ ପରିପାଟି, ଶିକ୍ଷା ସଂସ୍କୃତି, ସାମାଜିକ ଭାବନା ଜାଣି ଜ୍ଞାନର ସୀମାକୁ ବୃଦ୍ଧି କରିବାର ସୁବର୍ଣ୍ଣ ସୁଯୋଗ ପାଇଥିଲେ । ସର୍ବ ଭାରତୀୟ ଶିଶୁମାନଙ୍କର ନୃତ୍ୟ, ସଙ୍ଗୀତ, ସାଧାରଣ ଜ୍ଞାନ, ବିଭିନ୍ନ ଭାଷାରେ କଥୋପକଥନ ବିଭିନ୍ନ ପ୍ରକାର କ୍ରୀଡ଼ା ଅଭିନୟରେ ସାମିଲ ହୋଇ ନିଜକୁ ଜଣେ ଭାରତୀୟ ଶିଶୁ ପ୍ରତିନିଧି ଭାବରେ ଆବିଷ୍କାର କରିପାରିଥିଲେ ।

ଶିବିର ଉଦ୍‌ଯାପନ ଦିବସରେ କେନ୍ଦ୍ରମନ୍ତ୍ରୀ କୁମାରୀ ମମତା ବାନାର୍ଜୀ ଯୋଗ ଦେଇ ଶିଶୁମାନଙ୍କର ସାଂସ୍କୃତିକ କାର୍ଯ୍ୟକ୍ରମମାନ ଦେଖି ଉଚ୍ଚ ପ୍ରଶଂସା କରିଥିଲେ । ଓଡ଼ିଶାର ଶିଶୁ ପ୍ରତିନିଧି ଓଡ଼ିଶୀ ନୃତ୍ୟ ପରିବେଷଣ କରି ସମସ୍ତଙ୍କୁ ମୁଗ୍ଧ କରିଦେଇ ପ୍ରଥମ ପୁରସ୍କାର ଲାଭ କରିଥିଲେ । ଜାତୀୟ ସଂହତି ଶିବିରରେ ମୋନାଲିସା ଏକ

ବକ୍ତୃତା ପ୍ରତିଯୋଗିତାରେ 'ହିନ୍ଦିରେ' ଏକ ଉଚ୍ଚ କୋଟିର ଭାଷଣ ଦେଇ କହିଥିଲେ । ବାଳ ଶ୍ରମିକଙ୍କ ସଂଖ୍ୟା ଦ୍ରୁତ ଗତିରେ ବଢ଼ି ଚାଲିଛି । ସେମାନେ ଗୋଟି ଶ୍ରମିକ ଭାବରେ ମହା କଷ୍ଟରେ ଆଜୀବନ ପରାଧୀନ ହୋଇ ରହିଛନ୍ତି । ଅବହେଳିତ ଶିଶୁମାନଙ୍କ ପାଇଁ କୌଣସି ନିର୍ଦ୍ଦିଷ୍ଟ ଯୋଜନା ନାହିଁ, ତେଣୁ ସେମାନେ ସ୍ୱାଭାବିକ ବିପଥଗାମୀ ହେଉଛନ୍ତି । ଫଳରେ ଶିଶୁମାନଙ୍କର ଭବିଷ୍ୟତ ଅନ୍ଧକାରମୟ ହେଉଛି । ଶିଶୁକନ୍ୟାଙ୍କ ଦେବଦାସୀ ରୂପେ ଗ୍ରହଣ କରାଯାଉଛି, ଏହା ତୁରନ୍ତ ବନ୍ଦ କରିବାକୁ କୁମାରୀ ମୋନାଲିସା ଦୃଢ଼ ମତପୋଷଣ କରିଥିଲେ । ସେ ହେଉଛନ୍ତି ଖାଗବେଳ ନଗର ପଶୁଧନ ନିରୀକ୍ଷକ ଶ୍ରୀ ଦ୍ୱିଜରାଜ ମଲ୍ଲିକଙ୍କ ଆଦର୍ଶ କନ୍ୟା ।

## ଧର୍ମକୁ ମିଥ୍ୟା ଓ ପ୍ରବଞ୍ଚନାର କବଳରୁ ବଞ୍ଚାଇବାକୁ ରାଜ୍ୟପାଳଙ୍କ ଆହ୍ୱାନ

ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ସମ୍ପ୍ରତି ଏକ ବିରାଟ ଜନସମାବେଶକୁ ଉଦ୍‌ବୋଧନ ଦେଇ କହିଛନ୍ତି ଯେ ଜଗନ୍ନାଥ ସଂସ୍କୃତି କେବଳ ଉତ୍କଳୀୟ ସଂସ୍କୃତି ନୁହେଁ । ଏହା ସର୍ବଭାରତୀୟ ସଂସ୍କୃତି । ସନାତନ ଧର୍ମ ଉପରେ ଆଧାରିତ ଏହି ସଂସ୍କୃତିର ସୁରକ୍ଷା ପାଇଁ ଧର୍ମକୁ ମିଥ୍ୟା ଓ ପ୍ରବଞ୍ଚନାର କବଳରୁ ବଞ୍ଚାଇବାକୁ ହେବ ବୋଲି ସେ ଆହ୍ୱାନ ଦେଇଛନ୍ତି ।

ଏଠାରେ ପ୍ରାୟ ୧୩୦ କିମି: ଦୂର ସୁକିନ୍ଦା ନିକଟସ୍ଥ ହାତୀବାଡ଼ିଠାରେ ରାଜ୍ୟପାଳ ଜଗନ୍ନାଥ ସଂସ୍କୃତି ଓ ଚେତନା ସୃଷ୍ଟି ପାଇଁ "ସ୍ମରଣ ଗୋଷ୍ଠୀ" ଦ୍ୱାରା ଆୟୋଜିତ ଏକ ସାଂସ୍କୃତିକ କାର୍ଯ୍ୟକ୍ରମକୁ ଉଦ୍‌ଘାଟନ କରିଛନ୍ତି । ଏକ୍ସପ୍ରେସ୍ ହାଇୱେର ଛୁରୁରୀ ଛକଠାରୁ ହାତୀବାଡ଼ି ପର୍ଯ୍ୟନ୍ତ ଶହ ଶହ ଲୋକ ରାସ୍ତା କଡ଼ରେ ଠିଆ ହୋଇ ରାଜ୍ୟପାଳଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଥିଲେ । ଶଙ୍ଖ, ହୁଳହୁଳି ଓ ବେଦ ମନ୍ତ୍ରର ଉଚ୍ଚାରଣ ମଧ୍ୟରେ ରାଜ୍ୟପାଳ ଶ୍ରୀ ଶର୍ମା ସ୍ମରଣ ଗୋଷ୍ଠୀର ଏହି ସାଂସ୍କୃତିକ ପୀଠ ପରିଦର୍ଶନ କରିଥିଲେ ଓ ଶ୍ରୀଜଗନ୍ନାଥଙ୍କ ପ୍ରତିକୃତି ଆଗରେ ପ୍ରଦୀପ ଜାଳି ଉଦ୍‌ଘାଟନ କରିଥିଲେ ।

ରାଜ୍ୟପାଳ ଶ୍ରୀ ଶର୍ମା ହଜାର ହଜାର ସଂଖ୍ୟାରେ ଉପସ୍ଥିତ ଥିବା ଜନସମାଜକୁ ଉଦ୍‌ବୋଧନ ଦେଇ କହିଥିଲେ ଯେ, ଧର୍ମ କୌଣସି ପୂଜା ପଦ୍ଧତି ନୁହେଁ, ଆଚରଣର ସର୍ବଶ୍ରେଷ୍ଠ ଅନୁଭୂତିହିଁ ବାସ୍ତବିକ୍ ଧର୍ମ । ଅଧର୍ମ, ଅଜ୍ଞାନ ଓ ଅତ୍ୟାଚାରର ତମସାଚ୍ଛାଦିତ ପୃଥିବୀରେ ଧର୍ମହିଁ ଏକମାତ୍ର ଆଶ୍ରୟ ଓ ଆଲୋକର ଉତ୍ସ । ଜିତେନ୍ଦ୍ରିୟ ହୋଇ ଶୁଦ୍ଧ ଆଚରଣ କରିବା ଓ ମହାନ୍ ମୂଲ୍ୟବୋଧର ଅବକ୍ଷୟକୁ ପ୍ରତିରୋଧ କରିବା ଦ୍ୱାରାହିଁ ସୁସ୍ଥ ସମାଜ ଗଠନ କରାଯାଇ ପାରିବ । ଶ୍ରୀଜଗନ୍ନାଥ ସଂସ୍କୃତିର ବାହକ ଏହି ସ୍ମରଣ ଗୋଷ୍ଠୀର ନିଷ୍ପାପ, ନିର୍ଲୋଭ ପ୍ରଚେଷ୍ଟା ଆମର ସଂସ୍କୃତି ଓ ଧର୍ମକୁ ଉଜ୍ଜୀବିତ କରି ରଖିବ ଓ ସୁଶୃଙ୍ଖଳିତ ସମାଜ ଗଠନରେ ସହାୟକ ହେବ ବୋଲି ସେ ଆଶାପୋଷଣ କରିଥିଲେ । ମୁନି, ଋଷିମାନେ ଯୁଗ ଯୁଗ ଧରି ସନ୍ମାର୍ଗ ପ୍ରଦର୍ଶନ ଭାବରେ ଆଚରଣଶୁଦ୍ଧି ପ୍ରତି ଗୁରୁତ୍ୱାରୋପ କରିଆସିଛନ୍ତି । ସମାଜରେ ସୁଖ, ଶାନ୍ତିର ବାତାବରଣ ରହିଲେ ଆମ ରାଜ୍ୟର ଅମାପ ପ୍ରାକୃତିକ ସମ୍ପଦ ସଠିକ୍ ବିନିଯୋଗ କରାଯାଇ ପାରିବ ଏବଂ ଶ୍ରୀଜଗନ୍ନାଥଙ୍କ ଦେଶ ବିଶ୍ୱ ଦରବାରରେ ଗୌରବମଣ୍ଡିତ ହେବ ବୋଲି ସେ ଆଶାପୋଷଣ କରିଥିଲେ ।

ଯୋଜନା ଓ ସମନ୍ୱୟ ବିଭାଗ ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଘ ଘଡ଼େଇ ଏହି କାର୍ଯ୍ୟକ୍ରମରେ ସମ୍ମାନିତ ଅତିଥି ରୂପେ ଯୋଗଦା କରି ଦେଶ ସ୍ୱାଧୀନ ହେବାର ୫୫ ବର୍ଷ ପରେ ଏହି ଅଞ୍ଚଳ ରାଜ୍ୟପାଳଙ୍କର ପ୍ରଥମ ପରିଦର୍ଶନ ପାଇଁ ଏହି ଅଞ୍ଚଳ ଲୋକମାନେ ତାଙ୍କ ପ୍ରତି କୃତଜ୍ଞ ବୋଲି ପ୍ରକାଶ କରିଥିଲେ । ଅଞ୍ଚଳର ଭୂତଳରେ ଅସୀମ ଖଣିଜ ସମ୍ପଦ ଓ ଜଳ ସମ୍ପଦ ଭରପୁ ହୋଇ ରହିଥିବାବେଳେ ଏ ଅଞ୍ଚଳବାସୀ ଏବେ ମଧ୍ୟ ଦାରିଦ୍ର୍ୟ କଷାଘାତରେ ପୀଡ଼ିତ । ଜଗନ୍ନାଥ ଧର୍ମ ଏକ ସନାତନ ଧର୍ମ । ଏହା ମାନବିକତାର ଧର୍ମ ବୋଲି ବର୍ଣ୍ଣନା କରି ଶ୍ରୀ ଘଡ଼େ କହିଥିଲେ ଯେ ସାମ୍ପ୍ରଦାୟିକତାର ବହୁ ଊର୍ଦ୍ଧ୍ୱରେ ରହି ଏହି ଜଗନ୍ନା ସଂସ୍କୃତି ସବୁ ଧର୍ମର ସମନ୍ୱୟ ପାଇଁ ପଥ ପ୍ରଦର୍ଶକ ହୋ ଆସିଛି ।

ସ୍ମରଣ ଗୋଷ୍ଠୀର ସମ୍ପାଦକ ଶ୍ରୀ ହରି ସାହୁ ରାଜ୍ୟପାଳ ଅଭିନନ୍ଦନ ଜଣାଇ ଏହି ଅନୁଷ୍ଠାନ ପ୍ରାୟ ୭୭ଟି କେନ୍ଦ୍ର ଓ ୧,୦୦ ଜଣ ପ୍ରଚାରକଙ୍କ ସାହାଯ୍ୟରେ ଲୋକମାନଙ୍କ ମଧ୍ୟରେ ଆଚରଣଶୁ ଓ ସୁସ୍ଥ ସମାଜ ଗଠନ କରିବା ପାଇଁ ଚେତନା ଜାଗ୍ରତ କରି ଆସୁ ବୋଲି ପ୍ରକାଶ କରିଥିଲେ । ନିକଟରେ ଏକ ସର୍ବଭାରତୀ ସ୍ତରରେ ଏହି କାର୍ଯ୍ୟକ୍ରମର ଏକ ସମ୍ମିଳନୀ ଅନୁଷ୍ଠିତ ହେବ ବୋ ସେ ଜଣାଇଥିଲେ । ସଞ୍ଚାଳକ ଶ୍ରୀ ସାହୁ ଉପସ୍ଥିତ ବରେଣ୍ ବ୍ୟକ୍ତିମାନଙ୍କୁ ଧନ୍ୟବାଦ ଅର୍ପଣ କରିବାସହ ସାରା ବିଶ୍ୱ ମାନବ ସଂସ୍କୃତିକୁ ଗୁହି ବସିଛି ବୋଲି କହିଥିଲେ । ପ୍ରଫେସ ହ୍ଲାଦାନନ୍ଦ ରାୟ ଓ ଶ୍ରୀ ବିଶ୍ୱଚରଣ ମହାନ୍ତି ଜଗନ୍ନାଥ ଚେତ ଉପରେ ପ୍ରବଚନ ଦେଇଥିଲେ ।

## ଶହୀଦ ଲକ୍ଷ୍ମଣ ନାୟକଙ୍କ ୯୩ ତମ ଜୟନ୍ତୀ ରାଜ୍ୟ ସ୍ତରୀୟ ଉତ୍ସବରେ ରାଜ୍ୟପାଳଙ୍କ ଉଦ୍‌ବୋଧନ ।

ସୂଚନା ଓ ଲୋକ ସମ୍ପର୍କ ବିଭାଗ ଏବଂ ଶବରୀ ସାଂସ୍କୃତି ସଂସଦର ମିଳିତ ଆନୁକୂଲ୍ୟରେ ସୂଚନା ଭବନଠାରେ ଶହୀ ଲକ୍ଷ୍ମଣ ନାୟକଙ୍କ ୯୩ ତମ ଜୟନ୍ତୀ ଉପଲକ୍ଷେ ରାଜ୍ୟସ୍ତରୀ ଉତ୍ସବ ଅନୁଷ୍ଠିତ ହୋଇଯାଇଛି । ରାଜ୍ୟପାଳ ଶ୍ରୀ ଯଜ୍ଞଦ ଶର୍ମା ଏହି ଉତ୍ସବରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇଥି ଏବଂ ଆଦିବାସୀ ସଂସ୍କୃତି ଉପରେ ଆଧାରିତ ଏକ ପ୍ରଦର୍ଶନୀ ଉଦ୍‌ଘାଟନ କରିଛନ୍ତି ।

ରାଜ୍ୟପାଳ ଶ୍ରୀ ଶର୍ମା ଏହି ଜୟନ୍ତୀ ବାସରେ ଶହୀଦ୍ ଲକ୍ଷ୍ମ ନାୟକଙ୍କ ଅମ୍ଳାନ ସ୍ମୃତି ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳୀ ଅର୍ପଣ କହିଥିଲେ ଯେ, ଆଦିବାସୀ ସମ୍ପ୍ରଦାୟରେ ଜନ୍ମଗ୍ରହଣ କରିଥି ମଧ୍ୟ ଲକ୍ଷ୍ମଣ ନାୟକ ଦେଶଭକ୍ତିର ଚରମ ପରାକାଷ୍ଠା ପ୍ରଦର୍ଶନ

ଦେଶର ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ବାସ୍ତବିକ୍ ସେ ଏକ ନାୟକ ଥିଲେ ଓ ଦେଶ ପାଇଁ ଶହୀଦ୍ ହୋଇ ଇତିହାସରେ ଅମର ହୋଇ ରହିଗଲେ । ପରିତାପର ବିଷୟ ଦେଶ ସ୍ୱାଧୀନତା ପ୍ରାପ୍ତିର ୪୯ ବର୍ଷପରେ ମଧ୍ୟ ଆମ ଲୋକମାନେ ଏ ଦେଶର ଗୌରବମୟ ଇତିହାସ ଜାଣିବା ପାଇଁ ଯେଉଁ ପରିମାଣରେ ଆଗ୍ରହ ପ୍ରକାଶ କରବା କଥା ତାହା ଦେଖାଯାଉନାହିଁ ।

୧୯୮୬ ମସିହାରେ ପ୍ରଖ୍ୟାତ ଐତିହାସିକ ଶ୍ରୀ ପି:ଏନ୍:ଗ୍ରେପ୍ରାଙ୍କ ଲିଖିତ 'ବ୍ରିଟିଶ ସିକ୍ରେଟ୍ ଡକୁମେଣ୍ଟସ୍' ପୁସ୍ତକରୁ କେତେକ ପଂକ୍ତି ଉଦ୍ଧାର କରି ରାଜ୍ୟପାଳ ଶ୍ରୀ ଶର୍ମା ସେ ବେଳର ବିରୋଧୀ ଦଳର ନେତା ଥିବା ସାର୍ ଉଇନ୍‌ଷ୍ଟନ୍ ଚର୍ଚିଲ୍ ଓ ପ୍ରଧାନମନ୍ତ୍ରୀ ଶ୍ରୀ ଅଟ୍‌ଲିଙ୍କ ମଧ୍ୟରେ ଭାରତକୁ ସ୍ୱାଧୀନତା ଦେବା ସପକ୍ଷରେ ବାର୍ତ୍ତାଳାପର ସୂଚନା ଦେଇ କହିଥିଲେ ଯେ, ଯୁବ ସମାଜ ଏ ଦେଶର ଇତିହାସ ଜାଣିବା ପାଇଁ ଆଗ୍ରହ ପ୍ରକାଶ କରିବା ଉଚିତ୍ । ଖାଲି କଥାରେ ନୁହେଁ, କାମ କରି ଦେଖାଇ ଦେବାର ବେଳ ଆସିଛି । କାରଣ ଆଜିର ଜାଗ୍ରତ ଜନତା ଆମ କାର୍ଯ୍ୟର ହିସାବ ଫର୍ଦ ଦେଖିବାକୁ ଚାହେଁ । ରାଜ୍ୟପାଳ ଶ୍ରୀ ଶର୍ମା ସତର୍କ କରାଇ ଦେଇଥିଲେ । ଆଜି ଯେଉଁମାନଙ୍କ ଉପରେ ଶାସନ ଭାର ନ୍ୟସ୍ତ ସେମାନଙ୍କର ଏ ଦିଗରେ ସମାଜ ପ୍ରତି ଦାୟିତ୍ୱ ଅତିବ ଗୁରୁତ୍ୱପୂର୍ଣ୍ଣ ବୋଲି ରାଜ୍ୟପାଳ ଚେତାଇ ଦେଇଥିଲେ ।

ଲକ୍ଷ୍ମଣ ନାୟକଙ୍କର ଅନ୍ତଃକରଣରେ ଯେଉଁ ଅଗ୍ନିସ୍ଫୁଲିଙ୍ଗ ଥିଲା, ଦେଶକୁ ସ୍ୱାଧୀନ କରିବାକୁ ଯେଉଁ ତୀବ୍ର ଜ୍ୱାଳା ଥିଲା ଯାହାକି ତାଙ୍କୁ ଆସବଳୀ ପାଇଁ ପ୍ରଭାବିତ କରିଥିଲା, ସେହି ଉଜ୍ଜ୍ୱଳ ବର୍ତ୍ତିକା ଆଜି ଆମମାନଙ୍କୁ ମାର୍ଗ ପ୍ରଦର୍ଶନ କରୁ ଓ ଦେଶବାସୀଙ୍କୁ ନୂତନ ଇତିହାସ ନିର୍ମାଣ କରିବାରେ ସହାୟକ ହେଉ ବୋଲି ରାଜ୍ୟପାଳ ଶ୍ରୀ ଶର୍ମା ଆଶାପୋଷଣ କରିଥିଲେ ।

ଏହି ରାଜ୍ୟସ୍ତରୀୟ ଉତ୍ସବରେ ସମ୍ମାନିତ ଅତିଥିଭାବେ ହରିଜନ ଓ ଆଦିବାସୀ କଲ୍ୟାଣ ବିଭାଗ ମନ୍ତ୍ରୀ ଶ୍ରୀ ଘାସିରାମ ମାଝି, ଓ ବିଧାନ ସଭାର ଉପବାଚସ୍ପତି ଶ୍ରୀ ପ୍ରହଲ୍ଲାଦ ଦୋରା ଅଂଶ ଗ୍ରହଣ କରି ଶହୀଦ୍ ଲକ୍ଷ୍ମଣ ନାୟକଙ୍କର ଗୁଣାବଳୀ ଓ ସ୍ୱାଧୀନତା ସଂଗ୍ରାମ ବେଳେ ତାଙ୍କର ଭୂମିକା ବର୍ଣ୍ଣନା କରିଥିଲେ । ମୁଖ୍ୟବକ୍ତା ଭାବେ ଯୋଗ ଦେଇ ସୂଚନା ଓ ଲୋକ ସମ୍ପର୍କ ଏବଂ ସଂସ୍କୃତି ମନ୍ତ୍ରୀ ଶ୍ରୀ ଶରତ କର କହିଥିଲେ ଯେ, ଲକ୍ଷ୍ମଣ ନାୟକଙ୍କର ସ୍ମୃତିରକ୍ଷାପାଇଁ ତାଙ୍କ ଜୀବନ ଉପରେ ଏକ ଚଳଚ୍ଚିତ୍ର ନିର୍ମାଣ କରାଯିବା ଓ ପାଠ୍ୟପୁସ୍ତକରେ ତାଙ୍କ ଜୀବନୀ ସ୍ଥାନ ପାଇବା ପାଇଁ ରାଜ୍ୟ ସରକାର ପ୍ରତିଜ୍ଞାବଦ୍ଧ ।

ଏହି ଉତ୍ସବରେ ଶିକ୍ଷ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଯାଦବ ମାଝି ସଭାପତିତ୍ୱ କରିଥିଲେ । ପ୍ରସିଦ୍ଧ ଓଡ଼ିଆ ଚିତ୍ର ତାରକା ଶ୍ରୀରାମ ପଣ୍ଡା ଶବରୀ ସାଂସ୍କୃତିକ ସଂସଦର ସମ୍ପାଦକ ମଧ୍ୟ ଏହି କାର୍ଯ୍ୟକ୍ରମରେ ଯୋଗଦାନ କରିଥିଲେ । ଶେଷରେ ନୃତ୍ୟ ଓ ସଙ୍ଗୀତ ବିଚିତ୍ରା ପରିବେଷଣ କରାଯାଇଥିଲା । ଏହି ଉତ୍ସବରେ ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ସହ, ସାମ୍ବାଦିକ ଓ ବିଭାଗୀୟ ବରିଷ୍ଠ କର୍ମକର୍ତ୍ତାଗଣ ଯୋଗ ଦେଇଥିଲେ ।

## ରାଜ୍ୟ ଯୋଜନା ବୋର୍ଡ ବୈଠକ

ଅଷ୍ଟମ ଯୋଜନା କାଳରେ ରାଜ୍ୟର ମୁଣ୍ଡପିଛା ଆୟକୁ ସର୍ବଭାରତୀୟ ସ୍ତରସହିତ ସମକକ୍ଷ କରିବାପାଇଁ ରାଜ୍ୟ ଯୋଜନାର ଆଭିମୁଖ୍ୟ ନିର୍ଦ୍ଧାରଣ କରାଯାଇଛି । ସଚିବାଳୟଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ରାଜ୍ୟ ଯୋଜନା ବୋର୍ଡ ବୈଠକରେ ଅଷ୍ଟମ ଯୋଜନାର ରୂପରେଖ ଓ ଅଗ୍ରାଧିକାର ସମ୍ପର୍କରେ ବିସ୍ତୃତ ଆଲୋଚନା କରାଯାଇଛି ।

ବୈଠକରେ ଭାଷଣ ଦେଇ ମୁଖ୍ୟମନ୍ତ୍ରୀ କହିଲେ ଯେ, ରାଜ୍ୟର ବିକାଶକୁ ତ୍ୱରାନ୍ୱିତ କରିବାପାଇଁ ଦ୍ୱିତୀୟ ଇସ୍ପାତ କାରଖାନା ନିର୍ମାଣ, ପାରାଦୀପ/ଦଇତାରୀଠାରେ ୬୦୦ ମେଟ୍ରିକ୍ ଟନ୍ କ୍ଷମତା ବିଶିଷ୍ଟ ତୈଳ ବିଶୋଧନାଗାର, ଆଲୁମିନିୟମ୍ କମ୍ପ୍ଲେକ୍ସ ଏବଂ ୪,୦୦୦ ମେଗାୱାଟ୍ ଶକ୍ତି ଉତ୍ପାଦନ ଭଳି ପାୱାର୍ ପ୍ଲାଣ୍ଟ ପ୍ରତିଷ୍ଠା ନିର୍ମାଣ ଉପରେ ବର୍ତ୍ତମାନ ରାଜ୍ୟ ସରକାର ସର୍ବାଧିକ ଗୁରୁତ୍ୱ ପ୍ରଦାନ କରୁଛନ୍ତି । ସେ କହିଲେ ଯେ, ଉନ୍ନୟନ କ୍ଷେତ୍ରରେ ସ୍ୱେଚ୍ଛାସେବୀ ସଙ୍ଗଠନଗୁଡ଼ିକ ପ୍ରଶଂସନୀୟ କାର୍ଯ୍ୟ କରୁଥିବାରୁ ସେମାନଙ୍କୁ ଯଥୋଚିତ ପ୍ରୋତ୍ସାହନ ଦିଆଯିବା ଉଚିତ୍ । ଯୋଜନାବୋର୍ଡର ବିଭିନ୍ନ ବୈଷୟିକ ଅନୁଭୂତି ସମ୍ପନ୍ନ ସଭ୍ୟମାନଙ୍କୁ ବିଭିନ୍ନ ବିଭାଗର କାର୍ଯ୍ୟକ୍ରମ ସହିତ ସମ୍ପୃକ୍ତ କରାଯିବା ସଙ୍ଗେ ସଙ୍ଗେ ଯୋଜନାବୋର୍ଡ ସରକାରୀ ବିଭାଗଗୁଡ଼ିକ ସହିତ ଅଧିକତର ସମନ୍ୱୟ ସ୍ଥାପନ କରିବା ପାଇଁ ସେ ପରାମର୍ଶ ଦେଇଥିଲେ ।

ଅଷ୍ଟମ ଯୋଜନାରେ ଦାରିଦ୍ର୍ୟ ଦୂରୀକରଣ କ୍ଷେତ୍ରରେ ଅଧିକ ପ୍ରାଧାନ୍ୟ ଦିଆଯିବା ସଙ୍ଗେ ସଙ୍ଗେ ଜନସଂଖ୍ୟା ନିୟନ୍ତ୍ରଣ, ନିଯୁକ୍ତି ସୁଯୋଗ ସୃଷ୍ଟି ସାଙ୍ଗକୁ ସ୍ୱାସ୍ଥ୍ୟସେବା, ସାକ୍ଷରତା ଅଭିଯାନ, ପାନୀୟ ଜଳଯୋଗାଣ, ଗ୍ରାମାଞ୍ଚଳରେ ରାସ୍ତାଘାଟର ସୁବିଧା ଓ ବିଜୁଳି ଯୋଗାଣ ଉପରେ ଗୁରୁତ୍ୱ ଦିଆଯିବା ପାଇଁ ଚିଠା ପ୍ରସ୍ତୁତ କରାଯାଇଛି । କୃଷି ଓ ଶିଳ୍ପର ବିକାଶପାଇଁ ଶକ୍ତି ଉତ୍ପାଦନରେ ଗୁରୁତ୍ୱକୁ ହୃଦୟଙ୍ଗମ କରାଯାଇ ଏହି କ୍ଷେତ୍ରରେ ଅଧିକ ପୁଞ୍ଜି ବିନିଯୋଗ କରିବାପାଇଁ ନିଷ୍ପତ୍ତି ନିଆଯାଇଛି । ଏତଦ୍ ବ୍ୟତୀତ ଜଳସେଚନ ସୁବିଧାର ସମ୍ପ୍ରସାରଣ ପାଇଁ ଅସମାପ୍ତ ଜଳସେଚନ ଯୋଜନାଗୁଡ଼ିକୁ ଶୀଘ୍ର ଶେଷ କରିବା ଉପରେ ଗୁରୁତ୍ୱ ଦିଆଯିବ । ବିଗତ ଚାରି ଦଶନ୍ଧି ଧରି ରାଜ୍ୟର କେତେକ ଅଞ୍ଚଳ ପଛରେ ପଡ଼ିଥିବାରୁ ଆଞ୍ଚଳିକ ବୈଷମ୍ୟ ସୃଷ୍ଟି ହୋଇଛି । ଏହାକୁ ଦୂର କରିବାପାଇଁ ଏବଂ ପଛୁଆ ଅଞ୍ଚଳଗୁଡ଼ିକୁ ରାଜ୍ୟର ଅନ୍ୟାନ୍ୟ ଅଞ୍ଚଳ ସହିତ ସମକକ୍ଷ କରିବାକୁ ୫୦୦ କୋଟି ଟଙ୍କା ଖର୍ଚ୍ଚ କରାଯାଇଛି । ଏକ ସ୍ୱତନ୍ତ୍ର ଉନ୍ନୟନ ଯୋଜନା କାର୍ଯ୍ୟ କରାଯିବ । ଅଷ୍ଟମ ଯୋଜନାରେ ଖର୍ଚ୍ଚ କରାଯିବା ପାଇଁ ଅଟକଳ ହୋଇଥିବା ୧୧,୫୦୦ କୋଟି ଟଙ୍କା ମଧ୍ୟରୁ ଶକ୍ତି ପାଇଁ ୩,୫୪୧ କୋଟି ଜଳସେଚନ ଓ ବନ୍ୟା ନିୟନ୍ତ୍ରଣ ପାଇଁ ୨,୬୪୦ କୋଟି ଶିଳ୍ପ ଓ ଖଣିଜ ପଦାର୍ଥର ବିକାଶ ପାଇଁ ୮୪୮ କୋଟି, କୃଷି ଓ ଆନୁଷ୍ଠାନିକ ଧନ୍ଦା ପାଇଁ ୮୨୪ କୋଟି ଏବଂ ଗ୍ରାମ୍ୟ ଉନ୍ନୟନ ପାଇଁ ୫୦୬ କୋଟି ଟଙ୍କା ବିନିଯୋଗ କରିବା ପାଇଁ ଚିଠା ପ୍ରସ୍ତୁତ କରାଯାଇଛି । ଏହାଦ୍ୱାରା ରାଜ୍ୟରେ ୫ ବର୍ଷ ମଧ୍ୟରେ ପ୍ରାୟ ୨୦

ଲକ୍ଷ ନିଯୁକ୍ତି ସୁଯୋଗ ସୃଷ୍ଟି କରାଯାଇ ବେକାରୀ ସମସ୍ୟା ସମାଧାନ ଦିଗରେ ସଫଳତା ଲାଭ କରାଯାଇପାରିବ ।

ଏହି ବୈଠକରେ ରାଜ୍ୟ ଯୋଜନାବୋର୍ଡର ଉପାଧ୍ୟକ୍ଷ ଶ୍ରୀ ରମାକାନ୍ତ ମିଶ୍ର ସ୍ୱାଗତ ଭାଷଣ ଦେଇ ଅଷ୍ଟମ ଯୋଜନାର ଆଭିମୁଖ୍ୟ ସମ୍ପର୍କରେ ସୂଚନା ଦେଇଥିଲେ । ଯୋଜନା ବୋର୍ଡର ସଭ୍ୟ ସର୍ବଶ୍ରୀ ଅଜିତ ମହାପାତ୍ର, ଅଚ୍ୟୁତ ଦାସ, ଡଃ ଜି.ଏନ୍.ସିହଂ, ଡଃ କିଶାନ୍ କାନୁନ୍‌ଗୋ, ଶ୍ରୀ ଜେ.ସିଂ ପ୍ରମୁଖ ଯୋଜନା ରୂପାୟନ ସମ୍ପର୍କରେ ମତାମତ ପ୍ରଦାନ କରିଥିଲେ । ଅନ୍ୟମାନଙ୍କ ମଧ୍ୟରେ ରାଜ୍ୟ ଯୋଜନା ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼େଇ, ଯୋଜନା ରୂପାୟନ କମିଟିର ଉପାଧ୍ୟକ୍ଷ ତଥା ପୂର୍ବତନ ମନ୍ତ୍ରୀ ଶ୍ରୀ ପ୍ରତାପ ଚନ୍ଦ୍ର ମହାନ୍ତି, ଯୋଜନା ବୋର୍ଡ ସଭ୍ୟ ଶ୍ରୀ ସୁଧାକର ନନ୍ଦ ଓ ଶ୍ରୀ ବାରିକ, ଉନ୍ନୟନ କମିଶନର ଶ୍ରୀ ଏସ୍. ସୁନ୍ଦରରାଜନ, ଅର୍ଥ ବିଭାଗର ପ୍ରମୁଖ ସଚିବ ଶ୍ରୀ ପ୍ରସନ୍ନ କୁମାର ପଟ୍ଟନାୟକ, କୃଷି ଓ ଗ୍ରାମୋନ୍ନୟନ କମିଶନର ଶ୍ରୀମତୀ ଚନ୍ଦ୍ରମଣୀ ନାରାୟଣ ସ୍ୱାମୀ, ରାଜସ୍ୱ ସଚିବ ଶ୍ରୀ ପି.କେ.ମିଶ୍ର ଶକ୍ତି ସଚିବ ଶ୍ରୀ ଶ୍ରୀନିବାସ ରଥ, ସେଚ ସଚିବ ଶ୍ରୀ ମଦନମୋହନ ମହାନ୍ତି ଓ ଶିଳ୍ପ ସଚିବ ଶ୍ରୀମତୀ ସରିତା ଜସ୍ୱନ୍ତ ଦାସ ପ୍ରମୁଖ ଉପସ୍ଥିତ ରହି ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## ବାଲିଗୁଡ଼ା କୃଷି ଜିଲ୍ଲାରେ ରବି କାର୍ଯ୍ୟକ୍ରମ ତ୍ୱରାନ୍ୱିତ

ଚଳିତ ରବି ଋତୁରେ ବାଲିଗଡ଼ା ଅତିରିକ୍ତ କୃଷି ଜିଲ୍ଲା ଅନ୍ତର୍ଗତ ବାଲିଗୁଡ଼ା ତୁମୁଡ଼ିବନ୍ଧ ଓ କୋଟଗଡ଼ ବ୍ଲକ୍‌ରେ ମୋଟ୍ ୨୭୭ ହେକ୍ଟର ଜମିରେ ଶସ୍ୟଜାତୀୟ ଫସଲ, ୫,୫୫୦ ହେକ୍ଟର ଜମିରେ ଡାଲିଜାତିୟ, ୧୧,୬୭୯ ହେକ୍ଟର ଜମିରେ ତୈଳବୀଜ, ୧,୦୨୪ ହେକ୍ଟର ଜମିରେ ପନିପରିବା ଓ ୨୨୫ ହେକ୍ଟର ଜମିରେ ଅନ୍ୟାନ୍ୟ ଫସଲ ଚାଷ ନିମନ୍ତେ ଲକ୍ଷ୍ୟଧାର୍ଯ୍ୟ କରାଯାଇଛି । ରାଜ୍ୟ ତଥା ଦେଶରେ ଡାଲି ଓ ତୈଳବୀଜ ଫସଲର ଅଭାବ ଓ ଆବଶ୍ୟକତାକୁ ଲକ୍ଷ୍ୟରଖି ଏହି ଦୁଇଟି ଫସଲ ଉପରେ ମୁଖ୍ୟତଃ ଗୁରୁତ୍ୱ ଆରୋପ କରାଯାଇଛି । ଏହି ତିନୋଟି ବ୍ଲକ୍‌ରେ ଥିବା ୭ଟି କ୍ଷୁଦ୍ର ଜଳସେଚନ ଯୋଜନା, ୧୭ଟି ଉଠା ଜଳସେଚନ ପ୍ରକଳ୍ପ, ୫୩୮ଟି ସେଚକୂପ, ୭୫ଟି ଜଳ ଅମଳ ପ୍ରକଳ୍ପ ଓ ଝରଣାଗୁଡ଼ିକରୁ ମିଳୁଥିବା ଜଳକୁ ପୂର୍ଣ୍ଣ ବିନିଯୋଗ କରି ମୋଟ୍ ୮୭୭ ହେକ୍ଟର ଜମିରେ ଜଳସେଚିତ ଡାଲୁଅ ଧାନ, ମକା, ଚିନାବାଦାମ ଓ ପନିପରିବା ଚାଷ କରିବା ନିମନ୍ତେ ଲକ୍ଷ୍ୟଧାର୍ଯ୍ୟ କରାଯାଇଛି । ଉତ୍ପାଦନ ବୃଦ୍ଧିରେ ରାସାୟନିକ ସାର ପ୍ରୟୋଗ ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ଉପଲବ୍ଧି କରି ଓ ଗତ ରବିଋତୁର ସାର ବ୍ୟବହାରକୁ ଆଖି ଆଗରେ ରଖି ଚଳିତ ରବିଋତୁରେ ପୂର୍ବବର୍ଷ ତୁଳନାରେ ଅଧିକ ସାର ପ୍ରୟୋଗର ଲକ୍ଷ୍ୟଧାର୍ଯ୍ୟ କରାଯାଇଛି ଏବଂ ଏଥିନିମନ୍ତେ ପ୍ରତି ବ୍ଲକ୍‌ର ସମବାୟ ସମିତିଗୁଡ଼ିକରେ ଆବଶ୍ୟକୀୟ ସାର ଓ କୀଟନାଶକ ଔଷଧ ମହଜୁଦ କରି ରଖିବା ପାଇଁ ଉଚିତ ପଦକ୍ଷେପ ଗ୍ରହଣ କରାଯାଇଛି । ଅଧିକ ଅମଳକ୍ଷମ ବିହନର ବହୁଳ ବ୍ୟବହାର ନିମନ୍ତେ ପ୍ରତି ବ୍ଲକ୍‌ରେ ଅଧିକ ଦୁଇଟି କରି ବିହନ ବିକ୍ରୟ କେନ୍ଦ୍ର ଖୋଲାଯିବାର ବ୍ୟବସ୍ଥା ହୋଇଛି । ଅବଶ୍ୟ କୃଷି ଲାଗୁ[...] ନିମନ୍ତେ ଚାଷୀମାନେ ଯେପରି ଆବଶ୍ୟକୀୟ କୃଷିଋଣ ପାଇପାରିବେ, ସେଥିପ୍ରତି ମଧ୍ୟ ବିଶେଷ ଧ୍ୟାନ ଦିଆଯାଉଛି । ଚଳିତ ରବିଋତୁରେ ସମନ୍ୱିତ ଆଦିବାସୀ ଉନ୍ନୟନ ଯୋଜନା, ବାଲିଗୁଡା ଆନୁକୂଲ୍ୟରେ ଏହି କୃଷିଜିଲ୍ଲା ଅନ୍ତର୍ଗତ ଆଦିବାସୀ ଚାଷୀମାନଙ୍କ ଜମିରେ ୪୨ ହେକ୍ଟର ଜମିରେ ଉନ୍ନତ ତୈଳବୀଜ ଚାଷ ପ୍ରଦର୍ଶନ ଓ ୬ଟି କୃଷକ ତାଲିମ୍‌ର ମଧ୍ୟ ବ୍ୟବସ୍ଥା କରାଯାଇଛି । ଏହାଛଡା ତୁମୁଡ଼ିବନ୍ଧ ବ୍ଲକ୍‌ର ବେଲଘରଠାରେ ପୋଡୁ ନିରାକରଣ ୩୩୦ ହେକ୍ଟର ଜମିରେ ଉନ୍ନତ ଧାନ, ସୋରିଷ, ମକା, ଚିନାବାଦାମ, ମୁଗ ଓ ବିରି ଚାଷ ନିମନ୍ତେ ସମସ୍ତ ସହାୟତା ଯୋଗାଇ ଦେବାର ମଧ୍ୟ ବ୍ୟବସ୍ଥା କରାଯାଇଛି ।

ଏହି ରବି କାର୍ଯ୍ୟକ୍ରମର ସଫଳ ରୂପାୟନ ନିମନ୍ତେ ବାଲିଗୁଡ଼ା ଅତିରିକ୍ତ କୃଷିଜିଲ୍ଲା ତରଫରୁ କ୍ଷେତ କର୍ମଚାରୀମାନଙ୍କର ଏକ ଦ୍ୱିଦିବସୀୟ ତାଲିମ୍ ଶିବିର ବାଲିଗୁଡାଠାରେ ଗତ ଅକ୍ଟୋବର ୨୫ ତାରିଖରେ ଅନୁଷ୍ଠିତ ହୋଇଥିଲା । ଏହି ତାଲିମ୍ କାର୍ଯ୍ୟକ୍ରମରେ ସ୍ଥାନୀୟ ଆଦିବାସୀ ଉନ୍ନୟନ ଯୋଜନାର ଯୋଜନା ପ୍ରଶାସକ ସଭାପତିତ୍ୱ କରିଥିଲେ । ଫୁଲବାଣୀର ଉପ କୃଷି ନିର୍ଦ୍ଦେଶକ ମୁଖ୍ୟ ଅତିଥି ଓ ବାଲିଗୁଡ଼ାର ଉପ ଜିଲ୍ଲାପାଳ ମୁଖ୍ୟବକ୍ତା ଭାବେ ଯୋଗ ଦେଇଥିଲେ । ଘୁମୁସର ଉଦୟଗିରିଠାରେ ଥିବା ଆଞ୍ଚଳିକ କୃଷି ଗବେଷଣାଗାରର ବରିଷ୍ଠ ବୈଜ୍ଞାନିକ ଓ ଜିଲ୍ଲାସ୍ତରୀୟ କୃଷି ବିଶେଷଜ୍ଞମାନେ ବିଭିନ୍ନ ରବି ଫସଲର ଉନ୍ନତ ଚାଷ ପ୍ରଣାଳୀ ବିଷୟରେ ତାଲିମ୍ ପ୍ରଦାନ କରିଥିଲେ । ଅତିରିକ୍ତ ଜିଲ୍ଲା କୃଷି ଅଧିକାରୀ ରବି କାର୍ଯ୍ୟକ୍ରମ ବିଷୟରେ ବିଶଦ ଧାରଣା ଦେବା ସଙ୍ଗେ ସଙ୍ଗେ ଏହାର ସଫଳ ରୂପାୟନ ନିମନ୍ତେ କ୍ଷେତ କର୍ମଚାରୀମାନଙ୍କୁ ପରାମର୍ଶ ଦେଇଥିଲେ ।

## ସାକ୍ଷରତା ଅଭିଯାନରେ ଗଞ୍ଜାମ ଜିଲ୍ଲାପାଳଙ୍କ ସାଇକେଲ ଯାତ୍ରା

ସମ୍ପ୍ରତି ଗଞ୍ଜାମ ଜିଲ୍ଲାପାଳ ଶ୍ରୀ ଜଗଦାନନ୍ଦ ପଣ୍ଡା ଆସ୍କାଠାରୁ ମଙ୍ଗଳପୁର ପର୍ଯ୍ୟନ୍ତ ୧୫ କିଲୋମିଟର ରାସ୍ତା ସାକ୍ଷରତା ଅଭିଯାନ ଉପଲକ୍ଷେ ସାଇକେଲରେ ଯାତ୍ରା କରିଥିଲେ । ଏହି ସାଇକେଲ ଯାତ୍ରାରେ ଭଞ୍ଜନଗର ଉପ ଜିଲ୍ଲାପାଳ, ଆସ୍କା ତହସିଲଦାର ଓ ବି.ଡି.ଓ. ଏବଂ ବିଭିନ୍ନ ଗ୍ରାମର ବହୁ ସ୍ୱେଚ୍ଛାସେବୀ ଯୁବକ ଅଂଶ ଗ୍ରହଣ କରିଥିଲେ । ଏହି ଅବସରରେ ତଡ଼େଇପଲ୍ଲୀ, ଗଣ୍ଡାପଲ୍ଲୀ, ଫୁଲସରପଲ୍ଲୀ ପ୍ରଭୃତି ଗ୍ରାମର ଲୋକମାନଙ୍କ ସହିତ ଶ୍ରୀ ପଣ୍ଡା ସାକ୍ଷରତା କାର୍ଯ୍ୟକ୍ରମ ଉପରେ ଆଲୋଚନା କରିଥିଲେ । ମଙ୍ଗଳପୁରଠାରେ ଏକ ବିରାଟ ସାଧାରଣ ସଭାରେ ଉଦ୍‌ବୋଧନ ଦେଇ ଜିଲ୍ଲାପାଳ କହିଲେ ଯେ ନିରକ୍ଷରତା ଦୂର ନହେଲେ, ଦେଶ ତଥା ନିଜର ଉନ୍ନତି ଅସମ୍ଭବ । ସେ ରାମାୟଣ ଓ ମହାଭାରତର ବିଭିନ୍ନ ଉଦାହରଣ ଦେଇ ଆସନ୍ତା ବର୍ଷ ଅଗଷ୍ଟ ୧୫ ତାରିଖ ପୂର୍ବରୁ ଗଞ୍ଜାମ ଜିଲ୍ଲାରେ ପ୍ରତ୍ୟେକ ନିରକ୍ଷର ଯେପରି ସାକ୍ଷର ହୋଇପାରିବେ, ସେଥିପାଇଁ ସମସ୍ତଙ୍କ ସହଯୋଗ କାମନା କରିଥିଲେ । ଏହି ସଭାରେ ଇଞ୍ଜିନିୟର ଶ୍ରୀ ଦୟାନିଧି ସା[...] ସଭାପତିତ୍ୱ କରିଥିଲେ ।

## ସର୍ବନିମ୍ନ ମଜୁରି ପ୍ରଦାନ ନିଷ୍ପତ୍ତି ନିଶ୍ଚିତ କାର୍ଯ୍ୟକାରୀ ହେବ

ସର୍ବନିମ୍ନ ୨୫ ଟଙ୍କା ମଜୁରି ପ୍ରଦାନ ସଂକ୍ରାନ୍ତ ନିଷ୍ପତ୍ତିରେ ମାନ୍ୟବର ହାଇକୋର୍ଟ ଦର୍ଶାଇଥିବା କେତେକ ବ୍ୟବସ୍ଥାଗତ ତ୍ରୁଟିର ସଂଶୋଧନ କରାଯାଇ, ସର୍ବନିମ୍ନ ମଜୁରି ପ୍ରଦାନ ନିଷ୍ପତ୍ତିକୁ ନିଶ୍ଚିତ ଭାବେ କାର୍ଯ୍ୟକାରୀ କରାଯିବ ବୋଲି ମାନ୍ୟବର ଶ୍ରମ ରାଷ୍ଟ୍ରମନ୍ତ୍ରୀ ପ୍ରଫୁଲ୍ଲ ସାମଲ ଜଣାଇଛନ୍ତି ।

ରାଜ୍ୟ ସରକାର ୨୫ ଟଙ୍କା ମଜୁରି ପ୍ରଦାନ ନିଷ୍ପତ୍ତିର ବୈଧତା ସମ୍ପର୍କରେ ମାନ୍ୟବର ହାଇକୋର୍ଟ କୌଣସି ଆପତ୍ତି ଦର୍ଶାଇ ନାହାନ୍ତି କିନ୍ତୁ ଏ ନିଷ୍ପତ୍ତିର କେତେକ ବ୍ୟବସ୍ଥା ଗତ ତ୍ରୁଟି ସମ୍ପର୍କରେ ରାୟରେ ଦର୍ଶାଯାଇଛି । ସରକାର ତୁରନ୍ତ ଏହି ତ୍ରୁଟି ବିଚ୍ୟୁତି ଗୁଡ଼ିକୁ ସଂଶୋଧନ କରି ୨୫ ଟଙ୍କା ସର୍ବନିମ୍ନ ମଜୁରି ନିଷ୍ପତ୍ତିକୁ କାର୍ଯ୍ୟକାରୀ କରିବା ନିମନ୍ତେ ଆବଶ୍ୟକୀୟ ପଦକ୍ଷେପ ଗ୍ରହଣ କରୁଛନ୍ତି । ତେଣୁ ଏ ସମ୍ପର୍କରେ କୌଣସି ମହଲରେ କୌଣସି ସନ୍ଦେହ ସୃଷ୍ଟି ହେବାର ଅବକାଶ ନାହିଁ । ସମସ୍ତ ଶିଳ୍ପ ସଂସ୍ଥା ଓ ଶ୍ରମିକ ସଙ୍ଗଠନମାନେ ମାନ୍ୟବର ହାଇକୋର୍ଟଙ୍କର ରାୟ ସମ୍ବନ୍ଧରେ ଅଯଥା ଆତଙ୍କିତ ନ ହୋଇ ଶିଳ୍ପ କ୍ଷେତ୍ରରେ ଶାନ୍ତି ବଜାୟ ରଖିବା ଆବଶ୍ୟକ ଏବଂ ସରକାରଙ୍କର ପରବର୍ତ୍ତୀ ନିର୍ଦ୍ଦେଶକୁ ଅପେକ୍ଷା କରିବା ଉଚିତ୍ ।

## ଏକ ସମୃଦ୍ଧ ଓ ଶକ୍ତିଶାଳୀ ଓଡ଼ିଶା ଗଠନ ଲାଗି ଯୁବ ସମାଜ ଆଗେଇ ଆସିବା ଉଚିତ

ପୁରୀ ଜିଲ୍ଲା ବାଲିଅଣ୍ଟାଠାରେ ପତିତପାବନ ଯୁବକ ସଂଘ ଆନୁକୂଲ୍ୟରେ ଅନୁଷ୍ଠିତ ସାଂସ୍କୃତିକ ଉତ୍ସବରେ ମୁଖ୍ୟ ଅତିଥି ଭାବେ ଯୋଗଦେଇ ଖାଦ୍ୟ ଓ ଯୋଗାଣ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ କହିଲେ ଯେ କ୍ଷୁଧା, ଦାରିଦ୍ର୍ୟ, ଦୁର୍ନୀତି ଓ ବେକାରୀର ଶିକାର ହୋଇ ଲୋକେ ତ୍ରାହି ତ୍ରାହି ଡାକ ଦେଉଛନ୍ତି । ଓଡ଼ିଶାର ସମୃଦ୍ଧି ପାଇଁ ଏକ ଜାଗ୍ରତ ଯୁବ ସମାଜ ବିପ୍ଳବର ଝଣ୍ଡା ଧରି ସଂଗ୍ରାମର ମଇଦାନ ଉପରେ ଅବତୀର୍ଣ୍ଣ ହେବାର ସମୟ ଆସିଛି । ଏ ଜାତିର ସଂସ୍କୃତି, ଐତିହ୍ୟ, ପରମ୍ପରା ସବୁ ମହାନ୍ । ସେଇ ମହାନ୍ ଭିତ୍ତିଭୂମି ଉପରେ ଠିଆ ହୋଇ ଏକ ସମୃଦ୍ଧ ଓ ଶକ୍ତିଶାଳୀ ଓଡ଼ିଶା ତିଆରି କରିବା ପାଇଁ ଯୁବ ସମାଜ ଆଗେଇ ଆସିବା ଦରକାର ।

ରାଜ୍ୟରେ ପ୍ରଚୁର ଜଳ ସମ୍ପଦ ରହିଛି । ଓଡ଼ିଶା ବହୁ ଖଣିଜ ସମ୍ପଦର ଗନ୍ତାଘର । ସ୍ୱାଧୀନତା ପ୍ରାପ୍ତିର ଦୀର୍ଘ ୪୪ ବର୍ଷ କଟିଯାଇଥିଲେ ମଧ୍ୟ ତୃଷୀର ଜମିକୁ ପାଣି ନାହିଁ, ଖଣିଜ ସମ୍ପଦକୁ ବିନିଯୋଗ କରି ରାଜ୍ୟର ଶିଳ୍ପକରଣ ହୋଇପାରୁ ନାହିଁ । ଏଥିପାଇଁ ଯୁବ ସମାଜ ସଂଗ୍ରାମ କରିବାକୁ ଶ୍ରୀ ହରିଚନ୍ଦନ ଆହ୍ୱାନ ଦେଇଥିଲେ ।

ବସ୍ତ୍ରୟନ ଶିଳ୍ପ ମନ୍ତ୍ରୀ ସୟଦ୍ ମୁସ୍ତାଫିଜ୍ ଅହମ୍ମଦ୍ ଏହି ଉତ୍ସବରେ ମୁଖ୍ୟ ବକ୍ତା ଭାବେ ଯୋଗଦେଇ କହିଲେ ଯେ ଓଡ଼ିଶା ବହୁ କ୍ଷେତ୍ରରେ ପଛରେ ପଡ଼ିଛି ଏବଂ ଏହାର ସର୍ବାଙ୍ଗୀନ ଉନ୍ନତି ପାଇଁ ଯୁବ ସମାଜ ସବୁ କାମରେ ଆଗଭର ହେବା ଉଚିତ । ଜାତୀୟ ସଂହତିକୁ ବଜାୟ ରଖିବା ପାଇଁ ନିଜ ଭିତରେ ଥିବା ସମସ୍ତ ପ୍ରକାର ଭେଦଭାବକୁ ଭୁଲି ସମସ୍ତେ କାନ୍ଧକୁ କାନ୍ଧ ମିଳାଇ କାମ କରିବା ଆବଶ୍ୟକ ବୋଲି ସେ କହିଥିଲେ ।

ଅନ୍ୟମାନଙ୍କ ମଧ୍ୟରେ ସର୍ବଶ୍ରୀ ପ୍ରଭାତ ତ୍ରିପାଠୀ, ଶଶିଭୂଷଣ ବେହେରା, ମୁରଲିଧର ମଙ୍ଗରାଜ ପ୍ରମୁଖ ଉଦ୍‌ବୋଧନ ଦେଇ ଯୁବ ସମାଜ ଜାଗ୍ରତ ପ୍ରହରୀ ଭାବେ କାର୍ଯ୍ୟ କରିବାକୁ ପରାମର୍ଶ ଦେଇଥିଲେ । ଏଥିରେ ଯୁବକ ସଂଘର ସଭାପତି ପୌରହିତ୍ୟ କରିଥିଲେ ।

## ଅନୁରାଧା ପୋଡ଼ୱାଲ୍ ଓ ପ୍ରାଣ ମିଶ୍ରଙ୍କୁ ସିନେ କ୍ରିଟିକ୍ ପକ୍ଷରୁ ସମ୍ବର୍ଦ୍ଧନା

ହିନ୍ଦି ଚଳଚ୍ଚିତ୍ର ଜଗତର ସୁନାମଧନ୍ୟା ପ୍ରଚ୍ଛଦପଟ୍ଟ ଗାୟିକା ଅନୁରାଧା ପୋଡ଼ୱାଲ୍‌ଙ୍କୁ ଓଡ଼ିଶା ସିନେ କ୍ରିଟିକ୍ ଆସୋସିଏସନ୍ ପକ୍ଷରୁ ଗତ ନଭେମ୍ବର ମାସ ୨୨ ତାରିଖରେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦିଆଯାଇଥିଲା ।

ଏହି ଅବସରରେ ସ୍ଥାନୀୟ "ସାଗର ହୋଟେଲ୍"ଠାରେ ଆୟୋଜିତ ଏକ ମନୋଜ୍ଞ ସାଂସ୍କୃତିକ ଉତ୍ସବରେ ରାଜ୍ୟ ସଂସ୍କୃତି ଏବଂ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର ମୁଖ୍ୟ ଅତିଥି ଓ ସାଧାରଣ ଅଭିଯୋଗ ତଥା ପେନ୍‌ସନ୍ ବିଭାଗ ମନ୍ତ୍ରୀ ଡଃ ପ୍ରସନ୍ନ କୁମାର ପାଟ୍ଟଶାଣୀ ସମ୍ମାନିତ ଅତିଥି ଭାବରେ ଯୋଗ ଦେଇଥିଲେ । ମନ୍ତ୍ରୀ ଦ୍ୱୟ ଓଡ଼ିଆ ଚଳଚ୍ଚିତ୍ର ସଙ୍ଗୀତ କ୍ଷେତ୍ରକୁ ଅନୁରାଧାଙ୍କ ଅବଦାନ ସମ୍ପର୍କରେ ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ ତାଙ୍କୁ ହିନ୍ଦୀ ଶାସ୍ତ୍ରୀୟ ଓ ଭକ୍ତି ସଙ୍ଗୀତ ତଥା ଚଳଚ୍ଚିତ୍ର ସଙ୍ଗୀତ ଜଗତର ଏକ ଅନବଦ୍ୟ ପ୍ରତିଭା ରୂପେ ବର୍ଣ୍ଣନା କରିଥିଲେ । ନିକଟରେ ତାଙ୍କ ସ୍ୱାମୀ ତଥା ସଙ୍ଗୀତ ନିର୍ଦ୍ଦେଶକ ଅରୁଣ ପୋଡ଼ୱାଲ୍‌ଙ୍କର ଅକାଳ ବିୟୋଗ ଘଟିଥିଲେ ମଧ୍ୟ ପ୍ରଭୁ ଜଗନ୍ନାଥଙ୍କ କରୁଣା ଲାଭ ଆଶାରେ ସେ ପୁରୀ ଭଜନ ସମାରୋହକୁ ଆସିଥିବାରୁ ତାଙ୍କ ପ୍ରତି ମନ୍ତ୍ରୀ ଦ୍ୱୟ ଆନ୍ତରିକତା ଜ୍ଞାପନ କରିଥିଲେ ।

ବିଶିଷ୍ଟ ସଙ୍ଗୀତଜ୍ଞ ଶ୍ରୀ ପ୍ରଫୁଲ୍ଲ କୁମାର କର ତାଙ୍କ ସଂକ୍ଷିପ୍ତ ଭାଷଣରେ ଅନୁରାଧାଙ୍କ ସହ ଓଡ଼ିଶାର ଦୀର୍ଘ ଦିନର ସମ୍ପର୍କ ବିଷୟରେ ସୂଚନା ଦେଇଥିଲେ । ସମ୍ବର୍ଦ୍ଧନାର ଉତ୍ତରରେ ଗାୟିକା ଅନୁରାଧା ଓଡ଼ିଶାର ସାଂସ୍କୃତିକ ପରମ୍ପରାର ଭୂୟସୀ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ତାଙ୍କର ସଙ୍ଗୀତ ସାଧନା କ୍ଷେତ୍ରରେ ଏହି ରାଜ୍ୟ ତାଙ୍କୁ ଯଥେଷ୍ଟ ପ୍ରେରଣା ଦେଇଛି ଏବଂ ଏଥିପାଇଁ ତାଙ୍କ ଜୀବନର ଦୁର୍ଦ୍ଦଶାଗ୍ରସ୍ତ ସମୟରେ ମଧ୍ୟ ସେ ଓଡ଼ିଶାକୁ ଟାଣିହୋଇ ଆସିଛନ୍ତି ବୋଲି ଉଲ୍ଲେଖ କରିଥିଲେ ।

ଓଡ଼ିଶା ସିନେ କ୍ରିଟିକ୍ ଆସୋସିଏସନ୍‌ର ସଭାପତି ଶ୍ରୀ ପ୍ରଦୋଷ ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ସମାବେଶରେ ଶ୍ରୀମତୀ ଅନୁରାଧା ପୋଡ୍‌ୱାଲ୍ ଏବଂ ବସେରେ ଅବସ୍ଥାପିତ ଖ୍ୟାତିସମ୍ପନ୍ନ ସାଉଣ୍ଡ ରେକର୍ଡ଼ିଷ୍ଟ ପ୍ରାଣ ମିଶ୍ରଙ୍କୁ ସ୍ୱତନ୍ତ୍ର ଭାବରେ ସିନେ କ୍ରିଟିକ୍ ଟ୍ରଫି ଓ ଉପଢୌକନ ପ୍ରଦାନ କରାଯାଇ ସମ୍ବର୍ଦ୍ଧିତ କରାଯାଇଥିଲା । ସେମାନଙ୍କ ଉଦ୍ଦେଶ୍ୟରେ ଲିଖିତ ମାନପତ୍ର ଆସୋସିଏସନ୍‌ର ସାଧାରଣ ସମ୍ପାଦକ ଶ୍ରୀ ଦିଲିପ୍ ହାଲି ପାଠ କରିଥିଲେ ।

ଏହି ସମାବେଶରେ ସାମ୍ବାଦିକ ସର୍ବଶ୍ରୀ ଗୋପାଳ ମହାପାତ୍ର, ପ୍ରଦ୍ୟୁମ୍ନ କୁମାର ମହାନ୍ତି ଓ ବିମଳ ସୁନ୍ଦର ରାୟ ପ୍ରମୁଖ ସହାୟତା କରିଥିଲେ । ଶେଷରେ ଆସୋସିଏସନ୍‌ର ଉପ ସଭାପତି ଶ୍ରୀ ପରିକ୍ଷିତ ଜେନା ଧନ୍ୟବାଦ ଅର୍ପଣ କରିଥିଲେ ।

## ପୂର୍ବରୁ ବାକୀ ପଡ଼ିଥିବା କେଶ୍ ଘଟଣା ସ୍ଥଳରେ ଫଇସଲା

ସଚିବାଳୟଠାରେ ପେନ୍‌ସନ୍ ଅଦାଲତର ୧୭ତମ ବୈଠକ ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ବିଭାଗ ମନ୍ତ୍ରୀ ଡଃ ପ୍ରସନ୍ନ କୁମାର ପାଟଶାଣୀଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଯାଇଛି । ଦୀର୍ଘଦିନ ଧରି ଫଇସଲା ହୋଇନଥିବା ଶକ୍ତି, ଗ୍ରାମ୍ୟ ଉନ୍ନୟନ, ପୂର୍ତ୍ତ, ଜଙ୍ଗଲ ଓ ପରିବେଶ, ମତ୍ସ୍ୟ ଓ ପଶୁ ସମ୍ପଦ ବିକାଶ, ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ଏବଂ କୃଷି ନିର୍ଦ୍ଦେଶାଳୟ, ପ୍ରଧାନ ମୁଖ୍ୟ ବନ୍ୟ ସଂରକ୍ଷକ, ସରକାରୀ ଛାପାଖାନା, ବାଲିଗୁଡ଼ା ସ୍କୁଲ ବିଭାଗ ଇନିସ୍‌ପେକ୍ଟର ଏବଂ ବୋର୍ଡ଼ ଅଫ୍ ରେଭିନ୍ୟୁ, କଟକର ମୋଟ୍ ୬୭ଟି କେଶ୍‌ର ଫଇସଲା ନିମନ୍ତେ ଏହି ଅଦାଲତର ବୈଠକ ନଭେମ୍ବର ୨୫ ତାରିଖ ଦିନ ଅନୁଷ୍ଠିତ ହୋଇଥିଲା ।

ଅବସର ଗ୍ରହଣ ପରେ ସରକାରୀ କର୍ମଚାରୀମାନେ ଯେପରି ସେମାନଙ୍କର ପେନ୍‌ସନ୍ ତୁରନ୍ତ ପାଇପାରିବେ, ସେଥିପାଇଁ ସମ୍ପୃକ୍ତ ବିଭାଗୀୟ କର୍ମକର୍ତ୍ତାମାନେ ବ୍ୟକ୍ତିଗତ ଭାବେ ଦୃଷ୍ଟି ଦେବାକୁ ବିଭାଗୀୟ ମନ୍ତ୍ରୀ ଡଃ ପାଟଶାଣୀ ପରାମର୍ଶ ଦେଇଥିଲେ । ଦୀର୍ଘଦିନ ଧରି ପଡ଼ିରହିଥିବା ପେନ୍‌ସନ୍ କେଶ୍‌ଗୁଡ଼ିକର ଆଶୁ ଫଇସଲା ନିମନ୍ତେ ଯେପରି ସବୁ ସ୍ତରରେ ତତ୍ପରତା ପ୍ରକାଶ ପାଏ, ସେଥିପାଇଁ ସମସ୍ତଙ୍କୁ ସେ ପରାମର୍ଶ ଦେଇଥିଲେ । ପେନ୍‌ସନ୍‌ଦାତାମାନେ ଯେପରି ଅଯଥା ହଇରାଣ ହରକତ ନହୁଅନ୍ତି, ସେଥିପାଇଁ ଉପଯୁକ୍ତ ଧ୍ୟାନ ଦେବାକୁ ସେ କହିଥିଲେ ।

ପୂର୍ବରୁ ବିଭାଗୀୟ ଶାସନ ସଚିବ ତଥା ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ରବି ନାରାୟଣ ଦାସ ଦୀର୍ଘଦିନ ଧରି ଫଇସଲା ହୋଇନଥିବା ପେନ୍‌ସନ୍ କେଶ୍‌ଗୁଡ଼ିକ ସମ୍ପର୍କରେ ସୂଚନା ଦେଇଥିଲେ ।

ଆଜିର ଏହି ବୈଠକରେ ଘଟଣା ସ୍ଥଳରେ ବିଭିନ୍ନ ବିଭାଗର ୮୭ଟି କେଶ୍ ଫଇସଲା ହେବା ସଙ୍ଗେ ସଙ୍ଗେ ୨୦ଟି କେଶ୍‌ର କାଗଜ ପତ୍ର ଠିକ୍‌ଠାକ୍ କରାଯାଇଛି ।

ଏହି ବୈଠକରେ ଅନ୍ୟମାନଙ୍କ ସମେତ ଓଡ଼ିଶାର ଏକାଉଣ୍ଟାଣ୍ଟ ଜେନେରାଲ୍ ଓ ସମ୍ପୃକ୍ତ ବିଭାଗର ବରିଷ୍ଠ କର୍ମକର୍ତ୍ତାମାନେ ଉପସ୍ଥିତ ରହି ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## ଜାତୀୟ ଫାର୍ମାସୀ ସପ୍ତାହ ପାଳନ

ଗତ ନଭେମ୍ବର ମାସ ୧୯ ତାରିଖରେ ମତ୍ସ୍ୟ ଓ ପଶୁ ସମ୍ପଦ ବିକାଶ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସୂର୍ଯ୍ୟନାରାୟଣ ପାତ୍ର ବ୍ରହ୍ମପୁର ଗାନ୍ଧୀନଗରସ୍ଥିତ "ରୋଲାଣ୍ଡ ଇନଷ୍ଟିଚ୍ୟୁଟ୍ ଅଫ୍ ଫାର୍ମାସ୍ୟୁଟିକାଲ୍ ସାଇନ୍‌ସ"ଠାରେ ଆୟୋଜିତ ଜାତୀୟ ଫାର୍ମାସୀ ସପ୍ତାହ ଉଦ୍‌ଘାଟନ ଉତ୍ସବରେ ମୁଖ୍ୟ ଅତିଥି ଭାବେ ଯୋଗଦେଇ ସେଠାରେ ଅଧ୍ୟୟନ କରୁଥିବା ଛାତ୍ରଛାତ୍ରୀମାନଙ୍କୁ କଳାହାଣ୍ଡି, କୋରାପୁଟ ଓ ଫୁଲବାଣୀ ଭଳି ଅନୁନ୍ନତ ଜିଲ୍ଲାଗୁଡ଼ିକରେ ସ୍ୱାସ୍ଥ୍ୟ ସେବା କାର୍ଯ୍ୟ କରିବାକୁ ନିଜକୁ ପ୍ରସ୍ତୁତ କରିବା ନିମନ୍ତେ ଉପଦେଶ ଦେଇଥିଲେ ।

ଏହି ଜାତୀୟ ଫାର୍ମାସୀ ସପ୍ତାହକୁ ସ୍ୱାସ୍ଥ୍ୟ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନା ଉଦ୍‌ଘାଟନ କରିଥିଲେ । ସେ କହିଲେ ଯେ କୌଣସି ବ୍ୟକ୍ତି କିମ୍ବା ଅନୁଷ୍ଠାନ କଳାହାଣ୍ଡି, କୋରାପୁଟ ଓ ଫୁଲବାଣୀ ଜିଲ୍ଲାରେ "ଫାର୍ମାସିଷ୍ଟ କଲେଜ" ଖୋଲିବା ନିମନ୍ତେ ଆଗ୍ରହୀ ହେଲେ ଉକ୍ତ ଅନୁଷ୍ଠାନକୁ ସ୍ୱୀକୃତି ଦେବା ନିମନ୍ତେ ସରକାର ସହାନୁଭୂତିର ସହ ବିଚାର କରିବେ ।

ଅପରାହ୍ନରେ ସ୍ୱାସ୍ଥ୍ୟ ମନ୍ତ୍ରୀ ଶ୍ରୀ ଜେନା ଆମ୍ବାପୁଆଠାରେ ଉକ୍ତ ଅନୁଷ୍ଠାନର ସ୍ଥାୟୀ ଗୃହର ଭିତ୍ତି ପ୍ରସ୍ତର ସ୍ଥାପନ କରିଥିଲେ ।

## ବିଦ୍ୟାଳୟମାନଙ୍କରେ ଜାତୀୟ ସଙ୍ଗୀତ ଗାନ କରାଯିବ

ରାଜ୍ୟର ସମସ୍ତ ବିଦ୍ୟାଳୟରେ ଜାତୀୟ ସଙ୍ଗୀତ ଗାନ କରାଯିବ । ପାଠପଢ଼ା ଦିନମାନଙ୍କରେ ବିଦ୍ୟାଳୟର ଛାତ୍ରଛାତ୍ରୀମାନେ ଏହା ମିଳିତ ଭାବେ ଗାନ କରିବା ସଙ୍ଗେ ସଙ୍ଗେ ବିଭିନ୍ନ ଉତ୍ସବ ଅବସରରେ ମଧ୍ୟ ଗାନ କରିବେ । ଏହା ଅବିଳମ୍ବେ କାର୍ଯ୍ୟକାରୀ କରାଯିବ ।

ଜାତୀୟ ସଙ୍ଗୀତ ସାମ୍ପ୍ରଦାୟିକ ସଦ୍‌ଭାବ ସୃଷ୍ଟି, ଦେଶର ଏକତା ରକ୍ଷା ଓ ଜାତୀୟ ସଂହତି ଆଣିବାରେ ଏକ ଶକ୍ତିଶାଳୀ ମାଧ୍ୟମ ହୋଇଥିବାରୁ ରାଜ୍ୟ ସରକାର ଏହି ନିଷ୍ପତ୍ତି ନେଇଛନ୍ତି ।

## ବାସହୀନଙ୍କୁ ଘରଡିହ ଯୋଗାଣ

ବାସହୀନଙ୍କୁ ଘରଡିହ ଯୋଗାଣ କାର୍ଯ୍ୟକ୍ରମରେ ଚଳିତ ଆର୍ଥିକ ବର୍ଷ ଆରମ୍ଭରୁ ଗତ ଅକ୍ଟୋବର ମାସ ଶେଷ ସୁଦ୍ଧା ମୋଟ୍ ୯ ହଜାର ୪୮ଟି ଘରଡିହ ଯୋଗାଇ ଦିଆଯାଇଛି । ଏଥିପାଇଁ ୧୯୯୨-୯୩ରେ ମୋଟ୍ ୬ ହଜାରଟି ଘରଡିହ ଯୋଗାଇ ଦେବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିବା ବେଳେ ଚଳିତ ଆର୍ଥିକ ବର୍ଷର ପ୍ରଥମ ୭ ମାସ ମଧ୍ୟରେ ଏହା ଧାର୍ଯ୍ୟ ଲକ୍ଷ୍ୟକୁ ଟପିଯାଇ ଶତକଡ଼ା

୨୮୪ ଭାଗ ସଫଳତା ହାସଲ କରାଯାଇଛି ବୋଲି ବିଂଶସୂତ୍ରୀ କାର୍ଯ୍ୟକ୍ରମ ଅଗ୍ରଗତି ସମ୍ପର୍କୀୟ ବିବରଣୀରୁ ଜଣାପଡ଼ିଛି ।

ଉକ୍ତ ବିବରଣୀରୁ ପ୍ରକାଶ ଯେ ଗତ ଅକ୍ଟୋବର ମାସରେ ୨୫୪ ଜଣଙ୍କୁ ନିଜ ନିଜର ବାସଗୃହ ନିର୍ମାଣ ନିମନ୍ତେ ଆର୍ଥିକ ସହାୟତା ଯୋଗାଇ ଦିଆଯାଇଛି । ଏହାକୁ ମିଶାଇ ଚଳିତ ଆର୍ଥିକ ବର୍ଷର ଗତ ଅକ୍ଟୋବର ସୁଦ୍ଧା ମୋଟ୍ ୧,୨୯୧ ଜଣ ଏଥିରେ ଉପକୃତ ହୋଇଛନ୍ତି ।

"ଇନ୍ଦିରା ଆବାସ" ଯୋଜନାରେ ଗତ ଅପ୍ରେଲରୁ ଅକ୍ଟୋବର ମାସ ଶେଷ ସୁଦ୍ଧା ତଫସିଲଭୁକ୍ତ ଜାତି ଓ ଉପଜାତିର ମୋଟ୍ ୫,୫୪୨ ଜଣ ଲୋକ ଉପକୃତ ହୋଇଛନ୍ତି ଏବଂ ଏ କ୍ଷେତ୍ରରେ ଚଳିତ ବର୍ଷ ପାଇଁ ଥିବା ଧାର୍ଯ୍ୟ ଲକ୍ଷ୍ୟର ଶତକଡ଼ା ୬୧ ଭାଗ ସଫଳତା ହାସଲ ହୋଇପାରିଛି । କେବଳ ଗତ ଅକ୍ଟୋବର ମାସରେ ଏହି କାର୍ଯ୍ୟକ୍ରମରେ ଉପକୃତ ହୋଇଥିବା ୬୩୬ ଜଣ ଏହାର ଅନ୍ତର୍ଭୁକ୍ତ ।

ଉକ୍ତ ସମସ୍ତ ମଧ୍ୟରେ ରାଜ୍ୟର ଆର୍ଥିକ ଦୁର୍ବଳ ଶ୍ରେଣୀ ଲୋକଙ୍କୁ ୨୯୦ଟି ଓ ନିମ୍ନ ଆୟକାରୀ ବ୍ୟକ୍ତିଙ୍କୁ ୬୫ଟି ବାସଗୃହ ଯୋଗାଇ ଦିଆଯାଇଛି ବୋଲି ଅକ୍ଟୋବର ମାସ ବିଂଶସୂତ୍ରୀ କାର୍ଯ୍ୟକ୍ରମ ଅଗ୍ରଗତି ବିବରଣୀରୁ ଜଣାପଡ଼ିଛି ।

## ବାୟୋଗ୍ୟାସ୍ ପ୍ଲାଣ୍ଟ ସ୍ଥାପିତ

ଗତ ଅକ୍ଟୋବର ମାସରେ ରାଜ୍ୟରେ ମୋଟ୍ ୯୦ଟି ବାୟୋଗ୍ୟାସ୍ ପ୍ଲାଣ୍ଟ ସ୍ଥାପନ କରାଯାଇଛି । ତନ୍ମଧ୍ୟରୁ କଟକ ଜିଲ୍ଲାରେ ୫୧ଟି, ବାଲେଶ୍ୱର ଜିଲ୍ଲାରେ ୯ଟି, ବଲାଙ୍ଗୀର ଓ ମୟୂରଭଞ୍ଜ ଜିଲ୍ଲାରେ ୬ଟି ଲେଖାଏଁ, ଢେଙ୍କାନାଳ ଜିଲ୍ଲାରେ ୫ଟି, ସମ୍ବଲପୁର ଜିଲ୍ଲାରେ ୪ଟି, କଳାହାଣ୍ଡି ଓ ସୁନ୍ଦରଗଡ଼ ଜିଲ୍ଲାରେ ୩ଟି ଲେଖାଏଁ, ପୁରୀ ଜିଲ୍ଲାରେ ୨ଟି ଏବଂ ଫୁଲବାଣୀ ଜିଲ୍ଲାରେ ଗୋଟିଏ ବାୟୋଗ୍ୟାସ୍ ପ୍ଲାଣ୍ଟ ସ୍ଥାପିତ ହୋଇଛି ।

ଚଳିତ ଆର୍ଥିକ ବର୍ଷରେ ଗତ ଅକ୍ଟୋବର ମାସ ଶେଷ ସୁଦ୍ଧା ରାଜ୍ୟରେ ମୋଟ୍ ୪,୬୭୭ଟି ବାୟୋଗ୍ୟାସ୍ ପ୍ଲାଣ୍ଟ ସ୍ଥାପନ କରାଯାଇଛି । ତନ୍ମଧ୍ୟରୁ ଗଞ୍ଜାମ ଜିଲ୍ଲାରେ ସର୍ବାଧିକ ୧,୦୦୦ଟି ଏବଂ ପୁରୀ, କୋରାପୁଟ, ମୟୂରଭଞ୍ଜ ଓ ସମ୍ବଲପୁର ଜିଲ୍ଲାରେ ୫୦୦ରୁ ଊର୍ଦ୍ଧ୍ୱ କରି ବାୟୋଗ୍ୟାସ୍ ପ୍ଲାଣ୍ଟ ନିର୍ମିତ ହୋଇଛି । ସେହିପରି କଟକ, କଳାହାଣ୍ଡି, ସୁନ୍ଦରଗଡ଼ ଜିଲ୍ଲାରେ ୩୦୦ରୁ ଊର୍ଦ୍ଧ୍ୱ ଲେଖାଏଁ ବାୟୋଗ୍ୟାସ୍ ପ୍ଲାଣ୍ଟ ସ୍ଥାପନ କରାଯାଇଛି ।

## କର୍ମଚାରୀ ବୀମା ଯୋଜନାରେ ଏକ ଲକ୍ଷରୁ ଊର୍ଦ୍ଧ୍ୱ ଶ୍ରମିକ ଉପକୃତ

ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ଓଡ଼ିଶା କର୍ମଚାରୀ ରାଜ୍ୟ ବୀମା ଯୋଜନା ଦ୍ୱାରା ଗତ ଅକ୍ଟୋବର ମାସରେ ବୀମାଭୁକ୍ତ ଏକ ଲକ୍ଷ ୫ ହଜାର ଶ୍ରମିକ ଓ ସେମାନଙ୍କ ପରିବାରବର୍ଗ ଉପକୃତ ହୋଇଛନ୍ତି । ଏ ବାବଦରେ ମୋଟ୍ ୨୨ ଲକ୍ଷ ୪୦ ହଜାର ଟଙ୍କା ବୀମା ନିଗମ ପକ୍ଷରୁ ସେମାନଙ୍କୁ ଦିଆଯାଇଛି । ଏହି ଅର୍ଥ ଶାରୀରିକ ଅସୁସ୍ଥତା, ସାମୟିକ ଅକ୍ଷମତା, ଜନ୍ମ ନିୟନ୍ତ୍ରଣ ପ୍ରୋତ୍ସାହନ, ପ୍ରସୂତିକାଳୀନ ସାହାଯ୍ୟ, ଶିଳ୍ପ ଶ୍ରମିକଙ୍କ ଉପରେ ନିର୍ଭରଶୀଳ ପରିବାର ବର୍ଗଙ୍କୁ ସାହାଯ୍ୟ ଏବଂ ଅନ୍ତ୍ୟେଷ୍ଟିକ୍ରିୟା ଇତ୍ୟାଦି ଖର୍ଚ୍ଚ ବାବଦରେ ଶ୍ରମିକମାନଙ୍କୁ ଦିଆଯାଇଛି ।

## ବିଂଶସୂତ୍ରୀ ଅନ୍ତର୍ଭୁକ୍ତ ବିଭିନ୍ନ ଶକ୍ତି ପ୍ରକଳ୍ପ କାର୍ଯ୍ୟକ୍ରମ

ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ବିଂଶସୂତ୍ରୀ କାର୍ଯ୍ୟକ୍ରମରେ ଗ୍ରାମ୍ୟ ବିଦ୍ୟୁତ୍‌କରଣ, ଜଳସେଚନ ପାଇଁ ଉଦ୍ଦିଷ୍ଟ ପମ୍ପସେଟ୍‌ଗୁଡ଼ିକୁ ବିଦ୍ୟୁତ୍ ସଂଯୋଗ, ଉନ୍ନତ ଚୁଲ୍ଲୀ ଯୋଗାଣ ଏବଂ ବାୟୋଗ୍ୟାସ୍ ପ୍ଲାଣ୍ଟ ସ୍ଥାପନ ଇତ୍ୟାଦି କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ ।

ଗତ ଅକ୍ଟୋବର ମାସ ବିଂଶସୂତ୍ରୀ କାର୍ଯ୍ୟକ୍ରମ ଅଗ୍ରଗତି ସମ୍ପର୍କୀୟ ବିବରଣୀ ଅନୁଯାୟୀ ଉକ୍ତ ମାସରେ ୮୨ଟି ଗ୍ରାମକୁ ବିଦ୍ୟୁତ୍‌କରଣ, ୨୮୬ଟି ପମ୍ପସେଟ୍‌କୁ ବିଦ୍ୟୁତ୍ ସଂଯୋଗ, ୨,୯୯୯ଟି ଉନ୍ନତ ଚୁଲ୍ଲୀ ଯୋଗାଣ ଓ ୯୦ଟି ବାୟୋଗ୍ୟାସ୍ ପ୍ଲାଣ୍ଟ ସ୍ଥାପନ କରାଯାଇଛି । ଏହାକୁ ମିଶାଇ ଚଳିତ ଆର୍ଥିକ ବର୍ଷର ଅପ୍ରେଲଠାରୁ ଅକ୍ଟୋବର ମାସ ଶେଷ ସୁଦ୍ଧା ପ୍ରଥମ ସାତମାସ ମଧ୍ୟରେ ମୋଟ୍ ୩୦୦ଟି ଗ୍ରାମକୁ ବିଦ୍ୟୁତ୍‌କରଣ, ୧,୬୫୨ଟି ପମ୍ପସେଟ୍‌କୁ ବିଦ୍ୟୁତ୍ ସଂଯୋଗ, ୨୧,୬୩୩ଟି ଉନ୍ନତ ଚୁଲ୍ଲୀ ଯୋଗାଣ ଏବଂ ୪,୬୭୭ଟି ବାୟୋଗ୍ୟାସ୍ ପ୍ଲାଣ୍ଟ ସ୍ଥାପନ କରାଯାଇଛି ବୋଲି ଉକ୍ତ ବିବରଣୀରୁ ଜଣାପଡ଼ିଛି ।

## ଅସୁରେଶ୍ୱରଠାରେ କୀରଣବାଳା ଇନ୍‌ଡ଼ୋର ଚିକିତ୍ସା ଗୃହ ରାଜ୍ୟପାଳ ଉଦ୍‌ଘାଟନ କଲେ

କଟକଠାରୁ ପ୍ରାୟ ୪୫ କି: ମି: ଦୂର ଅସୁରେଶ୍ୱରଠାରେ ୬୫,୦୦୦ ଟଙ୍କା ବ୍ୟୟରେ ନିର୍ମିତ ଏକ ଇନ୍‌ଡ଼ୋର ଚିକିତ୍ସା ଗୃହକୁ ଓଡ଼ିଶାର ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ଉଦ୍‌ଘାଟନ କରିଛନ୍ତି । ଊନବିଂଶ ଶତାବ୍ଦୀର ଶେଷ ଭାଗରେ କର୍ମବୀର ଗୌରୀଶଙ୍କରଙ୍କ ହସ୍ତରେ ଏକ ଦାତବ୍ୟ ଚିକିତ୍ସାଳୟଟି ପ୍ରତିଷ୍ଠିତ ହୋଇ ଗ୍ରାମାଞ୍ଚଳରେ ସ୍ୱାସ୍ଥ୍ୟ ସେବା କରି ଆସୁଛି ।

ଏହି ଉପଲକ୍ଷେ ଆୟୋଜିତ ଏକ ବିରାଟ ଜନସଭାକୁ ଉଦ୍‌ବୋଧନ ଦେଇ ରାଜ୍ୟପାଳ ଶ୍ରୀ ଶର୍ମା କହିଥିଲେ ଯେ ଭାରତର ଭାଗ୍ୟଶ୍ରୀ ଓ ପ୍ରାଣକେନ୍ଦ୍ର ହେଉଛି ଏହାର ଗ୍ରାମଗୁଡ଼ିକ । ଏହି ସତ୍ୟକୁ ପ୍ରାଣେ ପ୍ରାଣେ ଅନୁଭବ କରି ଜାତିର ପିତା ମହାତ୍ମାଗାନ୍ଧୀ ଓ ଓଡ଼ିଶାର ବରପୁତ୍ର କର୍ମବୀର ଗୌରୀଶଙ୍କର ଇତ୍ୟାଦି ସେବେଳର ମହାମାନବମାନେ ଗ୍ରାମାଞ୍ଚଳଗୁଡ଼ିକୁ ସମୃଦ୍ଧ କରିବାକୁ ଆହ୍ୱାନ ଦେଇଥିଲେ । ଗ୍ରାମେ ଗ୍ରାମେ ଶିକ୍ଷାୟତନ, ଚିକିତ୍ସାକେନ୍ଦ୍ର ଇତ୍ୟାଦି ଗଢ଼ି ଉଠୁ ଓ ରାସ୍ତାଘାଟ ଉନ୍ନତି ହେଉ ଏହା ଥିଲା ସେମାନଙ୍କର କାମନା । ଆମର ସହରଗୁଡ଼ିକ ବ୍ୟବସାୟିକ କେନ୍ଦ୍ର ହୋଇପାରେ କିନ୍ତୁ ଜୀବନର ଆଧାର ନୁହେଁ । ଭାରତର

୮୦ କୋଟି ଲୋକଙ୍କର ପେଟକୁ ମୁଠାଏ ଖାଇବାକୁ ଦେବା, ଅଗଣିତ ଲୋକଙ୍କୁ ଲଜ୍ଜାଛାଦନ ପାଇଁ ବସ୍ତ୍ର ଯୋଗାଇ ଦେବା, ଉଦ୍ୟୋଗ ଚଳାଇବା ପାଇଁ ଶ୍ରମଶକ୍ତି ଓ ଦେଶରକ୍ଷା ପାଇଁ ସୈନିକ ଆବଶ୍ୟକତା ପୂରଣ କରିବାକୁ ଗ୍ରାମ ଉପରେ ନିର୍ଭର କରିବାକୁ ପଡ଼ିଥାଏ । ଯେଉଁ ଗ୍ରାମାଞ୍ଚଳର ସାହାଯ୍ୟ ବିନା କୌଣସି ଆବଶ୍ୟକତା ପୂରଣ କରି ହେବନି, ସେଗୁଡ଼ିକ ଆଦୌ ଉପେକ୍ଷା କରାଯାଇ ନପାରେ ବୋଲି ସେ କହିଥିଲେ । ମହାନ ବଟପ୍ରୁତ ଶ୍ରୀ ଗୌରୀଶଙ୍କରଙ୍କ ସ୍ମୃତି ପ୍ରତି ଭକ୍ତିପୂତ ଶ୍ରଦ୍ଧାଞ୍ଜଳୀ ଜ୍ଞାପନ କରି ରାଜ୍ୟପାଳ କହିଥିଲେ ଯେ ତାଙ୍କର ପ୍ରେରଣା ଏ ଅଞ୍ଚଳକୁ ସମୃଦ୍ଧ କରିବାରେ ସହାୟକ ହେବ ।

ସମ୍ମାନିତ ଅତିଥି ଭାବେ ଯୋଗ ଦେଇ ସ୍ୱାସ୍ଥ୍ୟମନ୍ତ୍ରୀ ଶ୍ରୀ ବୈରାଗୀ ଜେନା ଜାତୀୟ ସ୍ୱାସ୍ଥ୍ୟନୀତି ସମ୍ପର୍କରେ ଉଲ୍ଲେଖ କରି କହିଥିଲେ ଯେ ଶତାବ୍ଦୀର ଶେଷ ସୁଦ୍ଧା ପ୍ରତ୍ୟେକ ଲୋକଙ୍କ ପାଖରେ ସ୍ୱାସ୍ଥ୍ୟ ସେବା ପହଞ୍ଚାଇବା ପାଇଁ ସରକାର ଦୃଢ଼ ପ୍ରତିଜ୍ଞ । ଗ୍ରାମାଞ୍ଚଳରେ ଥିବା ଛୋଟ ଛୋଟ ଚିକିତ୍ସା କେନ୍ଦ୍ରଗୁଡ଼ିକୁ କମ୍ୟୁନିଟି ହେଲ୍‌ଥ ସେଣ୍ଟରରେ ପରିଣତ କରାଯିବାର କାର୍ଯ୍ୟ ଆରମ୍ଭ ହୋଇଛି । ଏ ପର୍ଯ୍ୟନ୍ତ ୧୦୦ଟି ଅତିରିକ୍ତ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ପ୍ରତିଷ୍ଠା କରାଯିବା ସହ ଗ୍ରାମାଞ୍ଚଳରେ ହୋମିଓପାଥିକ, କବିରାଜୀ ଓ ଅନ୍ୟାନ୍ୟ ଚିକିତ୍ସା ପଦ୍ଧତିର ଲୋକପ୍ରିୟତା ଥିବା ଯୋଗୁଁ ପ୍ରାୟ ୧୦୦ ଏହି ପ୍ରକାର ଚିକିତ୍ସା କେନ୍ଦ୍ର ମଧ୍ୟ ଖୋଲା ଗଲାଣି । ଏହି ଅଞ୍ଚଳରେ ଶିକ୍ଷାର ପ୍ରସାର ଉନ୍ନତ ଥିଲେ ମଧ୍ୟ ଶିଶୁ ମୃତ୍ୟୁହାର ଏ ଅଞ୍ଚଳରେ ବଢ଼ିଥିବା ଏକ ଚିନ୍ତାର ବିଷୟ ହୋଇଛି । ଏହାର ସମାଧାନ ପାଇଁ ଉନ୍ନତ ସ୍ୱାସ୍ଥ୍ୟ ସେବା ଯୋଗାଇ ଦେବାର ବ୍ୟବସ୍ଥା କରାଯାଉଛି ବୋଲି ଶ୍ରୀ ଜେନା ପ୍ରକାଶ କରିଥିଲେ ।

ଏହି ଉଦ୍‌ଘାଟନୀ ସଭାରେ ଅଧ୍ୟକ୍ଷତା କରି ରାଜ୍ୟ ସୂଚନା ଓ ଲୋକସମ୍ପର୍କ ଏବଂ ସଂସ୍କୃତି ମନ୍ତ୍ରୀ ଶ୍ରୀ ଶରତ କୁମାର କର କହିଥିଲେ ଯେ ଏ ଅଞ୍ଚଳ ଏକ ସାଂସ୍କୃତିକ ପୀଠ ହୋଇ ଥିବାରୁ ଏ ଅଞ୍ଚଳରେ ରାସ୍ତାଘାଟର ଉନ୍ନତି ଓ ଚିକିତ୍ସାର ଅଧିକ ସୁଯୋଗ ପାଇଁ ରାଜ୍ୟ ସରକାର ନିଶ୍ଚିୟ ବିଚାର କରିବେ ।

ଶେଷରେ ରାଜ୍ୟପାଳ ବାର୍ଦ୍ଧକ୍ୟ ଭତ୍ତା ଓ ବିଧବା ଭତ୍ତାଗୁଡ଼ିକ ବଣ୍ଟନ କରିଥିଲେ ।

## ରାଜ୍ୟରେ ପରିବାର କଲ୍ୟାଣ କାର୍ଯ୍ୟକ୍ରମର ଅଗ୍ରଗତି

ରାଜ୍ୟରେ ପରିବାର କଲ୍ୟାଣ କାର୍ଯ୍ୟକ୍ରମ ଗତ ସେପ୍ଟେମ୍ବର ଓ ଅକ୍ଟୋବର ମାସରେ ଯଥାକ୍ରମେ ମୋଟ୍ ୧୧,୧୦୬ ଜଣ ଏବଂ ୧୧,୬୦୭ ଜଣ ଜନ୍ମ ନିୟନ୍ତ୍ରଣ ଅସ୍ତ୍ରୋପଚାର କରିଛନ୍ତି । ସେହିପରି ସେପ୍ଟେମ୍ବର ମାସରେ ୭୩,୦୬୫ ଜଣ ଏବଂ ଅକ୍ଟୋବର ମାସରେ ୭୩,୫୬୦ ଜଣ ମହିଳା ଲୁପ୍ ଗ୍ରହଣ କରିଛନ୍ତି । ଏହା ବ୍ୟତୀତ ସେପ୍ଟେମ୍ବର ମାସରେ ୫୭,୬୬୧ଟି ଓ ଅକ୍ଟୋବର ମାସରେ ୬୦,୮୦୮ଟି ଓରାଲ୍ ପିଲ୍ ମହିଳାମାନଙ୍କ ମଧ୍ୟରେ ବଣ୍ଟନ କରାଯାଇଛି ବୋଲି ସ୍ୱାସ୍ଥ୍ୟ ବିଭାଗ ରିପୋର୍ଟରୁ ଜଣାପଡ଼ିଛି ।

ସାର୍ବଜନିନ ଟିକାଦାନ କାର୍ଯ୍ୟକ୍ରମରେ ସେପ୍ଟେମ୍ବର ଅକ୍ଟୋବର ମାସରେ ଯଥାକ୍ରମେ ୫୨,୪୯୧ ଜଣ ଏବଂ ୫୩,୬ ଜଣ ଗର୍ଭବତୀ ମହିଳାଙ୍କୁ ଟି: ଟି:, ୫୭,୨୨୭ ଜଣ ଓ ୫୮,୬ ଜଣ ଶିଶୁଙ୍କୁ ଡ଼ି:ପି:ଟି:, ୫୭,୧୦୫ ଜଣ ୫୮,୬୯୧ ଜଣ ଶିଶୁ ପୋଲିଓ, ୬୦,୧୩୨ ଜଣ ଓ ୬୨,୬୯୯ ଜଣ ଶିଶୁଙ୍କୁ ବି:ସି:ଜି: ଏ ୪୨,୪୭୮ ଜଣ ଓ ୪୫,୨୩୫ ଜଣ ଶିଶୁଙ୍କୁ ମିଳିମିଳା ପ୍ରତିଷେଧ ଟିକା ଦିଆ ଯାଇଛି ।

ଏହା ବ୍ୟତୀତ ସେପ୍ଟେମ୍ବର ଓ ଅକ୍ଟୋବର ମାସ ପାଞ୍ଚବର୍ଷର ଯଥାକ୍ରମେ ୯୦,୧୦୨ ଜଣ ଓ ୭୫,୬୫୨ ଜଣ ଶିଶୁ ଡ଼ି:ଟି:, ଦଶବର୍ଷର ଯଥାକ୍ରମେ ୬୫,୪୭୨ ଜଣ ଓ ୫୯,୭୦୩ ଜ ପିଲାଙ୍କ ଟି:ଟି: ଏବଂ ୧୬ ବର୍ଷର ଯଥାକ୍ରମେ ୪୦,୭୮୧ ଜଣ ୩୮,୪୦୮ ଜଣ ପିଲାଙ୍କୁ ଟି:ଟି: ଦିଆଯାଇ ଉପକୃ କରାଯାଇଛି ।

ସେହିପରି ସେପ୍ଟେମ୍ବର ଓ ଅକ୍ଟୋବର ମାସରେ ପୁଷ୍ଟିକ ଖାଦ୍ୟ ଅଭାବଜନିତ ରକ୍ତହୀନତା ରୋଗରେ ପୀଡ଼ିତ ଯଥାକ୍ର ୪୦,୭୬୫ ଜଣ ଓ ୪୩,୯୮୦ ଜଣ ମହିଳା ଏବଂ ୭୨,୫୮୬ ଓ ୬୨,୭୮୮ ଜଣ ଶିଶୁଙ୍କୁ ଚିକିତ୍ସା କରାଯାଉଥିବା ବେ ଶିଶୁମାନଙ୍କ ମଧ୍ୟରେ ଯଥାକ୍ରମେ ୧,୧୪,୪୧୪ଟି ଓ ୧,୧୪,୧୯ ଭିଟାମିନ୍ 'କ' ବଟିକା ବଣ୍ଟନ କରାଯାଇଥିବାର ସ୍ୱାସ୍ଥ୍ୟ ଓ ପରି କଲ୍ୟାଣ ବିଭାଗ ଦ୍ୱାରା ପ୍ରକାଶିତ ବିବରଣୀରୁ ଜଣାଯାଇଛି ।

## ବିଂଶସୂତ୍ରୀ ଅନ୍ତର୍ଭୁକ୍ତ ସ୍ୱାସ୍ଥ୍ୟ ସେବା କାର୍ଯ୍ୟକ୍ରମର ଅଗ୍ରଗତି

ରାଜ୍ୟରେ କାର୍ଯ୍ୟକାରୀ କରାଯାଉଥିବା ବିଂଶସୂତ୍ରୀ କାର୍ଯ୍ୟକ୍ରମ 'ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ ଯୋଜନା' ଅନ୍ତର୍ଭୁକ୍ତ । ତଦନୁଯାୟୀ ଚ ଆର୍ଥିକ ବର୍ଷ ଆରମ୍ଭରୁ ଗତ ଅକ୍ଟୋବର ମାସ ଶେଷ ସୁ ରାଜ୍ୟରେ ୩ଟି ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦ୍ର ପ୍ରତିଷ୍ଠା କରାଯାଇ ଚଳିତ ବର୍ଷ ୩୫ଟି ଏହିପରି କେନ୍ଦ୍ର ସ୍ଥାପନ ସକାଶେ ଲକ୍ଷ୍ୟଧା କରାଯାଇଥିଲା ବେଳେ ଅକ୍ଟୋବର ମାସରେ ଏହି ତିନୋଟି କେ ପ୍ରତିଷ୍ଠା କରାଯାଇଛି । ଏହା ବ୍ୟତୀତ ଉକ୍ତ ସମୟ ମଧ୍ୟ ସୁରୋଟି ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ସ୍ଥାପନ କରାଯାଇଛି ।

ସାର୍ବଜନୀନ ଟିକାଦାନ କାର୍ଯ୍ୟକ୍ରମରେ ଗତ ଅକ୍ଟୋ ମାସରେ ୫୮,୬୩୦ ଜଣ ଶିଶୁଙ୍କୁ ଡ଼ି:ପି:ଟି:, ୫୮,୬୯୦ ଜଣ ଶି ପୋଲିଓ ଓ ୬୨,୮୦୦ ଜଣ ଶିଶୁଙ୍କୁ ଯକ୍ଷ୍ମା ପ୍ରତିଷେଧକ ଟି ଦିଆଯାଇଛି । ଏହାକୁ ମିଶାଇ ଚଳିତ ବର୍ଷ ଆରମ୍ଭରୁ ଅକ୍ଟୋବର ଶେଷ ସୁଦ୍ଧା ମୋଟ୍ ୩ ଲକ୍ଷ ୩୧ ହଜାର ୮୨୦ ଜ ଡ଼ି:ପି:ଟି:, ୩ ଲକ୍ଷ ୩୦ ହଜାର ୬୬୦ ଜଣଙ୍କୁ ପୋଲିଓ ଏବଂ ଲକ୍ଷ ୩ ହଜାର ୯୯୩ ଜଣଙ୍କୁ ବି:ସି:ଜି: ଟିକା ଦିଆଯାଇ କ୍ଷେତ୍ରରେ ଚଳିତ ବର୍ଷ ପାଇଁ ଥିବା ଧାର୍ଯ୍ୟ ଲକ୍ଷ୍ୟର ଯଥା ଶତକଡ଼ା ୪୧ ଭାଗ, ୪୧ ଭାଗ ଓ ୫୦ ଭାଗ ସଫଳତା ହା

କରାଯାଇ ପାରିଛି ବୋଲି ବିଂଶସୂତ୍ରୀ କାର୍ଯ୍ୟକ୍ରମ ଅଗ୍ରଗତି ସଂପର୍କୀୟ ବିବରଣୀରୁ ଜଣାପଡ଼ିଛି ।

## ୧୯୯୦ ମସିହାରେ ୧୨,୪୯୧ ଜଣଙ୍କୁ କର୍ମ ନିଯୁକ୍ତି ଦିଆଯାଇଛି

ଗତବର୍ଷ ରାଜ୍ୟର କର୍ମ ନିଯୋଜନ କାର୍ଯ୍ୟାଳୟଗୁଡ଼ିକରେ ପଞ୍ଜିକାଭୁକ୍ତ ହୋଇଥିବା ଚାକିରୀ ଅନ୍ୱେଷଣକାରୀମାନଙ୍କ ମଧ୍ୟରୁ ମୋଟ୍ ୧୨ ହଜାର ୪୯୧ ଜଣ ବ୍ୟକ୍ତି କର୍ମ ନିଯୁକ୍ତି ପାଇଛନ୍ତି । ଉକ୍ତ ବର୍ଷରେ ୨ ଲକ୍ଷ ୩୬ ହଜାର ୮୪୪ ଜଣଙ୍କୁ ପଞ୍ଜିକାଭୁକ୍ତ କରାଯାଇଥିଲା । ତନ୍ମଧ୍ୟରୁ ବିଭିନ୍ନ ପଦ ପଦବୀ ନିମନ୍ତେ ଏକ ଲକ୍ଷ ୭୯ ହଜାର ୫୯୮ ଜଣଙ୍କ ନାମ ସୁପାରିଶ କରାଯାଇଥିଲା ।

ଚଳିତ ବର୍ଷ ସେପ୍ଟେମ୍ବର ମାସ ଶେଷ ସୁଦ୍ଧା ଏକ ଲକ୍ଷ ୫୬ ହଜାର ୫୪୪ ଜଣଙ୍କୁ ପଞ୍ଜିକାଭୁକ୍ତ କରାଯାଇଛି । ଏଥିମଧ୍ୟରୁ ଏକ ଲକ୍ଷ ୧୨ ହଜାର ୧୯୬ ଜଣଙ୍କ ନାମ ବିଭିନ୍ନ ଚାକିରୀ ଲାଗି ସୁପାରିଶ କରାଯାଇଥିଲା ଏବଂ ତନ୍ମଧ୍ୟରୁ ୫ ହଜାର ୯୭୬ ଜଣ କର୍ମ ନିଯୁକ୍ତି ପାଇଛନ୍ତି ।

## ଶିଶୁମାନଙ୍କର ବିକାଶକୁ ଅଗ୍ରାଧିକାର ଦେବା ବାଞ୍ଛନୀୟ

ଶିଶୁ ଦିବସ ପାଳନ ଅବସରରେ ରାଜଭବନଠାରେ ୪୦୦ ପିଲା ଭାଗ ନେଇଥିବା ଏକ ଚିତ୍ରାଙ୍କନ ପ୍ରତିଯୋଗିତା, ଟେରାକୋଟା ହସ୍ତ ଶିଳ୍ପ ପ୍ରଦର୍ଶନୀ ଓ ଶିଶୁ ଉଦ୍ୟାନ ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ଉଦ୍‌ଘାଟନ କରିଥିଲେ ।

ଯୋଗ୍ୟ ବିବେଚିତ ହୋଇଥିବା ଛାତ୍ର ଛାତ୍ରୀମାନଙ୍କୁ ପୁରସ୍କାର ବିତରଣ କରି ରାଜ୍ୟପାଳ ଶ୍ରୀ ଶର୍ମା କହିଥିଲେ ଯେ, ଶିଶୁମାନେ ଏ ଦେଶର ଅମୂଲ୍ୟ ସମ୍ପତ୍ତି ଓ ସବୁଠାରୁ ମହାନ୍ ପୁଞ୍ଜି । ଏହିମାନେ ଆମ ଦେଶର ଭବିଷ୍ୟତ ଏବଂ ଅସ୍ତିତ୍ୱ । ପଣ୍ଡିତ ନେହରୁଙ୍କ ଜନ୍ମ ଜୟନ୍ତୀ ଦିବସକୁ ଶିଶୁ ଦିବସ ରୂପେ ୧୯୫୬ରୁ ପାଳନ କରାଯାଉଛି । ବିଶେଷ କରି ଶିଶୁମାନଙ୍କୁ ଭବିଷ୍ୟତର ଯୋଗ୍ୟ ନାଗରିକ ରୂପେ ଗଢ଼ି ତୋଳିବା ପ୍ରତି ଜନସାଧାରଣଙ୍କର ଚେତନା ଜାଗ୍ରତ କରିବା ଏହି ଦିବସର ମୁଖ୍ୟ ଉଦ୍ଦେଶ୍ୟ ହୋଇ ଆସିଛି । ଶ୍ରୀ ଶର୍ମା ପୁରାତନ ସାହିତ୍ୟରେ ବସନ୍ତ ଋତୁରେ ଯେପରି ଧରିତ୍ରୀ ତାର ପୁରାତନ ପରିଧାନ ପରିତ୍ୟାଗ କରି ନବ ପରିଧାନ ଧାରଣ କରିଥାଏ ତାହା ବର୍ଣ୍ଣନା କରି ସମାଜ ରୂପେ ଏହି ପ୍ରକୃତିର ଶିଶୁମାନେହିଁ ବାସ୍ତବିକ ନୂତନ ପରିଧାନ ବୋଲି ପ୍ରକାଶ କରିଥିଲେ । ପୁରାତନର ବିଳୟ ଘଟି ନୂତନର ସୃଷ୍ଟି ହୁଏ, ଏହାହିଁ ପ୍ରକୃତିର ଧର୍ମ । ଆଜିର ଶିଶୁକୁ ଆସନ୍ତା କାଲିର ଉଦୀୟମାନ ସୂର୍ଯ୍ୟ ବୋଲି ଅଭିହିତ କରୁ ଏବଂ ରାଷ୍ଟ୍ରରୂପି ସପ୍ତର୍ଷି ମଣ୍ଡଳରେ ଶିଶୁମାନେହିଁ ଜାଜ୍ୱଲ୍ୟମାନ ତାରକା ହୋଇଥିବାରୁ ଏମାନଙ୍କ ପ୍ରତିଭା, ଯୋଗ୍ୟତା, ମନୀଷା ଓ କୃତିତ୍ୱ ଦେଶକୁ ଗୌରବ ମଣ୍ଡିତ କରିବ ବୋଲି ରାଜ୍ୟପାଳ ଶ୍ରୀ ଶର୍ମା ଆଶା ପୋଷଣ କରିଥିଲେ ।

ଉପସ୍ଥିତ ବାଳକ ଓ ବାଳିକାମାନଙ୍କୁ ରାଜ୍ୟପାଳ ଉଦ୍‌ବୋଧନ ଦେଇ କହିଥିଲେ ଯେ, ସେମାନଙ୍କର ପ୍ରତିଭା ବିକଶିତ ହେଉ, ମନୀଷା ପୁରସ୍କୃତ ହେଉ ଓ ସେମାନଙ୍କ ଓଠରେ ହସ ଫୁଟି ଉଠୁ ଏହାହିଁ ଆଜି ଆମ ସମସ୍ତଙ୍କର କାମନା ହେବା ଉଚିତ । ପ୍ରତିଯୋଗିତାରେ କୃତିତ୍ୱ ହାସଲ କରିଥିବା ଯୋଗୁଁ ଇପ୍‌ସିତା ପୁରୋହିତ, ପ୍ରିୟଙ୍କା ମହାପାତ୍ର, ବିଦିତା ଶର୍ମା, ଶୋଭନ ମଲ୍ଲିକ, ବିଶ୍ୱଜିତ୍ ପତି, ଅମୃତା ଦାସ, ମଧୁସ୍ମିତା ତ୍ରିପାଠୀ, ଅଜିତ୍ କୁମାର ମଲ୍ଲିକ, ପ୍ରିୟଦର୍ଶନୀ ସାହୁ, ସୋନାଲି ମହାନ୍ତି ଇତ୍ୟାଦିଙ୍କୁ ପୁରସ୍କାର ବିତରଣ କରିବା ସହ ଶିଶୁ ଉଦ୍ୟାନରେ ଚାରା ରୋପଣ କରିଥିଲେ ଓ ପିଲାମାନଙ୍କୁ ମିଷ୍ଟାନ୍ନ ବଣ୍ଟନ କରିଥିଲେ ।

## ଓଡ଼ିଶା ଓ ପଶ୍ଚିମବଙ୍ଗ ମଧ୍ୟରେ ସାହିତ୍ୟ ଓ ସଂସ୍କୃତିର ଆଦାନ ପ୍ରଦାନ ନିମନ୍ତେ ପଦକ୍ଷେପ

ଓଡ଼ିଶା ଓ ପଶ୍ଚିମ ବଙ୍ଗ ମଧ୍ୟରେ ସାହିତ୍ୟ ଓ ସଂସ୍କୃତିର ଆଦାନ ପ୍ରଦାନ ନିମନ୍ତେ ବିହିତ ପଦକ୍ଷେପ ଗ୍ରହଣ କରାଯିବା ଉଦ୍ଦେଶ୍ୟରେ ସଂପ୍ରତି ରାଜ୍ୟ ସଚିବାଳୟ ଠାରେ କ୍ରୀଡ଼ା, ସଂସ୍କୃତି, ଯୁବକଲ୍ୟାଣ ଏବଂ ସୂଚନା ଓ ଲୋକସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କରଙ୍କ ଅଧ୍ୟକ୍ଷତାରେ ଏକ ଆଲୋଚନା ବୈଠକ, ପଶ୍ଚିମ ବଙ୍ଗର 'ପୁନଶ୍ଚ' ନାମକ ପ୍ରକାଶନ ସଂସ୍ଥାର ସଭାପତି ଓ ସମ୍ପାଦକଙ୍କ ସମେତ ଓଡ଼ିଶା ଓ ବଙ୍ଗଳାର କେତେକ ପ୍ରତିଷ୍ଠିତ ଲେଖକ ଓ ସାହିତ୍ୟିକଙ୍କୁ ନେଇ ଅନୁଷ୍ଠିତ ହୋଇଥିଲା । ବିସ୍ତୃତ ଆଲୋଚନା ପରେ ବଙ୍ଗଳା ଭାଷାରେ ଲିଖିତ ପ୍ରମୁଖ ଗ୍ରନ୍ଥଗୁଡ଼ିକର ଓଡ଼ିଆ ଭାଷାନ୍ତର ଏବଂ ଓଡ଼ିଆ ଭାଷାରେ ଲିଖିତ ଗ୍ରନ୍ଥଗୁଡ଼ିକର ବଙ୍ଗଳା ଭାଷାନ୍ତର କରାଯାଇ ପ୍ରକାଶ କରାଗଲେ, ଏହି ଉଦ୍ଦେଶ୍ୟ ସାଧିତ ହୋଇପାରିବ ବୋଲି ସଭ୍ୟମାନେ ମତ ପ୍ରକାଶ କରିଥିଲେ । ବିଶେଷତଃ ଶିଶୁ ସାହିତ୍ୟ ଓ ଆଦିବାସୀ ତଥା ଓଡ଼ିଆ ସଂସ୍କୃତି ସମ୍ପର୍କରେ ପ୍ରଥମେ ଭାଷାନ୍ତର କାର୍ଯ୍ୟ ଆରମ୍ଭ କରିବା ଲାଗି ବୈଠକରେ ସ୍ଥିର ହୋଇଥିଲା ।

ଏହି ବୈଠକରେ ପଶ୍ଚିମ ବଙ୍ଗରୁ ଶ୍ରୀ ସୁବୀର କୁମାର ଚକ୍ରବର୍ତ୍ତୀ, ଶ୍ରୀ ନିତାଇ ବସୁ, ଶ୍ରୀ କାର୍ତ୍ତିକ ଘୋଷ, ଶ୍ରୀ ଶୈଳେନ୍ ଘୋଷ, ଶ୍ରୀ ଶଙ୍କରୀ ନାୟକ ପ୍ରମୁଖ ଯୋଗ ଦେଇଥିବା ବେଳେ ଓଡ଼ିଶାର ପ୍ରତିଷ୍ଠିତ ଲେଖକ ତଥା ସାହିତ୍ୟିକ ପ୍ରଫେସର ଗୌରୀ କୁମାର ବ୍ରହ୍ମା, ବିଶିଷ୍ଟ ଶିକ୍ଷାବିତ୍ ତଥା ଶିକ୍ଷକ–ଶିକ୍ଷା ନିର୍ଦ୍ଦେଶାଳୟ ଓ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ନିର୍ଦ୍ଦେଶକ ଶ୍ରୀ ରଜତ କୁମାର କର, ଉତ୍କଳ ବିଶ୍ୱବିଦ୍ୟାଳୟର କୁଳସଚିବ ଶ୍ରୀ ଶାନ୍ତନୁ କୁମାର ଆଚାର୍ଯ୍ୟ, ଶ୍ରୀ ବରେନ୍ଦ୍ର କୃଷ୍ଣ ଧଳ, ଶ୍ରୀ କେ: ବି: ଦାସ, ଶ୍ରୀ ଆର୍: ଏସ୍: ମହାନ୍ତି, ଶ୍ରୀ ବି: କେ: ପଡ଼ିଆରୀ, ଶ୍ରୀ ଏସ୍: ଏସ୍: ରଥ ଏବଂ ସଂସ୍କୃତି ବିଭାଗ ଶାସନ ସଚିବ ଶ୍ରୀ ଅଶୋକ କୁମାର ମିଶ୍ର ଓ ନିର୍ଦ୍ଦେଶକ ଶ୍ରୀ ପି: କେ: ମିଶ୍ର ପ୍ରମୁଖ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

# ପ୍ରାଚୀନ କଳିଙ୍ଗ ଓ ଦକ୍ଷିଣ–ପୂର୍ବ ଏସିଆ ସମ୍ବନ୍ଧୀୟ ଗବେଷଣା କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ପାଇଁ ପରାମର୍ଶ

ସଂପ୍ରତି ସଚିବାଳୟଠାରେ ଓଡ଼ିଶାର ନୌବାଣିଜ୍ୟ ଓ ଦକ୍ଷିଣ–ପୂର୍ବ ଏସିଆ ଗବେଷଣା ପ୍ରତିଷ୍ଠାନର କାର୍ଯ୍ୟକାରୀ କମିଟି ବୈଠକ ରାଜ୍ୟ କ୍ରୀଡ଼ା, ସଂସ୍କୃତି, ଯୁବ କଲ୍ୟାଣ ଏବଂ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କରଙ୍କ ଅଧ୍ୟକ୍ଷତାରେ ବସି, ପ୍ରାଚୀନ କଳିଙ୍ଗ ଓ ଦକ୍ଷିଣ–ପୂର୍ବ ଏସିଆ ସମ୍ବନ୍ଧୀୟ ନୌବାଣିଜ୍ୟ, ଅଭିଲେଖ, ଲୋକକଥା ଓ କିମ୍ବଦନ୍ତୀ, ପ୍ରାଚୀନ ବନ୍ଦରର ସର୍ବେକ୍ଷଣ ଓ ଖନନ, ଲୋକଯାତ୍ରା ଓ କଣ୍ଢେଇ ନାଚ, କଳିଙ୍ଗ ଓ ଇଣ୍ଡୋନେସିଆର ପାରମ୍ପରିକ ବସ୍ତ୍ରବୟନ ଶିଳ୍ପ, ସାମୁଦ୍ରିକ ପ୍ରତ୍ନତତ୍ତ୍ୱ, କଳା ଓ ସ୍ଥାପତ୍ୟର ତୁଳନାତ୍ମକ ଅଧ୍ୟୟନ କାର୍ଯ୍ୟ ସମ୍ପର୍କରେ ଆଲୋଚନା କରାଯାଇଥିଲା । ଏହି କାର୍ଯ୍ୟଗୁଡ଼ିକୁ ତ୍ୱରାନ୍ୱିତ କରିବାପାଇଁ ମନ୍ତ୍ରୀ ଶ୍ରୀ କର ପରାମର୍ଶ ଦେଇଥିଲେ । ପ୍ରାଚୀନ କଳିଙ୍ଗର ଐତିହ୍ୟ ଓ ଅନ୍ୟାନ୍ୟ ଦେଶ ସହିତ ସାଂସ୍କୃତିକ ସାମଞ୍ଜସ୍ୟ ସମ୍ବନ୍ଧରେ ହେବାକୁଥିବା ଆନ୍ତର୍ଜାତିକ ଆଲୋଚନାଚକ୍ର ପୂର୍ବରୁ ପ୍ରାଚୀନ ବନ୍ଦରଗୁଡ଼ିକର ସର୍ବେକ୍ଷଣ ଓ ଖନନ କାର୍ଯ୍ୟ ସର୍ବ ପ୍ରଥମେ ଶେଷ କରିବା ନିମନ୍ତେ ବୈଠକରେ ମତ ପ୍ରକାଶ ପାଇଥିଲା । ଏହି ସର୍ବେକ୍ଷଣ ଓ ଖନନ କାର୍ଯ୍ୟ ପାଇଁ ବୋର୍ଡ଼ ୨୦ ହଜାର ଟଙ୍କାର ବ୍ୟୟ ଅଟକଳକୁ ଅନୁମୋଦନ କରିଥିଲେ । ପ୍ରାଚୀନ ଲିଙ୍ଗରାଜ ମନ୍ଦିର ଶିଳାଲିପିର ଅନୁଧ୍ୟାନ ଓ ଗବେଷଣା ନିମନ୍ତେ ଡଃ ଏସ୍‌ଃ ଏନ୍‌ଃ ରାଜଗୁରୁଙ୍କୁ ଅନୁରୋଧ କରିବା ପାଇଁ ନିଷ୍ପତ୍ତି କରାଗଲା । ସେହିଭଳି ପ୍ରାଚୀନ କଳିଙ୍ଗ ଓ ଇଣ୍ଡୋନେସିଆର ପାରମ୍ପରିକ ଲୋକଯାତ୍ରା ଓ କଣ୍ଢେଇ ନାଚ ମଧ୍ୟରେ ଥିବା ସାମଞ୍ଜସ୍ୟ ସମ୍ପର୍କରେ ଅନୁଧ୍ୟାନ କରିବା ପାଇଁ ଶ୍ରୀ ଗୋବିନ୍ଦ ଡେକ୍କୁ ମନୋନୀତ କରାଯାଇଛି ।

ଏହି ବୈଠକରେ ପ୍ରତିଷ୍ଠାନର ନିର୍ଦ୍ଦେଶକ ଅଧ୍ୟାପକ ଡଃ କରୁଣା ସାଗର ବେହେରା, ଅଧ୍ୟାପକ ଜଗନ୍ନାଥ ପଟ୍ଟନାୟକ, ଚଳଚ୍ଚିତ୍ର ନିର୍ଦ୍ଦେଶକ ଶ୍ରୀ ଗୋବିନ୍ଦ ଡେକ୍‌, ସଂସ୍କୃତି ବିଭାଗ ନିର୍ଦ୍ଦେଶକ ଶ୍ରୀ ପିଃ କେଃ ମିଶ୍ର, ରାଜ୍ୟ ଅଭିଲେଖାଗାରର ଅଧୀକ୍ଷକ ଡ଼ଃ ମହେଶ ପ୍ରସାଦ ଦାସ, ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗର ଅଧୀକ୍ଷକ ଶ୍ରୀ ପ୍ରଶାନ୍ତ କୁମାର ରାୟ, ଅନୁଷ୍ଠାନର ସଂପାଦକ ଓ ରାଜ୍ୟ ଜୟଦେବ ସଂଗ୍ରହାଳୟର ଅଧୀକ୍ଷକ ଡ଼ଃ ହରିଶ୍ଚନ୍ଦ୍ର ଦାସ ଏବଂ ପ୍ରତ୍ନତତ୍ତ୍ୱ ଶାଖାର ରେଜିଷ୍ଟ୍ରେସନ୍ ଅଧିକାରୀ ଶ୍ରୀ ଡିଃ ଆର୍‌ଃ ପ୍ରଧାନ ପ୍ରମୁଖ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## ସାଂସ୍କୃତିକ ଚେତନା ଜାଗ୍ରତ କରିବାରେ ସାଂସ୍କୃତିକ ଅନୁଷ୍ଠାନଗୁଡ଼ିକର ସହଯୋଗ ଅପରିହାର୍ଯ୍ୟ

ଶିଳ୍ପ ସମୃଦ୍ଧ ସହରାଞ୍ଚଳରେ ଶ୍ରମିକମାନଙ୍କ ମଧ୍ୟରେ ସାଂସ୍କୃତିକ ଚେତନା ଜାଗ୍ରତ କରିବା ଦିଗରେ ସାଂସ୍କୃତିକ ଅନୁଷ୍ଠାନଗୁଡ଼ିକ ନିଷ୍ଠାପର ଭାବେ କାର୍ଯ୍ୟ କରନ୍ତୁ । ଏ ଦିଗରେ ସରକାରଙ୍କ ପକ୍ଷ ... ସମସ୍ତ ପ୍ରକାର ପ୍ରୋତ୍ସାହନ ଯୋଗାଇ ଦେବାରେ ଅବହେ... କରାଯିବ ନାହିଁ ବୋଲି ସଂସ୍କୃତି, କ୍ରୀଡ଼ା, ଯୁବକଲ୍ୟାଣ ଏବଂ ସୂଚ... ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର ପ୍ରକା... କରିଛନ୍ତି ।

ଗତ ନଭେମ୍ବର ୨୯ ତାରିଖରେ କଟକ ଜିଲ୍ଲା ଚୌଦ୍ୱାର ଯ... ପଡ଼ିଆଠାରେ କାର୍ତ୍ତିକେଶ୍ୱର ପୂଜା କମିଟି ପକ୍ଷରୁ ଆୟୋଜିତ ... ସ୍ୱତନ୍ତ୍ର ଉତ୍ସବରେ ମୁଖ୍ୟ ଅତିଥି ରୂପେ ଯୋଗ ଦେଇ ମ... ଶ୍ରୀ କର କହିଲେ ଯେ ଅତୀତରେ ଚୌଦ୍ୱାର ଶିଳ୍ପ ସହର ରା... ତଥା ଦେଶର ଶିଳ୍ପ ମାନଚିତ୍ରରେ ଯଥାର୍ଥ ସ୍ଥାନ ପାଇଥିଲେ ମ... ବିଭିନ୍ନ କାରଣରୁ ଏହା କ୍ରମଶଃ ରୁଗ୍‌ଣ ଅବସ୍ଥାରେ ପହଞ୍ଚି... ତେବେ ଶ୍ରମିକ ଓ ପରିଚାଳନା କର୍ତ୍ତୃପକ୍ଷଙ୍କ ମଧ୍ୟରେ ସହଯୋ... ଦ୍ୱାରା ହିଁ ଶିଳ୍ପ ବିକାଶ ଓ ନିଯୁକ୍ତି ସୁବିଧା ସୁଯୋଗ ହୋଇପାରି... ବୋଲି ସେ ଆଶା ପ୍ରକାଶ କରିଥିଲେ । ଶ୍ରୀ କର ... ଭାଷଣରେ ଚୌଦ୍ୱାର ଶିଳ୍ପାଞ୍ଚଳ ଭବିଷ୍ୟତରେ ସମୃଦ୍ଧିଲାଭ କ... ବୋଲି ଆଶା ପ୍ରକାଶ କରି କହିଲେ ଯେ ଚୌଦ୍ୱାର ପାଇଁ ସୂଚ... କେନ୍ଦ୍ର, ମ୍ୟୁନିସିପାଲିଟି ପରିଚାଳିତ ପାଠାଗାରର ସମ୍ପ୍ରସାରଣ ଓ... ଏକ ମିନି ଷ୍ଟାଡ଼ିୟମ୍ ସ୍ଥାପନ ଦିଗରେ ସମସ୍ତ ପ୍ରକାର ପଦକ୍ଷେ... ଗ୍ରହଣ କରାଯିବ ।

କାର୍ତ୍ତିକେଶ୍ୱର ପୂଜା କମିଟିର ସଭାପତି ଡାଃ ବିଚିତ୍ରା... ସ୍ୱାଇଁଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ଉତ୍ସବରେ ଓ:ଟି:ଏମ... ପରିଚାଳନା ନିର୍ଦ୍ଦେଶକ ଶ୍ରୀ ପୂର୍ଣ୍ଣଚନ୍ଦ୍ର ପଟ୍ଟନାୟକ, ଦରଦୀ ... ଶ୍ରୀ ବିଶ୍ୱନାଥ କର ଯଥାକ୍ରମେ ସମ୍ମାନିତ ଅତିଥି ଓ ମୁଖ୍ୟବ... ଭାବେ ଯୋଗ ଦେଇଥିଲେ । ସମାଜସେବୀ ତଥା ହିନ୍ଦୁ ସେ... ସଂଘ ଓଡ଼ିଶା ଶାଖା ସଂପାଦକ ଶ୍ରୀ ଦାମୋଦର ସାହୁ ପ୍ରାରମ୍ଭ... ସ୍ୱାଗତ ଭାଷଣ ଦେଇଥିଲେ । ପୂଜା କମିଟି ସଂପା... ଶ୍ରୀ ଶ୍ୟାମସୁନ୍ଦର ସାହୁ ବିବରଣୀ ପ୍ରଦାନ କରିଥିଲେ... କାର୍ଯ୍ୟାଳୟ ସଂପାଦକ ଶ୍ରୀ ବସନ୍ତ ସାହୁ ମାନପତ୍ର ପ... କରିଥିଲେ । ଅନ୍ୟମାନଙ୍କ ମଧ୍ୟରେ ଚୌଦ୍ୱାର ମ୍ୟୁନିସିପାଲିଟି... ପୂର୍ବତନ ନଗରପାଳ ଶ୍ରୀ ବିଚିତ୍ରାନନ୍ଦ ପରିଡା ଓ ଶ୍ରୀ କୈଳା... ଚନ୍ଦ୍ର ବେହେରା ପ୍ରମୁଖ ଭାଷଣ ଦେଇ ସ୍ଥାନୀୟ ସମସ୍ୟା ସମ୍ପର୍କ... ମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ।

ଭସାଣୀ ଯାତ୍ରାରେ ୨୧ଟି କାର୍ତ୍ତିକେଶ୍ୱର ମେଢ଼ ... ନେଇଥିଲେ ଏବଂ ଶାନ୍ତି ଶୃଙ୍ଖଳାର ସହ ଭସାଣୀ ଯାତ୍ରା ସମା... ହୋଇଥିଲା ।

ଚୌଦ୍ୱାର କୁମାର ଉତ୍ସବ ଯାତ୍ରାର ପ୍ରତିଷ୍ଠାତା ସ୍ୱର୍ଗତ କୃଷ୍ଣ... ମଙ୍ଗରାଜଙ୍କ ପ୍ରତିମୂର୍ତ୍ତିରେ ସମବେତ ମାଲ୍ୟାର୍ପଣ କରିଥିଲେ ।

# ଢଗଢ଼ମାଳିର ସ୍ୱର ଓ ସ୍ୱରୂପ

ରାଜେନ୍ଦ୍ର ଷଡ଼ଙ୍ଗୀ

ଢଗ ମେଲିବା ବା ଢ଼ଗମାରିବା ଆମ ଚଳଣିର ଏକ ଅଙ୍ଗ । ଗାଁ ଗହଳରେ ଲୋକମାନେ କଥାକଥାକେ ଢ଼ଗ ମେଲିବାର ଦୃଷ୍ଟାନ୍ତ ଖୋଜିବା ଦରକାର ନାହିଁ । ବିଶେଷକରି ନାରୀମହଲରେ ଏହାର ପ୍ରଚଳନ ଅଧିକ । କଳହ ସମୟରେ, କାହା ବିଷୟ ଚର୍ଚ୍ଚାରେ, କାହାର ବଡ଼ଣି ସହିନପାରି, କାହାର ଢ଼ଙ୍ଗଢ଼ାଙ୍ଗକୁ ବାହୁନି କିମ୍ବା ଥଟ୍ଟା ପରିହାସରେ ଢ଼ଗଟିଏ ବୋଲିଦେବା ନାରୀମାନଙ୍କର ଗୁଣ । ନାରୀମାନଙ୍କ ବ୍ୟତୀତ ଅର୍ଦ୍ଧଶିକ୍ଷିତ କିମ୍ବା ଅଳ୍ପଶିକ୍ଷିତ ବ୍ୟକ୍ତିଗଣ ମଧ୍ୟ ଏହାର ପ୍ରୟୋଗ କରିଥାନ୍ତି । ତା'ବୋଲି ଯେ ଶିକ୍ଷିତମାନେ ଢ଼ଗର ବ୍ୟବହାର ନ କରନ୍ତି ଏମନ୍ତ ନୁହେଁ । ପରିବେଶ, ପରିସ୍ଥିତିକୁ ଦେଖି ସେମାନେ ଏହାର ପ୍ରୟୋଗ କରିଥାନ୍ତି ।

ଢ଼ଗକୁ ଇଂରାଜୀ Doggerelର ସମାର୍ଥ ବାଚକ ଶବ୍ଦରୂପେ ଗ୍ରହଣ କରାଯାଏ । କିନ୍ତୁ ଇଂରାଜୀ Doggerel (୧) ଏବଂ ଆମ ଢ଼ଗ (୨) ମଧ୍ୟରେ ବହୁ ପାର୍ଥକ୍ୟ ରହିଛି । Doggerel କେବଳ ହାସ୍ୟରସ ପରିବେଷଣ, ବ୍ୟଙ୍ଗ ବିଦ୍ରୂପାତ୍ମକ ପରିବେଶ ସୃଷ୍ଟିପାଇଁ ଉଦ୍ଦିଷ୍ଟ । ଯେଉଁଥିରେ ପଦଗଠନ, ଲାଳିତ୍ୟ, ଓ ସ୍ୱରଲହରର କୌଣସି ପ୍ରକାର ବାଗ ନଥାଏ । ଏଥିରେ ଜୀବନର ରସାଳ ଅନୁଭୂତିକୁ ଆମେ ଖୁବ୍ କମ୍ ଭେଟୁ । କିନ୍ତୁ ଢ଼ଗତ ଲୋକ ଜୀବନ ସହିତ ପୁରାପୁରି ସମ୍ପୃକ୍ତ । ସମାଜର ଟିକିନିଖି ଘଟଣାର ରୂପରେଖ ଏଥିରେ ପ୍ରତିଫଳିତ । ଅଧିକାଂଶ ଢ଼ଗରେ ଆମେ ଲାଳିତ୍ୟ ଓ ସ୍ୱରଲହରର ପୂର୍ଣ୍ଣ ଅନୁଭବ କରିଥାଉ । ଢ଼ଗର ବିଚରଣ ଭୂମିଟି ଅତି ପ୍ରଶସ୍ତ ।

ଢ଼ଗକୁ ଲୋକମୁଖର ବାଣୀ ଭାବରେ ଆମ ସାହିତ୍ୟରେ ବର୍ଣ୍ଣନା କରାଯାଇଛି । ବିଦଗ୍ଧଚିନ୍ତାମଣିରେ ଉଲ୍ଲେଖ ଅଛି –

"ଢ଼ମପଣେ ବର୍ଣ୍ଣୁଛି ମୁଁ ଗୋବିନ୍ଦ ଚରିତ,
ଢ଼ଗଢ଼ମାଳି ହେଲେହେଁ ସାକ୍ଷାତେ ଅମୃତ ଯେ ।"

(ବିଦଗ୍ଧଚିନ୍ତାମଣି–ପ୍ରଥମଛାନ୍ଦ)

ଏଇଠି ଚିନ୍ତାମଣିକାର ଢ଼ମପଣରେ –ସାରହୀନ ପ୍ରଚେଷ୍ଟାରେ, ଅଜ୍ଞାନରେ କିମ୍ବା ମୂର୍ଖଭାବରେ ସେ ଗୋବିନ୍ଦ ଚରିତ ବର୍ଣ୍ଣନା କରିଥିବାର ସୂଚନା ଦେଇଛନ୍ତି । ଯାହାର ବିଶେଷଜ୍ଞାନ ନଥାଏ ତା'ମୁଖରୁ ବାହାରୁଥିବା ବାଣୀ ଢ଼ଗଢ଼ମାଳି ରୂପେ ପରିଚିତ । ଅର୍ଥାତ୍ ଢ଼ଗଢ଼ମାଳିକୁ ସେ ଗାଉଁଲି, ଦେଶୀୟ ଲୋକଙ୍କ ଭାଷାରୂପେ ଗ୍ରହଣ କରିଛନ୍ତି ।

କିନ୍ତୁ ଯଦୁମଣିଙ୍କ ରଚନାରେ ଢ଼ଗ ପ୍ରଥମେ ଉନ୍ନତ ସାହିତ୍ୟର ସମ୍ମାନ ହାସଲ କରିଛି । ତାଙ୍କ ମୁଖରୁ ଆଶୁକବିତ୍ୱ ଛଟାରେ ଯେଉଁ ବିଦ୍ରୂପାତ୍ମକ ବାଣୀ ବାହାରିଛି, ତାହାକୁ ଉତ୍ତମ ଢ଼ଗ, ବୁଦ୍ଧିଜୀବୀ ' intellectual)ର ଢ଼ଗ ରୂପେ ଆମେ ଗ୍ରହଣ କରୁ । ଉଦାହରଣ ସ୍ୱରୂପ –

"ଛାମୁ ଯାହା ଦେଲେ ହରଷେ
ପାଉ ପାଉ ଗଲା ବରଷେ,
ବାଛି ବାଛି କରି ଦେଲେ ପଡ଼ିଆ
ଶ୍ରାବଣ ମାସରେ ଭାଙ୍ଗେ ନଡ଼ିଆ ।
ଏମନ୍ତ ଭୂଇଁ
ସ୍ୱକୁଷ୍ଠା ବୁଣିଲେ ଉଠଇ ନାହିଁ ।"

ସାମୟିକ ଘଟଣାକୁ ନେଇ ଉକ୍ତ ଏହି ଢ଼ଗ ଆଜି ପ୍ରବାଦ ରୂପେ ସ୍ୱୀକୃତ । ସେହିପରି

"ରାଜା ଆଜ୍ଞାକଲେ ବଡ଼ ପାଛୋଡ଼ା
ମନ୍ତ୍ରୀ କାଢ଼ିଦେଲେ ବଡ଼ ପାଛୋଡ଼ା ।"–ଭଳି ଅଶ୍ଳୀଳାତ୍ମକ ପଦ୍ୟକୃତ ଆମେ ଆଜି ସବୁଠାରେ ଢ଼ଗ ରୂପେ ପ୍ରୟୋଗ କରୁଛେ । (୩)

ଫକୀରମୋହନ ନିଜରଚନାରେ ଢ଼ଗକୁ ଆକ୍ଷେପୋକ୍ତି, ବ୍ୟଙ୍ଗ ବିଦ୍ରୂପାତ୍ମକ ବାଣୀରୂପେ ଗ୍ରହଣ କରିଛନ୍ତି ।

"ଗାଁର ମଙ୍ଗରା ଲୋକମାନେ ସେମାନଙ୍କୁ ଦେଖି ଢ଼ଗ ମେଲନ୍ତି–

ସାରିଆ ଭଗିଆକୁ ଦେଖ
ବଗୁଲା ବଗୁଲୀ ଲେଖ ।"

(ଛ'ମାଣ ଆଠଗୁଣ୍ଠ–ପୃଃ–୫୨)

ଦେଖୁ ଜଣକୁ ଆକ୍ଷେପକରି ପ୍ରୟୋଗକରିବା ଅନୁଭବର ବାକ୍ୟ (ଗଦ୍ୟ ହେଉ ବା ପଦ୍ୟ ହେଉ)କୁ ଆମେ ଢ଼ଗ ରୂପେ ଗ୍ରହଣ କରୁ। ବ୍ୟଙ୍ଗ, ପରିହାସ ଓ ଶାଣିତ ବିଦ୍ରୁପର ସ୍ୱର ବହୁଢ଼ଗରେ ଆମେ ଦେଖିବା ଏବଂ ଉପଦେଶ ଓ ଅନୁଭବର କଥାଟି ମଧ୍ୟ ଏଥିରୁ ପାଇବା । (୪)

ଗାଁ ଗହଳରେ ଢ଼ଗ ମାରିବା ବ୍ୟକ୍ତି ପ୍ରତି ସମସ୍ତଙ୍କର ଡ଼ରା ଢ଼ଗର ଶରବ୍ୟ ହେବା ଅର୍ଥ ଜୀବନ୍ତ ମରଣକୁ ଆହ୍ୱାନ କରିବା । ବିଷର ଜ୍ୱାଳାରୁ ଢ଼ଗର ଜ୍ୱାଳା ଅତି ଉତ୍କଟ ଓ ତିବ୍ର । ଢ଼ଗଦ୍ୱାରା ଆଘାତ ପ୍ରାପ୍ତ ବ୍ୟକ୍ତି କ'ଣ ନାହିଁ କ'ଣ କରିବସେ, ନିଜର ହିତାହିତ ଜ୍ଞାନ ଭୁଲିଯାଏ । ଢ଼ଗ ହେଉଛି କଥା କଟୁରୀ, ଯାହା ମଣିଷକୁ ଖଣ୍ଡ ଖଣ୍ଡ କରି ହାଣି ପକାଏ । ତା'ର ଉଦାହରଣ ରୂପେ ଛ'ମାଣ ଆଠଗୁଣ୍ଠର ଚମ୍ପା ଗୋବିନ୍ଦା ପ୍ରସଙ୍ଗକୁ ନିଆଯାଇପାରେ । ଚମ୍ପା, ଗୋବିନ୍ଦା ଭଣ୍ଡାରୀକୁ ଲୋଭ ଦେଖାଇ ମଙ୍ଗରାଜଙ୍କ ଧନ ସମ୍ପତ୍ତି ଧରିସାରିଥାଏ । ଏଣେ ଚମ୍ପା ହାତରେ ଗୋବିନ୍ଦାର ଅବସ୍ଥା ଭାରି ମନ୍ଦ । ଗୋବିନ୍ଦା ଯେତେବେଳେ ଗାଁକୁ ଫେରିଯିବା ପ୍ରସଙ୍ଗ ଉତ୍ଥାପନ କରିଛି, ସେତିକିବେଳେ ଚମ୍ପାମୁଖରୁ ବାହାରିଥିବା ଗାଳିଦୋଳିକୁ ଲକ୍ଷ୍ୟ କରାଯାଉ ଏବଂ ଗୋବିନ୍ଦାର ପ୍ରତିକ୍ରିୟାକୁ ମଧ୍ୟ ଦୃଷ୍ଟି ଦିଆଯାଉ –

(କ) ଗୋବିନ୍ଦା–ନା, ଚମ୍ପା ସାଆନ୍ତାଣୀ, ଚାଲ ଆମ ଗାଁକୁ ଯିବା, ସେଇଠି ରହିବା, ବିଲବାଡ଼ି କିଣିବା, ଚାଷକରିବା, ହଳିଆ ରଖିବା ।"
ଚମ୍ପା–ଆରେ, ସତେ ଲୋକ ଯାହା କହନ୍ତି–

ଅତି ନୁଉଁଛଣା ଅଣ୍ଡାର ଜାତି
ଅତି ନିଭଛଣା ଭଣ୍ଡାରୀ ଜାତି ।

(ଖ) ଗୋବିନ୍ଦା xxxxxxxxxxxନୋହିଲେ ମୋ ଭାଗ ଦିଅ, ମୁଁ ଯାଏ, ତୁମର ଯାହା ମନ କର ।
ଚମ୍ପା– ଭାଗ ? ଭାଗ କ'ଣ ? ଭାଇ ଭାଗ ? ଆରେ ଯାହା କହନ୍ତି–

ପଡ଼ୋଶୁଣୀ ପିଠା ଦେଖି ରହାଇ ଖବାଇ
ଘଣ୍ଟିଚଢ଼ାରେ ଗୁଡ଼ ଲଗାଇ ଭଡ଼ଭଡ଼ ଖେଳାଇ ।
ପୁଣି xxxxxxxxxxxxକହିଛନ୍ତି କ'ଣନା, ବୁଦ୍ଧି କହିଲି–

"ବୁଦ୍ଧିରେ ବୁଦ୍ଧି ନା–
ବଳେଇ ପଡ଼ି ଯାଉଛି ବୁଦ୍ଧି ।"

(ଗ) ଖାଇବାକୁ ଗଲାବେଳେ–
ଚମ୍ପା– ମଲା ଯା 'ପୋଇଲାକୁ ସାଆନ୍ତ' କହିଲେ ମୁଣ୍ଡରେ ଚଢ଼ନ୍ତି । (ଗୋବିନ୍ଦା ଉଠୁଥିଲା ପୁନର୍ବାର ବସିପଡ଼ି ଚମ୍ପାକୁ ଟରାଟି ଟରାଟି ଚାହିଁଲା)– ପ୍ରତିକ୍ରିୟାଟି ଲକ୍ଷ୍ୟଣୀୟ ।

(ଘ) "ଆରେ ଆ, ଭାତ ଖାଆ । ଉତ୍ତର ନାହିଁ, ଖପା ହୋ... କହିଲା," ଆରେ ସ୍ୱାକୁ କହନ୍ତି "ସୁଖଭାତ ତୋଟି କୁଣ୍ଡାଇବ... ଜଳନ୍ତା ନିଆଁରେ କୁଟା ପକାଇଲା ପରି ଗୋବିନ୍ଦାକୁ ଏ ... ଜଣାଗଲା ।"

(ଛ'ମାଣ ଆଠଗୁଣ୍ଠ–ପୃଃ–୧୭୩, ୧୭୪, ୧୭୬, ...

ଯାର ପରିଣତି ଆମ ସମସ୍ତଙ୍କୁ ଜଣା ।

ଢ଼ଗ ସହିତ ଗୋବିନ୍ଦାର ପ୍ରତିକ୍ରିୟାକୁ ଲକ୍ଷ୍ୟ କରନ୍ତୁ । ପ୍ରଥ... ତାର ଜାତିର ନ୍ୟୂନତାକୁ ଚମ୍ପା ଆକ୍ଷେପ କରିଛି । ଦ୍ୱିତୀୟ... ଭାଗ ପାଇବାରେ ବିଶ୍ୱାସ ଘାତକତା କରିବାର ସୂଚନା ଏବଂ ତା... ବୁଦ୍ଧି ପ୍ରତି ଆକ୍ରମଣ, ତୃତୀୟରେ ତା'ର ସ୍ଥାନରେ ନ୍ୟୂନ... ପ୍ରତିପାଦନ କରି 'ପୋଇଲା' କହି ସମ୍ବୋଧନ କରିବାରୁ... ଗୋବିନ୍ଦା ଚମ୍ପାର ମନୋଭାବକୁ ଜାଣିପାରି ଉତ୍କ୍ଷିପ୍ତ ହୋ... ଉଠିଛି । ଚତୁର୍ଥରେ ଯେତେବେଳେ ସେ 'ସୁଖଭାତ ତୋ... କୁଣ୍ଡାଇବା' ପଦରୁ ଚମ୍ପାର ମନୋବୃତ୍ତି ସମ୍ପୂର୍ଣ୍ଣ ଠଉରେ... ସେତେବେଳେ ନିଜ ପ୍ରତିକ୍ରିୟାଟି ପ୍ରକାଶ ନକଲେ ମଧ୍ୟ ଚମ୍ପା... ତା'ର କର୍ତ୍ତବ୍ୟକୁ ସ୍ଥିର କରି ରାତିରେ ତା'ହା ସମ୍ପୂର୍ଣ୍ଣ କରିଛି । ... ମାରିବାର ପରିଣତି କିପରି ବିଷମୟ ହୋଇପାରେ ଏ ତା'ର ... ସାର୍ଥକ ଚିତ୍ର । ପୁଣି ଢ଼ଗ ପ୍ରୟୋଗ ଦ୍ୱାରା କିପରି ଉନ୍ନତ ସାହି... ସୃଷ୍ଟି ହୋଇପାରେ ଏବଂ ନାଟକୀୟତା ପ୍ରକାଶ ପାଏ–ଛ'ମା... ଆଠଗୁଣ୍ଠ ତାହାର ଉଦାହରଣ । ଫକୀରମୋହନଙ୍କ ପ... ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ରଚନାରେ ଢ଼ଗଢ଼ମାଳିର ସାର୍... ପ୍ରୟୋଗ ଆମେ ଦେଖିବାକୁ ପାଉ ।

ଢ଼ଗର ଲକ୍ଷ୍ୟ ଓ ଲକ୍ଷଣଗୁଡ଼ିକୁ ନିମ୍ନଭାବରେ ... କରାଯାଇପାରେ–

(କ) ଢ଼ଗ ପଛରେ ଘଟଣାଟିଏ ଥିବ ନିଶ୍ଚୟ । ... ସମସ୍ୟାମୂଳକ, ଦୁଃଖ, ବେଦନା ବୋଧକ, ଆଘାତ ଓ ମନ୍ତବ୍ୟା... ହୋଇଥିବା ସଂକ୍ଷିପ୍ତତା ଏହାର ଧର୍ମ ।

(ଖ) ଏଥିରେ ପ୍ରତ୍ୟୁତ୍ପନ୍ନମତିତା ଓ ଆଶୁ କବି... ଉପଯୋଗ ହୋଇଥିବ ।

(ଗ) ଢ଼ଗରେ ରହସ୍ୟମୟତା ଥିବ ନିଶ୍ଚୟ । କାରଣ ... ପ୍ରୟୋଗ କରିଥିବା ବ୍ୟକ୍ତି ଓ ଶରବ୍ୟ ବ୍ୟକ୍ତି ଏହାକୁ ଉଭ... ବୁଝିଥାନ୍ତି । ଢ଼ଗ ପ୍ରୟୋଗ ଦୁଇ ପ୍ରକାରେ ହୋଇଥାଏ–

(୧) ଦ୍ୱିମେରୁ ବିଶିଷ୍ଟ ପ୍ରକ୍ରିୟା (Bipolar)–ଜଣେ ଜ... ଆକ୍ଷେପ କରି ଢ଼ଗ ମାରିବା । ଏହା ଦୁଇଜଣଙ୍କ ମଧ୍ୟ... ସୀମାବଦ୍ଧ । ଗାଁ ଗହଳର କଳିଗୋଳ ସମୟରେ ... ଅନୁଭବ୍ୟ ।

(୨) ତ୍ରିମେରୁ ବିଶିଷ୍ଟ ପ୍ରକ୍ରିୟା (Tripolar)–... ପ୍ରୟୋଗକାରୀ, ଶରବ୍ୟ ବ୍ୟକ୍ତି ଏବଂ ଉପଭୋକ୍ତା ମଧ୍ୟରେ ... ହୁଏ । କିମ୍ବା କୌଣସି ବ୍ୟକ୍ତି ବା ବସ୍ତୁକୁ ଉଦାହରଣ ରୂପେ ...

ଶରବ୍ୟ ବ୍ୟକ୍ତିକୁ ଆଘାତ କରିବ। (ଙ) ପ୍ରକ୍ରିୟାଟିକୁ ନିମ୍ନ ଭାବରେ ବ୍ୟକ୍ତ କରାଯାଇପାରେ–

ଢ଼ଗ ପ୍ରୟୋଗ କର୍ତ୍ତା, ଅପମାନ, ଶରବ୍ୟ ବ୍ୟକ୍ତି

ଆନନ୍ଦ/ଦୁଃଖ, ଉପଭୋକ୍ତା

ଏହାର ଉଦାହରଣ ରୂପେ ଗ୍ରାମାଞ୍ଚଳରେ ଢ଼ଗ ମଗାମଗି ସମୟରେ କିମ୍ବା ଲୋକନୃତ୍ୟମାନଙ୍କରେ ଏହାର ପ୍ରୟୋଗଦ୍ୱାରା ଶ୍ରୋତା ଉପଭୋଗ କରିବା–

ଦାସକାଠିରେ–ପାଳିଆ, ସରବ୍ୟ, ଗାୟକ

ଉପଭୋକ୍ତା, ଶ୍ରୋତା

ଭାରତଲୀଳା–ଦୁଆରୀ, ଅର୍ଜ୍ଜୁନ, ଶ୍ରୋତା

(ଘ) ବ୍ୟଙ୍ଗ ବିଦ୍ରୂପ ଢ଼ଗରେ ପ୍ରଚ୍ଛନ୍ନ। ବକ୍ରୋକ୍ତି, ଶାଣିତୋକ୍ତି ଏହାର ଆଧାର।

(ଙ) ଢ଼ଗରେ ପରିଦୃଶ୍ୟମାନ ଜଗତର ଯେକୌଣସି ବସ୍ତୁକୁ ଉଦାହରଣ ରୂପେ ନିଆଯାଇଥାଏ। ଯଥା–ବୃକ୍ଷଲତା, ନଦୀ ପର୍ବତ, ଜୀବଜନ୍ତୁ ପ୍ରଭୃତି।

(ଚ) ଢ଼ଗର ପ୍ରକାର ଭେଦ ନିମ୍ନଭାବରେ କରାଯାଇ ପାରେ– (୧) ପ୍ରହେଳିକାମୟ (୭) (୨) ସାଧାରଣ (୩) ମାଜିତ ଢ଼ଗର (୪) ନୀତିଢ଼ଗର (୮) (୫) ଉପଦେଶାତ୍ମକ (୯) (୬) ଚରିତ୍ର ସଂହାରକ

(ଛ) ଢ଼ଗ ପ୍ରୟୋଗ ଦ୍ୱାରା ଯେକୌଣସି ବ୍ୟକ୍ତି ବା ଗୋଷ୍ଠୀକୁ ତତ୍କାଳୀନ କାର୍ଯ୍ୟର ନିବୃତ୍ତ କରିବା, ସମାଲୋଚନା କରିବା ବା ଉପଦେଶ ଦେବା କିମ୍ବା ଅନୁଭବର କଥାକହି ତାକୁ ସତର୍କ କରାଇଦେବା।

## ଢ଼ଗର ମୂଲ୍ୟ :

(୧) ଏଥିରୁ ଆମେ ପଲ୍ଲୀଜୀବନର ଚିତ୍ର ପାଇ ପାରିବା। ସମାଜର ହସକାନ୍ଦ, ସୁଖଦୁଃଖ, ଈର୍ଷାଦ୍ୱେଷ ଏଥିରେ ପ୍ରତିଫଳିତ। (୧୦)

(୨) ଢ଼ଗଗୁଡ଼ିକରୁ ଭାଷାର ରୂପରେଖକୁ ଆମେ ଜାଣିପାରିବା।

(୩) ଢ଼ଗଢ଼ମାଳିରୁ ଆମର ବିଭିନ୍ନ କବିତା ଛନ୍ଦର ସୃଷ୍ଟି। (୧୧)

(୪) ଶତ୍ରୁକୁ ପରାସ୍ତ କରିବାର ଅସ୍ତ୍ରରୂପେ ବ୍ୟବହାର।

(୫) ସାମୟିକ ଆନନ୍ଦ ଉପଭୋଗ – ବିଭିନ୍ନ ଲୋକନୃତ୍ୟ ଯଥା– ଦାସକାଠି, ପାଲା, ଦଣ୍ଡନାଟ, ଦୁଆରୀ ପ୍ରଭୃତିରେ ଏହାର ବ୍ୟବହାର ଏବଂ ଜନ ମନୋରଞ୍ଜନ।

(୬) ଉନ୍ନତମାନର ସାହିତ୍ୟ ସୃଷ୍ଟିରେ ଏହା ସହାୟକ। ଯଦୁମଣିଙ୍କ ହାସ୍ୟରସାତ୍ମକ ରଚନାବଳୀ, ଫକୀରମୋହନଙ୍କ ଗଳ୍ପ, ଉପନ୍ୟାସ ଏବଂ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ରଚନା ଏହାର ଉଦାହରଣ।

(୭) ସ୍ଥାନୀୟ କିମ୍ବଦନ୍ତୀ, ସତ୍ୟ ଘଟଣା ଓ ଇତିହାସର ପ୍ରତିଫଳନ। (୧୨)

## ସହାୟକ ଗ୍ରନ୍ଥ ଓ ବ୍ୟକ୍ତି ବିଶେଷ :

(୧) ଓଡ଼ିଆ ଲୋକଗୀତ ଓ କାହାଣୀ – ଡଃ କୁଞ୍ଜବିହାରୀ ଦାଶ।

(୨) ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ – ଗୋପାଳ ଚନ୍ଦ୍ର ପ୍ରହରାଜ।

(୩) ଛ'ମାଣ ଆଠଗୁଣ୍ଠ – ଫକୀରମୋହନ ସେନାପତି

(୪) ବିଦଗ୍ଧ ଚିନ୍ତାମଣି – ଅଭିମନ୍ୟୁ ସାମନ୍ତସିଂହାର

(୫) ଯଦୁମଣି ଗ୍ରନ୍ଥାବଳୀ – ସଂ–ଚନ୍ଦ୍ରଧର ମହାପାତ୍ର

(୬) New Webster Dictionary of English Language.

(୭) A glossary of Literary terms–M. H. Abrams.

(୮) ଶ୍ରୀଯୁକ୍ତ ଶରତ ଚନ୍ଦ୍ର ଶତପଥୀ, ରାମ ଚନ୍ଦ୍ର ରଣା, ରାମଚନ୍ଦ୍ର ପଣ୍ଡା, କଉଶୁଲୀ ପ୍ରଭୃତି ବ୍ୟକ୍ତି ବିଶେଷ।

---

(୧) (କ) New Webster Dictionary ରେ Doggerel ଶବ୍ଦର ଅର୍ଥ ଦିଆଯାଇଛି– An epithet originally applied to a kind of loose, irregular measure in Burlesque poetry; now more generally verses defective in rythm and sense."

(ଖ) A glossary of Literary terms ରେ କୁହାଯାଇଛି–Doggerel is a term applied to rough, heavy footed and jerky versification. It may be the result of ineptitude on the part of the versifier but is sometimes deliberately employed by very able poets for satire, comic or rollicking effect." (Page—43, 1981)

(୨) ଢ଼ଗ–ବ୍ୟଙ୍ଗପୂର୍ଣ୍ଣ ନୀଚ ଶ୍ରେଣୀର ପଦ୍ୟ।

ଇଂ–Doggerel—ଡଗ୍‌ଗରେଲ।

ଢ଼ଗ–ପରିହାସ ବା ବ୍ୟଙ୍ଗାତ୍ମକ ଯତି ବା ମିତ୍ରାକ୍ଷର ମିଳିତ ବଚନ।

ଢଗ–ସାଧାରଣତଃ ଢଗମାନଙ୍କ ଶେଷମାନଙ୍କରେ ମେଳ ଥାଏ ଓ ଉପସ୍ଥିତ ଘଟଣାକୁ ଲକ୍ଷ୍ୟକରି କୁହାଯାଏ ।

ଢଗ ଢମାଳି–ଥଟ୍ଟା ବା ଅପ୍ରୟୋଜନୀୟ କଥା! Benter, Badinage.

ଢଗ ପଦମାନଙ୍କ ଶେଷ ଅକ୍ଷରରେ ମେଳ ଥାଏ । କୌଣସି ଢଗରେ ଉପଦେଶ ଓ ଅନୁଭବପୂର୍ଣ୍ଣ ବଚନ ଥାଏ । ଢମାଳି ବ୍ୟଙ୍ଗୋକ୍ତି ବହୁଳ ଓ ଏଥିରେ ଅକ୍ଷରର ମେଳ ନଥାଏ । (ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ–ପୃ–୩୬୮୯, ଖଣ୍ଡ–୪–ଥ)

(୩) ସାରଳା ମହାଭାରତ ଓ ଅନ୍ୟାନ୍ୟ ପ୍ରାଚୀନ ରଚନାରେ ମଧ୍ୟ ଢଗର ପ୍ରୟୋଗ ରହିଛି । କିନ୍ତୁ ଅଦ୍ୟାବଧି ବି ଢଗର ସଙ୍କଳନ ସ୍ୱତନ୍ତ୍ର ସ୍ରଷ୍ଟା ଭାବରେ ସ୍ୱୀକୃତ ।

(୪) ଏହି ଲେଖକ ତା'ପ୍ରତି ନିଜର ଜଣେ ବୟୋଜ୍ୟେଷ୍ଠ ବ୍ୟକ୍ତିଠାରୁ ହୋଇଥିବା ଉପଦେଶାତ୍ମକ ଓ ସମାଲୋଚନାତ୍ମକ ଅଭିଯୋଗରୁ ହିଁ ବହୁ ଢଗ ସଂଗ୍ରହ କରିପାରିଛି ।

(୫) ଆମପରେ ଦାଇଗୁଲ, ବାଇମହାତି ପାଞ୍ଚି ଇତ୍ୟାଦି ଦ୍ରଷ୍ଟବ୍ୟ ।

(୬) ଅଠରଡ଼ କୋଇରାଣି
ଶୁଖିଲା ନଦିଆ ପଇଡ଼ ପାଇ ମୋ ସମୁଦିଆଣୀ
ଗୁଡ଼ୀକାଳେ ଲୁଆଣୁଣୀ ।

(୭) ଘର ଶୁଖୁ ବଣ ମଲଣି
କେଞ୍ଚଲ ବୋଲୁଛି ମତେ ଭଲ ।

(୮) ଯୋବ ଦିଆଣି
ଆଗ ଗୁଆ ଶୋଇ ପଛେ ପୁଆଣି ।

(୯) ଲକ୍ଷାବ ଦେଖେ ବେଲଟଛ ।

(୧୦) ତେମି ବୋଉ କଥା କାହିଁରେ ନେଶା,
ପଶି ଫେଡ଼ା ନିଅାଁ ଚାଲୁକୁ ଦେଖା ।

(୧୧) ପ୍ରବଚାବଳୀ–ଶ୍ୟାମସୁନ୍ଦର ରାଜଗୁରୁ ।

(୧୨) ଯୋ ପାଇକ ଡରେ ଠଣା
ସେ ପାଇକ ଗାଡି ହଣା ।

(ଠଣା–ପ୍ରୁମୁରରେ ଏକ ସ୍ଥାନର ନାମ । ଏଠାରେ ଏକ କର୍ତ୍ତବ୍ୟରତ ପାଇକ ଖାଇଥିବା–ଏକ ସତ୍ୟ ଘଟଣା) ।

ଏଥିରେ ବ୍ୟବହୃତ ଅଧିକାଂଶ ଢଗ ଲେଖକ ଦ୍ୱାରା ସଂଗୃହୀତ ।

---

ଓଡ଼ିଆ ବିଭାଗ,
ଜବାହର ନବୋଦୟ ବିଦ୍ୟାଳୟ,
ପିଲାସାଲକୀ ଡ୍ୟାମ୍ ସାଇଟ୍,
ବଲସକୁମ୍ପା, ଫୁଲବାଣୀ ।



ମୁଖ୍ୟମନ୍ତ୍ରୀ, ଶ୍ରୀ ବିଜୁ ପଟ୍ଟନାୟକ ଶକ୍ତି ଅର୍ଥ କର୍ପୋରେସନ୍ ଅଧ୍ୟକ୍ଷଙ୍କ ସହିତ ଆଲୋଚନାରତ ।



ଧଉଲିଠାରେ ଆୟୋଜିତ ପାରମ୍ପରିକ ନୂଆଖାଇ ନୃତ୍ୟ ଉତ୍ସବରେ ମୁଖ୍ୟମନ୍ତ୍ରୀ.......... ।



ଭୁବନେଶ୍ୱରଠାରେ ପଞ୍ଚାୟତିରାଜ ମନ୍ତ୍ରୀ, ଶ୍ରୀ ଦାମୋଦର ରାଉତ ଇ: ଏସ୍: ଆଇ: ଚିକିତ୍ସକମାନଙ୍କ ସମ୍ମିଳନୀ ଉଦ୍‌ଘାଟନ କରୁଛନ୍ତି । ସମ୍ମିଳନୀର ସଙ୍ଗଠକ ଡକ୍ଟର ଶାରଦା ପ୍ରସନ୍ନ ଦାସ ଉପସ୍ଥିତ ଅଛନ୍ତି ।

# ପାଠକଙ୍କ କଲମରୁ

**ଶ୍ରୀ ନରୋତ୍ତମ ମଲ୍ଲିକ,**
**ଷଷ୍ଠ ବାର୍ଷିକ ଓଡ଼ିଆ ବିଭାଗ ଛାତ୍ର,**
**ବାଣୀବିହାର, ଭୁବନେଶ୍ୱର,**
**ଜିଲ୍ଲା-ପୁରୀ।**

*ପ୍ରଶ୍ନ-(୧) ମହାଶୟ, ଉତ୍କଳ ପ୍ରସଙ୍ଗର ମୁଁ ଜଣେ ନିୟମିତ ପାଠକ। ଏହା ପ୍ରତ୍ୟେକ ବ୍ୟକ୍ତି ଓ ଛାତ୍ରମାନଙ୍କ ପାଇଁ ଏକ ଉପାଦେୟ ପୁସ୍ତକ। ଏଥିରୁ ବହୁତ କିଛି ଜାଣିବାର ଅଛି ଏବଂ ଶିଖିବାର ଅଛି। ମୋତେ ପ୍ରତ୍ୟେକ ବିଷୟ ଭଲ ଲାଗୁଛି। ସବୁଠାରୁ ବେଶୀ ଭଲ ଲାଗେ ଏଥିରେ ପ୍ରକାଶିତ ଉପାଦ ପରିଚୟ।*

*(୨) ମୁଁ ଲେଖା ପଠାଇବାକୁ ଚାହେଁ। ସେଥିପାଇଁ କ'ଣ କରିବାକୁ ହେବ ଦୟାକରି ଜଣାଇବେ।*

ଉତ୍ତର-ଉତ୍କଳ ପ୍ରସଙ୍ଗ ସମ୍ପର୍କରେ ଆପଣଙ୍କର ମତାମତ ପାଇଁ ଧନ୍ୟବାଦ। ଆପଣଙ୍କର ଲେଖା ମୁଖ୍ୟ ସମ୍ପାଦକ, ଉତ୍କଳ ପ୍ରସଙ୍ଗଙ୍କ ନିକଟକୁ ପଠାଇ ପାରନ୍ତି। ପ୍ରକାଶ ଉପଯୋଗୀ ହେଲେ ଲେଖା ନିଶ୍ଚୟ ପ୍ରକାଶ କରାଯିବ।

**କୁମାରୀ ଯଶୋମତୀ ଜେନା,**
**ଲୋ: ନଂ: ୨୬୮, ବୀରକୃଷ୍ଣ ମହାବିଦ୍ୟାଳୟ, ଜଳେଶ୍ୱର,**
**ଜିଲ୍ଲା-ବାଲେଶ୍ୱର।**

*ପ୍ରଶ୍ନ-ମହାଶୟ, ଉତ୍କଳ ପ୍ରସଙ୍ଗଟି ମୋତେ ବିଶେଷ ଆନନ୍ଦ ଦେଇପାରୁଛି, କାରଣ-ପ୍ରକାଶିତ ସମସ୍ତ ବିଷୟ ଶିକ୍ଷଣୀୟ ଓ ମନୋମୁଗ୍ଧକର ଅଟେ।*

*ମୁଁ ଉତ୍କଳ ପ୍ରସଙ୍ଗର ବାର୍ଷିକ ଗ୍ରାହକ ହେବାକୁ ଚାହେଁ। କ'ଣ କରିବାକୁ ହେବ?*

ଉତ୍ତର-ଆପଣଙ୍କର ମତାମତ ପାଇଁ ଧନ୍ୟବାଦ। ଉତ୍କଳ ପ୍ରସଙ୍ଗର ବାର୍ଷିକ ଗ୍ରାହକ ହେବା ପାଇଁ ଆପଣଙ୍କ ଜିଲ୍ଲାର ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ ଅଥବା ଉପଖଣ୍ଡ ସୂଚନା ଓ ଲୋକ ସମ୍ପର୍କ ଅଧିକାରୀଙ୍କ ନିକଟରେ ୨୦ ଟଙ୍କା ଜମା କରି ରସିଦ ନେଇପାରନ୍ତି। ନଚେତ୍ ସେଲ୍ସ ଅଫିସର, ପ୍ରିଣ୍ଟ ମିଡ଼ିଆ ସେକ୍ସନ, ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଭୁବନେଶ୍ୱରଙ୍କ ଠିକଣାରେ ୨୦ ଟଙ୍କା ମନିଅର୍ଡର ଯୋଗେ ପଠାଇପାରନ୍ତି।

**ଶ୍ରୀ ଲୋକନାଥ ସାମଲ,**
**ଗ୍ରାମ-ଗିରୀ, ପୋ: ଅ:-ଗରୀ,**
**ସିଂହପୁର, ଜିଲ୍ଲା-କଟକ।**

*ପ୍ରଶ୍ନ-ପ୍ରିୟ ମହାଶୟ, ଆପଣଙ୍କର ପତ୍ରିକାର ୧୯୯୦ ସଂଖ୍ୟାଟିକୁ ପଢ଼ି ବହୁତ ଖୁସି ହେଲି। ଏଥିନିମନ୍ତେ ଆପଣଙ୍କୁ ବିଶେଷ ଧନ୍ୟବାଦ ଜଣାଉଛି। ଉତ୍କଳ ପ୍ରସଙ୍ଗରେ ଯାହା ପ୍ରକାଶ ପାଉଛି ସେଥିରେ ଅଧିକାଂଶ ହିଁ ସରକାରୀ ବୋଲି ଜଣାପଡ଼ୁଛି। ଏଥିରେ ଆଞ୍ଚଳିକ ଖବରମାନ ପ୍ରକାଶ କରାଗଲେ କିପରି ହୁଅନ୍ତା?*

*ଏଥିପାଇଁ ଆପଣଙ୍କ ମତାମତ କ'ଣ?*

ଉତ୍ତର-ମତାମତ ପାଇଁ ଧନ୍ୟବାଦ। ଆଞ୍ଚଳିକ ଲେଖା ସଂଗ୍ରହ କରି ପ୍ରକାଶ କରିବାକୁ ଆମେ ଉଦ୍ୟମ କରୁଛୁ।

**କପିଳେଶ୍ୱର ପଧାନ, ୨୯/୯୧**
**ଘଣ୍ଟୁପାଲି, ମୁରସିଂଘ,**
**ଦେଓଗାଁ, ଜିଲ୍ଲା-ବଲାଙ୍ଗୀର।**

*ପ୍ରଶ୍ନ-ମହାଶୟ, ମୁଁ ଉତ୍କଳ ପ୍ରସଙ୍ଗର ବାର୍ଷିକ ଗ୍ରାହିକା, ମୋର ଗ୍ରାହକ ସଂଖ୍ୟା ୨୯/୯୧। ଆପଣଙ୍କ ଉତ୍କଳ ପ୍ରସଙ୍ଗକୁ ଏହି କେତେ ମାସ ହେବ ବିଶେଷ ସରସ, ସୁନ୍ଦର ଓ ମନଛୁଆଁ କରିପାରିଛନ୍ତି। ଏଥିରେ ପ୍ରକାଶିତ ଗଳ୍ପ, କବିତା ଇତ୍ୟାଦି ବିଶେଷ ମନୋମୁଗ୍ଧକର ହେଉଛି। ଆହୁରି ମଧ୍ୟ ପାଠକ ପାଠିକାମାନଙ୍କର ମତାମତ ପ୍ରଦାନ କରିବା ପାଇଁ ପାଠକଙ୍କ କଲମ ବିଭାଗ ଗୋଟିଏ ଖୋଲାଯାଇଥିବାରୁ ଏହା ବିଶେଷ ଆଦରଣୀୟ ହୋଇପାରିଛି।*

*କିନ୍ତୁ, ମହାଶୟ, ଏହି ପୁସ୍ତକଟିକୁ ଠିକ୍ ସମୟରେ ମୁଁ ପାଇପାରୁନଥିବାରୁ ମୁଁ ବିଶେଷ ଦୁଃଖିତ। ତେଣୁ ଆପଣ ଏ ବିଷୟରେ ଟିକିଏ ଧ୍ୟାନ ଦେବେ ବୋଲି ମୋର ଆଶା। ଏଣୁ ଆପଣଙ୍କ ନିକଟରୁ ଚିଠି ଦେବାର ଅବସ୍ଥା ଜାଣିପାରିଲେ ମୁଁ ବିଶେଷ ଖୁସି ହେବି।*

ଉତ୍ତର-ମତାମତ ପାଇଁ ଧନ୍ୟବାଦ। ନିୟମିତ ରୂପେ ଉତ୍କଳ ପ୍ରସଙ୍ଗ ପଠାଇବା ପାଇଁ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଉଛି।

**ଶ୍ରୀ ସରୋଜ କୁମାର ସେଣା,**
**ବିତ୍ତ ଉପଦେଷ୍ଟା ଏବଂ ମୁଖ୍ୟ ଲେଖାଧିକାରୀଙ୍କ କାର୍ଯ୍ୟାଳୟ,**
**ଦକ୍ଷିଣ ପୂର୍ବ ରେଳବାଇ, ବିଶାଖାପାଟଣା, ପିନ୍-୫୩୦୦୦୪।**

*ପ୍ରଶ୍ନ-(୧) ଉତ୍କଳ ପ୍ରସଙ୍ଗ ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ଦ୍ୱାରା ପ୍ରକାଶିତ। ଓଡ଼ିଶାର ଅତୀତ ଏବଂ ବର୍ତ୍ତମାନର କଳା, ସଂସ୍କୃତି ଓ ସ୍ଥାପତ୍ୟ ବିଷୟରେ ପାଠକ ପାଠିକା ଏବଂ ସର୍ବସାଧାରଣଙ୍କ ନିକଟରେ ପହଞ୍ଚାଇବା ଏହାର ମୁଖ୍ୟ ଆଭିମୁଖ୍ୟ ହେବା ଉଚିତ। ନିକଟ ଅତୀତରେ ନୂଆଦିଲ୍ଲୀରେ ଅନୁଷ୍ଠିତ ହୋଇଥିବା "୧୯୯୧-ଓଡ଼ିଶା ଉତ୍ସବ" ବିଷୟରେ ଆଗାମୀ ସଂଖ୍ୟାରେ ଆଲୋକପାତ କଲେ, ଓଡ଼ିଶାର ବର୍ତ୍ତମାନର ସଂସ୍କୃତି ବିଷୟରେ କିଛି ଜାଣି ହୁଅନ୍ତା।*

*(୨) ଓଡ଼ିଶାର ସ୍ୱାଧୀନତା ସଂଗ୍ରାମକୁ ଅବଦାନ ବିଷୟରେ ଧାରାବାହିକ ଭାବେ ଲେଖାମାନ ଲେଖକମାନଙ୍କଠାରୁ ସଂଗ୍ରହ କଲେ, ଏହା ସୁବିଧାଜନକ ହୋଇପାରନ୍ତା।*

ଉତ୍ତର-ଧନ୍ୟବାଦ। ଆପଣଙ୍କର ପରାମର୍ଶ କାର୍ଯ୍ୟକାରୀ କରିବା ପାଇଁ ଆମେ ଭବିଷ୍ୟତରେ ନିଶ୍ଚୟ ଉଦ୍ୟମ କରିବୁ।

**ଶ୍ରୀମାନ୍ ରମେଶ କୁମାର ଜେନା,**
**ସରକାରୀ ମହାବିଦ୍ୟାଳୟ,**
**ଭବାନୀପାଟଣା, ଜିଲ୍ଲା-କଳାହାଣ୍ଡି।**

*ପ୍ରଶ୍ନ-ମହାଶୟ, ଆମ ସହର ଲୋକଙ୍କୁ ଆପଣଙ୍କ ପତ୍ରିକା ପ୍ରତ୍ୟେକ ମାସରେ ଆସିପାରୁନାହିଁ। ତା'ଛଡ଼ା ଯେଉଁ ପତ୍ରିକା ଆସୁଛି ତାହା ଭାରୀ ବିଳମ୍ବରେ ଆସି ପହଞ୍ଚୁଛି, ଏପରି କି ୧/୨ ମାସ ପରେ ଆସି ପହଞ୍ଚୁଛି। ମୁଁ ଏହି ମାସର ପତ୍ରିକାଟି ନିକଟସ୍ଥ ସହରରୁ ପାଇଲି ଓ ଏହି ପ୍ରଶ୍ନ ଆପଣଙ୍କ ନିକଟକୁ ଲେଖି ପଠାଇପାରିଲି। ନଚେତ୍ ଏହି ପ୍ରଶ୍ନ ମଧ୍ୟ ପଠାଇପାରିନଥାନ୍ତି। ଆପଣ ଏଥିପ୍ରତି ଧ୍ୟାନ ଦେବେ ବୋଲି ଅନୁରୋଧ।*

ଉତ୍ତର-ଉତ୍କଳ ପ୍ରସଙ୍ଗର ଲୋକପ୍ରିୟତା ବୃଦ୍ଧି ପାଇଥିଲେ ମଧ୍ୟ ତାହା ଜିଲ୍ଲା ସଦର ମହକୁମା ବ୍ୟତୀତ ଅନ୍ୟ ଅଞ୍ଚଳକୁ ପଠାଇବା ବର୍ତ୍ତମାନ ପାଇଁ ସମ୍ଭବପର ହୋଇପାରୁନି। ନିୟମିତ ରୂପେ ପତ୍ରିକାଟି ପାଇବା ପାଇଁ ଆପଣ ଏହାର ବାର୍ଷିକ ଗ୍ରାହକ ହୋଇପାରନ୍ତି।

**ଶ୍ରୀ କୈଳାସ ଚନ୍ଦ୍ର ପରିଡ଼ା,**
**ଗ୍ରା/ପୋ-ନୂଆଗାଁ, ଥାନା-ନୟାଗଡ଼,**
**ଜିଲ୍ଲା-ପୁରୀ-୭୫୨୦୮୩।**

*ପ୍ରଶ୍ନ-(୧) ଉତ୍କଳ ପ୍ରସଙ୍ଗରେ ସବୁ ବିଷୟରେ ତଥ୍ୟ ପ୍ରକାଶ ପାଉଛି, କିନ୍ତୁ ପିଲାମାନଙ୍କ ପାଇଁ କିଛି ଲେଖା ପ୍ରକାଶ ପାଉନାହିଁ। ତେଣୁ ଦୟାକରି ପିଲାମାନଙ୍କୁ ସବୁ କ୍ଷେତ୍ରରେ ଉତ୍ସାହିତ କରିବା ପାଇଁ ପିଲାମାନଙ୍କ ପାଇଁ କିଛି ଲେଖା ପ୍ରକାଶ କଲେ ପିଲାମାନେ ବିଶେଷ ଉପକୃତ ହେବେ।*

*(୨) ଉତ୍କଳ ପ୍ରସଙ୍ଗ ପାଠକମାନଙ୍କ ପାଖରେ ପହଞ୍ଚାଇବା ପାଇଁ ପ୍ରତି ବ୍ଲକ୍ ଉନ୍ନୟନ ଅଧିକାରୀଙ୍କ ନିକଟକୁ ବହି କିଛି ପାଇଁ ପଠାଇଲେ ସେଠାରୁ ପାଠକମାନେ ସହଜରେ ଉତ୍କଳ ପ୍ରସଙ୍ଗ ପାଇପାରିବେ।*

ଉତ୍ତର-ଉତ୍କଳ ପ୍ରସଙ୍ଗରେ ବିଭିନ୍ନ ଶ୍ରେଣୀର ଲୋକଙ୍କ ପାଇଁ ସ୍ୱତନ୍ତ୍ର ବିଭାଗ ଖୋଲିବା ବର୍ତ୍ତମାନ ଆମର ସକ୍ରିୟ ବିଚାରାଧୀନ ଅଛି। ସେତେବେଳେ ଆପଣଙ୍କର ପରାମର୍ଶ ଆମର ସହାୟକ ହେବ।

**ଶ୍ରୀ ଚତୁର୍ଭୁଜ ପରିଡ଼ା,**
**ମଣିକୁଞ୍ଜ (ସାଲଲୋ ବାଲିକୁଦା),**
**ପୋ-ସାଲଲୋ ବଡ଼ବିଲ,**
**ଥାନା-ବ୍ରାହ୍ମଣ ସାଲଲୋ, କଟକ।**

*ପ୍ରଶ୍ନ-ଆପଣଙ୍କର ଏହି ସୁଚିନ୍ତିତ ପରିକଳ୍ପନା ପାଇଁ ଧନ୍ୟବାଦ। ଚଳିତ ବର୍ଷକୁ ଭାରତବର୍ଷ ପର୍ଯ୍ୟଟନ ବର୍ଷ ବୋଲି ପାଳନ କରୁଛନ୍ତି। ତେଣୁ ପର୍ଯ୍ୟଟନ ବର୍ଷ ଦୃଷ୍ଟିରୁ ଆପଣ ଓଡ଼ିଶାର ବିଭିନ୍ନ*

# କଳାର ଉତ୍କର୍ଷତା ଯହିଁ ସେ ଉତ୍କଳ

ଶ୍ରୀ ସତୀଶ ପାତ୍ର

ଉତ୍କଳ, କଳିଙ୍ଗ, ଓଡ଼ିଶା — ଏ ସବୁ ଏକ ଓ ଅଭିନ୍ନ ରାଜ୍ୟ ଥିଲା । ସେ ସମ୍ପର୍କରେ ଐତିହାସିକ ତଥ୍ୟ ଅବତାରଣା କରିବା ଏହି ଆଲୋଚନାର ଉଦ୍ଦେଶ୍ୟ ନୁହେଁ । ତେବେ ଉତ୍କଳ ନାମଟି ଅତି ପ୍ରାଚୀନ ଓ ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀ ସମୟରେ ଉତ୍କଳ ରାଜ୍ୟ ଥିବା ପ୍ରମାଣ ବୌଦ୍ଧ ଜାତକରୁ ମିଳେ । ମହାକବି କାଳୀଦାସଙ୍କ କାବ୍ୟରେ ମଧ୍ୟ ଉତ୍କଳ ବିଷୟରେ ଉଲ୍ଲେଖ ହୋଇଛି । ନବମ ଶତାବ୍ଦୀରେ ସୋମ ବଂଶୀୟ ରାଜାମାନେ କୋଶଳ, ତୋଷାଳୀ ଓ କଳିଙ୍ଗ ଏ ସବୁ ଅଞ୍ଚଳକୁ ଏକୀକରଣ କରି ସମଗ୍ର ରାଜ୍ୟକୁ ଉତ୍କଳ ନାମରେ ନାମକରଣ କରିଥିଲେ । ତ୍ରୟୋଦଶ ଶତାବ୍ଦୀରେ ଗଙ୍ଗବଂଶ ରାଜତ୍ୱ ସମୟରେ ମଧ୍ୟ ସମଗ୍ର ରାଜ୍ୟ ଉତ୍କଳ ନାମରେ ବିଦିତ ଥିଲା । ଅନେକଙ୍କ ମତରେ କଳାର ଉତ୍କର୍ଷତା ଯୋଗୁଁ ଏହି ଭୂଖଣ୍ଡ ଉତ୍କଳ ନାମରେ ନାମିତ ହୋଇଥିଲା ।

କଳା ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ । କାରୁ କଳା ଓ ସ୍ୱରୁ କଳା । ଦୈନନ୍ଦିନ ଜୀବନର ପ୍ରୟୋଜନ ପାଇଁ ଯାହା ଉଦ୍ଦିଷ୍ଟ, ତାହା କାରୁ କଳା ବା ଶିଳ୍ପ କଳା । ପ୍ରାଚୀନ ଉତ୍କଳର ସାଧବ ପୁଅମାନେ ବାଣିଜ୍ୟ କରିବା ପାଇଁ ଯେଉଁ ବୋଇତରେ ସାତ ସମୁଦ୍ର ପାର ହୋଇ ବିଦେଶ ଯାଉଥିଲେ, ତାହା ଉତ୍କଳୀୟ ଶିଳ୍ପୀମାନେ ହିଁ ତିଆରି କରୁଥିଲେ । କୋଣାର୍କ ମନ୍ଦିର ଓ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିରରେ ଯେଉଁ ଲୁହାକଡ଼ି ସବୁ ବ୍ୟବହାର ହୋଇଛି, ସେଥିର ଗଠନ ପ୍ରଣାଳୀ ଦେଖି ଏବେ ମଧ୍ୟ ବଡ଼ ବଡ଼ ଇଞ୍ଜିନିୟରମାନେ ଚକିତ ହୁଅନ୍ତି । ଅତଏବ୍ ପ୍ରାଚୀନ ଉତ୍କଳରେ ଖ୍ରୀଷ୍ଟ ଜନ୍ମର ବହୁ ବର୍ଷ ପୂର୍ବରୁ କାରୁ କଳା ବା ଶିଳ୍ପ କଳାର ସୃଷ୍ଟି — ସେଥିରେ ସନ୍ଦେହ ନାହିଁ ।

ସ୍ୱରୁ କଳା ବା ଲଳିତ କଳା ସାଧାରଣତଃ ପାଞ୍ଚ ଭାଗରେ ବିଭକ୍ତ । ତା' ହେଉଛି — ସ୍ଥାପତ୍ୟ ବିଦ୍ୟା, ଭାସ୍କର୍ଯ୍ୟ, ଚିତ୍ର ଶିଳ୍ପ, ସଙ୍ଗୀତ ଓ କାବ୍ୟ କବିତା । ସ୍ୱରୁ କଳା ଉତ୍କଳୀୟର ରକ୍ତଗତ । ବିଭିନ୍ନ ଆଦିବାସୀ ଅଞ୍ଚଳରେ ଘର କାନ୍ଥରେ ଯେଉଁ ଚିତ୍ର ଦେଖିବାକୁ ମିଳେ ଏବଂ ପଲ୍ଲୀ ସୀମନ୍ତିନୀ ଯେଉଁ ଝୋଟି ଦିଏ ତାହା କୌଣସି ଶିକ୍ଷାନୁଷ୍ଠାନର ଶିକ୍ଷା ନୁହେଁ । ପାରମ୍ପରିକ ରୀତିରେ ଆପଣା ଛାଏଁ ତାହା ଘରୁ କେବଳ ଦେଖି ଦେଖି ଶିଖିଥାନ୍ତି ।

ଐତିହାସିକ ତଥ୍ୟ ଅନୁଶୀଳନ କଲେ ଜଣାଯାଏ ଯେ, ଉତ୍କଳ ଅତି ପ୍ରାଚୀନ କାଳରୁ କଳାରେ ଉତ୍କର୍ଷତା ଲାଭ କରିଥିଲା । କେନ୍ଦୁଝର ଜିଲ୍ଲାର ସୀତାବିଞ୍ଜିରେ ପ୍ରସ୍ତର ଦେହରେ ଚିତ୍ରିତ ରଙ୍ଗୀନ ଚିତ୍ର, ପର୍ବତ ଦେହରେ ଖୋଦିତ ବହୁ ସୁନ୍ଦର ଗୁମ୍ଫା, ବିଭିନ୍ନ ମନ୍ଦିର, ମୂର୍ତ୍ତି ଏଗୁଡ଼ିକ ସେଥିର ମୂକ ସାକ୍ଷୀ ରୂପେ ଅଦ୍ୟାବଧି ରହିଛି । ଅଶୋକଙ୍କର କଳିଙ୍ଗ ବିଜୟ ପରେ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ ଖାରବେଳ ଦିଗ୍‌ବିଜୟ କରି ମଗଧରୁ ଯେଉଁ ଜୈନ ମୂର୍ତ୍ତିକୁ ଫେରାଇ ଆଣିଥିଲେ, ତାହା ଭାସ୍କର୍ଯ୍ୟର ଏକ ଅପୂର୍ବ ନିଦର୍ଶନ । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀଠାରୁ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ଉତ୍କଳ ପାଇଁ ସୁବର୍ଣ୍ଣ ଯୁଗ ଥିଲା । ଶୌର୍ଯ୍ୟ, ବୀର୍ଯ୍ୟ, ନିର୍ମାଣ, ବାଣିଜ୍ୟ ଓ ସାହିତ୍ୟ ସାଙ୍ଗକୁ ସ୍ୱରୁ କଳାରେ ମଧ୍ୟ ଉତ୍କଳ ଉତ୍କର୍ଷତାର ଚରମ ସୋପାନରେ ପହଞ୍ଚି ପାରିଥିଲା । କଳା ପାହାଡ଼ର ବର୍ବରୋଚିତ ଧ୍ୱଂସଲୀଳା ଉତ୍କଳର ଏହି ଅପୂର୍ବ କୀର୍ତ୍ତିଗୁଡ଼ିକୁ ସମ୍ପୂର୍ଣ୍ଣ ରୂପେ ଲୋପ କରିବା ପାଇଁ ସମର୍ଥ ହୋଇ ପାରିନଥିଲା । ଏଥିପାଇଁ ଉତ୍କଳର କଳାକୁ କାଳଜୟୀ ବୋଲି ମଧ୍ୟ କହନ୍ତି ।

କଳାର ଉତ୍କର୍ଷତା ସାଧାରଣତଃ ଆଞ୍ଚଳିକ ଲୋକ କଳା ଉପରେ ନିର୍ଭର କରେ । ଉତ୍କଳର ଲୋକ କଳା ମୁଖ୍ୟତଃ ଧର୍ମ ସହ ସଂଶ୍ଲିଷ୍ଟ ହୋଇଯାଇଥିଲା । ମାର୍ଗଶିର ମାସରେ ଅନୁଷ୍ଠିତ ହେଉଥିବା ମାଣବସା ଗୁରୁବାର ବା ମହାଲକ୍ଷ୍ମୀ ପୂଜା ଉପଲକ୍ଷେ ଘରେ ଘରେ ପିଠୋଉରେ ଯେଉଁ ସୁନ୍ଦର ସୁନ୍ଦର ଚିତା ଅଙ୍କାଯାଏ ଏବଂ ପ୍ରତିଦିନ ତୁଳସୀ ଚଉରା ମୂଳରେ ଯେଉଁ ଝୋଟି କିମ୍ବା ମୁରୁଜରେ ଯେଉଁ ଆଲିମ୍ପନ ଅଙ୍କା ଯାଇଥାଏ ତାହା ସମ୍ପୂର୍ଣ୍ଣ ରୂପେ ଆମର ଧାର୍ମିକ ପରମ୍ପରାରେ ପରିଣତ ହୋଇଯାଇଛି । ଏହାଦ୍ୱାରା ମନୁଷ୍ୟ ମୃତ୍ୟୁପରେ ଯମ ଦଣ୍ଡରୁ ମୁକ୍ତି ପାଇଥାଏ ବୋଲି ଧର୍ମ ବିଶ୍ୱାସ ରହିଛି । ଏ ସମ୍ପର୍କରେ ଆମର ଲୋକଗୀତ ଓ ପୁରାଣରେ କୁହାଯାଇଛି —

"ଶଙ୍ଖ, ଚକ୍ର, ଗଦା, ପଦ୍ମକୁ ଲେଖିବି
ତୁଳସୀ ମୂଳରେ ବସି
ମଲେ ଯମଗଣ ପାଶେ ନପଶିବେ
ବିଷ୍ଣୁ ଦୂତ ନେବେ ଆସି ।"

ଲୋକ କଳାର ଆଉ ଗୋଟିଏ ଦିଗ ମଧ୍ୟ ଆଲୋଚନା କରାଯାଇପାରେ। ଗାଁରେ ମାଟିପାତ୍ର ତିଆରି କରୁଥିବା ଲୋକର ମାଟି ତିଆରି ଘୋଡ଼ା, ହାତୀ ମୂର୍ତ୍ତି ଓ ଗାଁରେ କାଠ କାମ କରୁଥିବା ଲୋକର କାଠ ମାଣରେ ଅଙ୍କିତ ସୁନ୍ଦର ଚିତ୍ର ଉତ୍କଳୀୟ ଲୋକ କଳାର ଉତ୍କର୍ଷତାକୁ ହିଁ ପ୍ରତିପାଦିତ କରୁଛି।

ଚିତ୍ରାଙ୍କନ କଳା ବିଷୟ ଆଲୋଚନା କଲାବେଳେ ଆମକୁ ପ୍ରଥମରେ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀର ଇତିହାସକୁ ଦେଖିବାକୁ ହେବ। ଖଣ୍ଡଗିରିରେ ଖୋଦିତ ହୋଇଥିବା କେତେକ ଗୁମ୍ଫାରେ ବର୍ତ୍ତମାନ ମଧ୍ୟ ଏହି ଚିତ୍ରାଙ୍କନର ନମୁନା ମିଳେ। ପୂର୍ବରୁ ବର୍ଣ୍ଣିତ ସୀତାବିଞ୍ଜିର ଚିତ୍ର ବା ଗଞ୍ଜାମ ଜିଲ୍ଲା ବୁଗୁଡ଼ାର ବିରଞ୍ଚିନାରାୟଣ ମନ୍ଦିରରେ ଅଙ୍କିତ ଚିତ୍ର ଏହି ଚିତ୍ରାଙ୍କନ କଳା କ୍ଷେତ୍ରରେ ଆମର ଦକ୍ଷତାର ନମୁନା ମାତ୍ର। ଉତ୍କଳର ପଟ୍ଟଚିତ୍ର ଆଦି ମଧ୍ୟ ସମଗ୍ର ବିଶ୍ୱରେ ଆଦୃତ ଓ ଉଚ୍ଚ ପ୍ରଶଂସିତ। ଆମର ତାଳପତ୍ର ପୋଥିରେ ଅଙ୍କିତ ବିଭିନ୍ନ ଛବିରୁ ପ୍ରାଚୀନ ଉତ୍କଳର ଚିତ୍ରକଳା ଅତି ଉନ୍ନତ ଥିବାର ପ୍ରମାଣ ଦିଏ।

ଆମର ସ୍ଥାପତ୍ୟ କଳା ସମ୍ପର୍କରେ ସବିଶେଷ ବର୍ଣ୍ଣନାର ବିଶେଷ ଆବଶ୍ୟକତା ନାହିଁ। ଅନେକଙ୍କ ମତରେ ଆଗ୍ରାର ତାଜମହଲ ଦେଖିବା ପୂର୍ବରୁ ଯଦି କୋଣାର୍କ ମନ୍ଦିର ଦୃଷ୍ଟିଗୋଚର ହୋଇଥାନ୍ତା, ତେବେ କୋଣାର୍କର ସୂର୍ଯ୍ୟ ମନ୍ଦିର ହିଁ ସପ୍ତାଶ୍ଚର୍ଯ୍ୟ ମଧ୍ୟରେ ଅନ୍ତର୍ଭୁକ୍ତ ହୋଇଥାନ୍ତା। ସମଗ୍ର ଭାରତବର୍ଷରେ ମନ୍ଦିର ନିର୍ମାଣ କଳାକୁ ମୁଖ୍ୟତଃ ତିନି ଭାଗରେ ବିଭକ୍ତ କରାଯାଇଛି। ପ୍ରଥମଟି ନାଗର ଶ୍ରେଣୀୟ ବା ଆର୍ଯ୍ୟ ଭାରତୀୟ। ଦ୍ୱିତୀୟଟି ବେସର ଶ୍ରେଣୀୟ। ଏ ଶ୍ରେଣୀର ମନ୍ଦିର ପୁଣି ଦୁଇ ଭାଗରେ ବିଭକ୍ତ। ଗୋଟିଏ ଦକ୍ଷିଣ ଭାରତୀୟ ବା ଦ୍ରାବିଡ଼ ଦେଶୀୟ ମନ୍ଦିର ଏବଂ ଅନ୍ୟଟି ଦକ୍ଷିଣ-ପଶ୍ଚିମ ଭାରତୀୟ ବା ଚାଲୁକ୍ୟ ଦେଶୀୟ ମନ୍ଦିର। ତୃତୀୟଟି କଳିଙ୍ଗ ବା ଉତ୍କଳୀୟ ମନ୍ଦିର। ଉତ୍କଳରେ ଥିବା ପ୍ରାଚୀନ ଉତ୍କଳୀୟ ମନ୍ଦିରଗୁଡ଼ିକର ଶିଳ୍ପ ଚାତୁରୀ ସମ୍ପୂର୍ଣ୍ଣ ଭିନ୍ନ। ଉତ୍କଳର ମନ୍ଦିରଗୁଡ଼ିକ ପୁଣି ପାଞ୍ଚ ଭାଗରେ ବିଭକ୍ତ। ଏକରଥ, ତ୍ରିରଥ, ପଞ୍ଚରଥ, ସପ୍ତରଥ ଓ ନବରଥ ମନ୍ଦିର। ମନ୍ଦିରଗୁଡ଼ିକରେ ଖୋଦିତ ମୂର୍ତ୍ତି ଆଜି ମଧ୍ୟ ଜୀବନ୍ତ। ସବୁ ଭାବନା, ସବୁ ଅଭିଜ୍ଞତାକୁ ଶିଳ୍ପୀ ନିପୁଣ ଭାବେ ଆଙ୍କି ଯାଇଛନ୍ତି ମନ୍ଦିର ଗାତ୍ରରେ। ଶାଶ୍ୱତ ଆନନ୍ଦ ଲାଭ ହିଁ ଏହି କଳାର ଏକମାତ୍ର ଉଦ୍ଦେଶ୍ୟ ଏବଂ ତାହା ହିଁ ଉତ୍କୃଷ୍ଟ କଳାର ସଜ୍ଞା।

ପ୍ରାଚୀନ ଧଉଳିଗିରି ଗୁମ୍ଫାଠାରୁ ଆରମ୍ଭ କରି ମୟୁରଭଞ୍ଜର ଖିଚିଙ୍ଗ୍, କୋଣାର୍କ, ପୁରୀ, ଭୁବନେଶ୍ୱର ଏସବୁ ସ୍ଥାନର ଅଗଣିତ ମନ୍ଦିର, ବିଭିନ୍ନ ଦେବ ଦେବୀଙ୍କ ମୂର୍ତ୍ତି ବା ସୁନ୍ଦର ବୌଦ୍ଧ କୀର୍ତ୍ତି ଉତ୍କଳୀୟ ଶିଳ୍ପୀଙ୍କୁ କରିଯାଇଛି ଶାଶ୍ୱତ, ଅବିନଶ୍ୱର।

ଉତ୍କଳର ବସ୍ତ୍ର ଶିଳ୍ପ ମଧ୍ୟ ଅତି ଉନ୍ନତ ଥିଲା। ,ହଣ୍ଟରଙ୍କ ଇତିହାସରୁ ପ୍ରମାଣ ମିଳେ ଯେ ସୂକ୍ଷ୍ମ ବସ୍ତ୍ର ପାଇଁ ପ୍ରାଚୀନ ଉତ୍କଳର ଉତ୍କର୍ଷତା ଯୋଗୁଁ ହିଁ ଦ୍ୱାଦଶ ଶତାବ୍ଦୀରେ ଇଉରୋପୀୟ ବଣିକମାନେ ପ୍ରଥମେ ଏହି ରାଜ୍ୟ ସହ ବାଣିଜ୍ୟ କରିଥିଲେ। ଦାକ୍ଷିଣାତ୍ୟର ଲୋକମାନେ ଉତ୍କଳରୁ ହିଁ ସୂକ୍ଷ୍ମ ବସ୍ତ୍ର ନିର୍ମାଣର କଳା ଶିକ୍ଷାଲାଭ କରିଥିଲେ। ଉତ୍କଳ ବା କଳିଙ୍ଗରୁ ଶି[illegible] କରିଥିବାରୁ ପ୍ରାଚୀନ ତାମିଲ ଭାଷାରେ ବସ୍ତ୍ରକୁ କଳିଙ୍ଗ କୁହାଯାଏ। ଉତ୍କଳୀୟ ବଣିକମାନେ ଏହି ସୂକ୍ଷ୍ମ ବସ୍ତ୍ର ସବୁ ବିଦେଶକୁ ରପ୍ତାନୀ କରୁଥିଲେ। କବି ସମ୍ରାଟ ଉପେନ୍ଦ୍ର[illegible] ସମ୍ପର୍କରେ ବୈଦେହୀଶ ବିଳାସରେ ଲେଖିଛନ୍ତି –

"ବଂଶନଳୀରେ ରଖି ଲେଖି ବସନ
ଦେଲେ ସୀତା ପାଇଁ ଆଣି"।

କବିଙ୍କ ଏହି ରଚନାରୁ ବାଉଁଶ ନଳୀ ମଧ୍ୟରେ ଗୋଟି[illegible] ରଖିବା ଏହି ବସ୍ତ୍ରର ସୂକ୍ଷ୍ମତାକୁ ସୂଚିତ କରେ। ସମ୍ବ[illegible] ସୋନପୁର ପ୍ରଭୃତି ଅଞ୍ଚଳର ମଠା ଓ ଶାଢ଼ୀ, ବ୍ରହ୍ମପୁରର [illegible] ମାଣିଆବନ୍ଧ ଶାଢ଼ୀ ଏ ସବୁ ମଧ୍ୟ ସର୍ବଜନ ଆଦୃତ।

ପାଟର ପ୍ରସିଦ୍ଧି ପାଇଁ ବ୍ରହ୍ମପୁରକୁ ସିଲ୍କ ସିଟି ବୋ[illegible] କହନ୍ତି। ଗୌରବର କଥା ୧୯୨୪ ମସିହାରେ ଅନୁଷ୍ଠିତ [illegible] ପ୍ରଦର୍ଶନୀରେ ଏହି ପାଟ ଓ ମଠା ସୁଖ୍ୟାତି [illegible] କରିପାରିଥିଲେ। ରୌପ୍ୟ ନଗରୀ କଟକର ରୁପା [illegible] କାମ, ବେଲଗୁଣ୍ଠାର ପିତଳ ମାଛ, ପାରଳାଖେମଣ୍ଡିର ଶି[illegible] ଇତ୍ୟାଦି ଆମର ଉତ୍କଳୀୟ କଳା ଜ୍ଞାନର ପରିପ୍ରକାଶ ମା[illegible]

ଉତ୍କଳର ଲୋକନୃତ୍ୟ ଯଥା–ପ୍ରହଲ୍ଲାଦ ନାଟକ, ଦାସକାଠିଆ, ରାମଲୀଳା, କୃଷ୍ଣଲୀଳା, ରାଧାପ୍ରେ[illegible] ଭାରତଲୀଳା, ରାବଣ ଛାୟା, ଛଉନୃତ୍ୟ, ଡାଲଖାଇ [illegible] ଦଣ୍ଡନାଚ, ନାଗାନାଚ, ଘୋଡ଼ାନାଚ, ଗଞ୍ଜାମ ବଡ଼ଖେ[illegible] କଣ୍ଢେଇନାଚ, ଆଦିବାସୀ ସମ୍ପ୍ରଦାୟର ନୃତ୍ୟ ଅଥବା [illegible] ଓଡ଼ିଶୀ ନୃତ୍ୟ, ସମ୍ବଲପୁରୀ ନୃତ୍ୟ ପ୍ରଭୃତି ସଙ୍ଗୀତ ଓ ନୃତ୍[illegible] ଉତ୍କର୍ଷତାକୁ ପ୍ରମାଣିତ କରେ।

ସଂସ୍କୃତ କବି ଜୟଦେବଙ୍କଠାରୁ ଆରମ୍ଭ କରି ଆଦିକବି [illegible] ଦାସ, ପଞ୍ଚସଖା, କବି ସମ୍ରାଟ ଉପେନ୍ଦ୍ରଭଞ୍ଜ, କବିସୂର୍ଯ୍ୟ ବ[illegible] ରଥ, ଗୋପାଳକୃଷ୍ଣ, ଦୀନକୃଷ୍ଣ, ଅଭିମନ୍ୟୁ ସାମନ୍ତ[illegible] କବିବର ରାଧାନାଥ, ପଲ୍ଲୀକବି ନନ୍ଦକିଶୋର, କବି [illegible] ମେହେର ପ୍ରଭୃତିଙ୍କ କାବ୍ୟିକ ଅବଦାନ ଉତ୍କଳୀୟ ସାହିତ୍ୟ[illegible] କରିଛି। ମୋଟାମୋଟି ଭାବରେ କହିବାକୁ ଗଲେ [illegible] ଉତ୍କଳର ଶିଳ୍ପୀମାନେ କାରୁ କଳା, ନୃତ୍ୟ କଳା, ସ୍ଥାପତ୍ୟ ଭାସ୍କର୍ଯ୍ୟ, ଚିତ୍ର ଶିଳ୍ପ, ଲୌହ ଶିଳ୍ପ, ବସ୍ତ୍ର ଶିଳ୍ପ, କାବ୍ୟ ଇତ୍ୟାଦି ସବୁ କ୍ଷେତ୍ରରେ କଳାର ଉତ୍କର୍ଷତାକୁ ପ୍ରମାଣିତ କ[illegible] ଏବଂ ବୋଇତ ବାଣିଜ୍ୟ କରିଆରେ ଉତ୍କଳକୁ କଳାର ଦେଶ [illegible] ବିଶ୍ୱ ଦରବାରରେ ପ୍ରତିଷ୍ଠିତ କରିପାରିଥିଲେ। ଅତଏବ୍ ଉ[illegible] କଳାର ଦେଶ ଏବଂ କଳାର ଉତ୍କର୍ଷତା ଯୋଗୁଁ ହିଁ ଏହି ଭୂଖଣ୍ଡ ନାମରେ ନାମିତ ହୋଇଥିଲା, ଏଥିରେ ସନ୍ଦେହ ନାହିଁ।

ଯେଉଁ କଳା ଓ ସଂସ୍କୃତିର ଉତ୍କର୍ଷତା ପାଇଁ ଉତ୍କଳ ଅ[illegible] ଦେଶ ବିଦେଶରେ ଖ୍ୟାତି ଅର୍ଜନ କରିପାରିଥିଲା ଏବଂ ବିଦେ[illegible] ବିଦେଶରୁ ଧନରତ୍ନ ବୋହି ଆଣୁଥିଲା, ସେହି କଳା ଆଜି [illegible] ସେ ଧନରତ୍ନ ବି ନାହିଁ। କର୍ପୁର ବିହୀନ କନା ଖଣ୍ଡିକ ଧରି ସ୍ମୃତିଚାରଣ କରୁଛୁ ମାତ୍ର।

ଉତ୍କଳର କଳା ଓ ସଂସ୍କୃତିକୁ ଅନୁକରଣ କରିବା ପାଇଁ ଦେଶ
ବିଦେଶରେ ଆଗ୍ରହ ସୃଷ୍ଟି ହେଉଥିବା ବେଳେ ଆମେ କେବଳ
ଅତୀତର ଗୌରବମୟ ଇତିହାସ ପୃଷ୍ଠାକୁ ଦେଖି ଆତ୍ମ ସନ୍ତୋଷ
ଲାଭ କଲେ ଭବିଷ୍ୟତ ଆମକୁ କଦାପି କ୍ଷମା ଦେବ ନାହିଁ ।

ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ସବୁ ସ୍ତରରେ ସଭିଏଁ ଅତୀତକୁ
ସିଂହାବଲୋକନ କରି ଏ ଜାତିର ହୃତ ଗୌରବକୁ ଫେରାଇ
ଆଣିବା ଦିଗରେ ଦୃଢ଼ ସଂକଳ୍ପ ନେବାକୁ ହେବ । ରାଜ୍ୟ ସରକାର
ଓ କେନ୍ଦ୍ର ସରକାରଙ୍କ ସମେତ ଆମ ସମସ୍ତଙ୍କର ଏ ଜାତି ପ୍ରତି ଗୁରୁ
ଦାୟିତ୍ୱ ରହିଛି । ପ୍ରାଚୀନ ମନ୍ଦିର ଓ ମୂର୍ତ୍ତିଗୁଡ଼ିକୁ ଧ୍ୱଂସ ମୁଖରୁ
ରକ୍ଷା କରିବା ଦିଗରେ ଦେବୋତ୍ତର ବିଭାଗ ଦୃଷ୍ଟି ଦେବା ସଙ୍ଗେ
ସଙ୍ଗେ ପ୍ରତ୍ନତତ୍ତ୍ୱ ବିଭାଗ ଜରିଆରେ ଜଉଗଡ଼, ପୋତାଗଡ଼,
ସାରବାଟୀ ଦୁର୍ଗ ଇତ୍ୟାଦି ସ୍ଥାନମାନଙ୍କରୁ ଅଧିକ ତଥ୍ୟ ସଂଗ୍ରହ
କରିବା ଆବଶ୍ୟକ । ଉତ୍କଳର ପ୍ରାଚୀନ କଳାକୁ ଉଜ୍ଜୀବିତ କରିବା
ପାଇଁ ବିଶ୍ୱବିଦ୍ୟାଳୟମାନଙ୍କରେ ସ୍ୱତନ୍ତ୍ର ବିଭାଗ ସୃଷ୍ଟି କରି ସେହି
ବିଭାଗ ଜରିଆରେ ଅଧିକ ଗବେଷଣା କରିବା ନିହାତି
ଆବଶ୍ୟକ । ଆନ୍ତଃ ରାଜ୍ୟ ଓ ଆନ୍ତର୍ଜାତିକସ୍ତରୀୟ
ଆଲୋଚନାଚକ୍ରମାନ ଅନୁଷ୍ଠିତ ହେଲେ ଆହୁରି ଅଧିକ ତଥ୍ୟ
ଆବିଷ୍କୃତ ହୋଇପାରିବ ।

ଅତଏବ୍ ସରକାରୀ ସାହାଯ୍ୟ, ଜନସାଧାରଣଙ୍କ ସହଯୋଗ
ଏବଂ ଉତ୍କଳୀୟ ଶିଳ୍ପୀର ନିଷ୍ଠାକୁ ଏକାଠି କରିପାରିଲେ କଳାର
ଦେଶ ଉତ୍କଳ ପୁନର୍ବାର କଳାର ଉତ୍କର୍ଷତାକୁ ପ୍ରତିପାଦନ କରି ଏ
ଜାତିର ସ୍ୱାଭିମାନକୁ ଫେରାଇ ଆଣିପାରିବ ଏବଂ ଅଚିରେ
ବିଶ୍ୱ ଦରବାରରେ ପ୍ରତିଷ୍ଠିତ ହୋଇପାରିବ — ସେଥିରେ ସନ୍ଦେହ
ନାହିଁ ।

(କଟକ ଆକାଶବାଣୀ କେନ୍ଦ୍ର ସୌଜନ୍ୟରୁ ।)

---

କ୍ୱାଟର ନମ୍ବର–ଭି: ଆର:–୬୩,
ୟୁନିଟ୍–୬, ଭୁବନେଶ୍ୱର ।



ଭଦ୍ରଖଠାରେ ତା.୫–୧–୧୯୯୮' ରିଖରେ ଅନୁଷ୍ଠିତ ଶହୀଦ ସ୍ମୃତି ଟୁର୍ଣ୍ଣାମେଣ୍ଟ ଉଦ୍‌ଘାଟନ କରିବା ପାଇଁ
ଖାଦ୍ୟ ଓ ଯୋଗାଣ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଓ ଶ୍ରମ ରାଷ୍ଟ୍ରମନ୍ତ୍ରୀ
ଶ୍ରୀ ପ୍ରଫୁଲ୍ଲ ସାମଲ ଯାଉଛନ୍ତି ।

# ପ୍ରାଣରୁ ଅଧିକ ଜାତୀୟ ପତାକା

ଶ୍ରୀ ଲୋକନାଥ ରା

ସ୍ୱାଧୀନତା ଆନ୍ଦୋଳନରେ ଦେଶର ହଜାର ହଜାର ନରନାରୀ ପ୍ରାଣକୁ ବିସର୍ଜନ କରି ଆନ୍ଦୋଳନରେ ଯୋଗଦେଇ ଲାଠି ମାଡ଼, ବନ୍ଧୁକ ଗୁଳି, ପୁଲିସର ନିର୍ଯ୍ୟାତନା ପ୍ରଭୃତି ଭୋଗୁ ଥିଲେ। ଶେଷକୁ ଜେଲ, ଜରିମାନାଦେଇ ବିଭିନ୍ନ ଛଳରେ ମୃତ୍ୟୁ ବରଣ କରୁଥିଲେ। ସେଥିରେ ଆମ ତ୍ରିରଙ୍ଗା ଜାତୀୟ ପତାକା ପ୍ରେରଣାର ଉତ୍ସ ଥିଲା। ଖଣ୍ଡେ ପତାକା ହାତରେ ଥିଲେ ବା'ଆଗରେ ଥିଲେ ତାହା ମନରେ ଯେତିକି ସାହାସ ଦିଏ ତାହା ବର୍ଣ୍ଣନାତୀତ।

ପତାକା ସମ୍ପର୍କୀୟ ବହୁ ଘଟଣା ମଧ୍ୟରୁ ମୋର ଗୋଟିଏ ଘଟଣା ଆଜି ମନେ ପଡୁଛି। ୧୯୩୨ ମସିହା (ସତ୍ୟାଗ୍ରହ ଆନ୍ଦୋଳନ) ଏପ୍ରିଲ ପହିଲାରେ ପାଟ୍‌ନା କ୍ୟାମ୍ପ ଜେଲରୁ ଖଲାସ ହୋଇ ଆସିଲି। ସେତେବେଳେ ବିହାର ଓଡ଼ିଶା ଏକାଠି ଥିବାରୁ ଓଡ଼ିଶାର ରାଜନୈତିକ ବନ୍ଦୀମାନଙ୍କୁ ପାଟ୍‌ନା କ୍ୟାମ୍ପ ଜେଲକୁ ପଠାଯାଏ। ଶ୍ମଶାନ ଉପରେ ଅସ୍ଥାୟୀ ଘରମାନଙ୍କରେ ତାର ବା ଇଲେକ୍ଟ୍ରିକ୍ ତାର ଘେରା ହେଉଥିବା ୱାର୍ଡ ଭିତରେ ବିହାର ଓଡ଼ିଶାର ୪ ହଜାରରୁ ଅଧିକ ରାଜନୈତିକ ବନ୍ଦୀ ମିଲଟାରୀ ପହରା ମଧ୍ୟରେ ରହନ୍ତି। ସେତେବେଳର ଜେଲ୍ ନିୟମ ଅତି କଠୋର। ଏପରି ସ୍ଥଳେ ପ୍ରାୟ ସବୁ ବନ୍ଦୀମାନଙ୍କର ସ୍ୱାସ୍ଥ୍ୟ ହାନି ଘଟେ। ଜେଲରୁ ଖଲାସ ହେବା ବେଳେ ଖଣ୍ଡିଏ ରେଲ ପାଶ୍ ଓ ମାତ୍ର ବାରଅଣା ପଇସା ଖର୍ଚ୍ଚ ପାଇଁ ମିଳେ। ବାଟରେ ବିଭିନ୍ନ ସ୍ଥାନରେ ଗଣ୍ଡାଏ ଖାଇବାକୁ ନମିଳୁଥିଲେ ଉପବାସ ରହିବାକୁ ପଡୁଥାନ୍ତା। ପଥଶ୍ରାନ୍ତ ଓ କ୍ଳାନ୍ତ ହୋଇ ପୁରୀରେ ଏପ୍ରିଲ ୪ ତାରିଖ ସନ୍ଧ୍ୟାରେ ପହଞ୍ଚିଲି। ପୁରୀକୁ ମୋର କର୍ମକେନ୍ଦ୍ର ରୂପେ ବାଛିନେଲି। ସେହି ସମୟରେ ମୋ ସାଙ୍ଗରେ ପୁରୀ ଜିଲ୍ଲା ଗୋପ ଥାନା "ଦଣ୍ଡଲ ବୋଣ୍ଡ" ଗ୍ରାମର ଶ୍ରୀ ନଟବର ମହାନ୍ତି (ନଟଭାଇ) ଥାଆନ୍ତି। ସ୍ୱାଧୀନତା ବା ଜାତୀୟ ଆନ୍ଦୋଳନରେ ବିଭିନ୍ନ ସମୟରେ ବିଭିନ୍ନ ଲୋକଙ୍କ ସହିତ ମିଶିବାର ସୁଯୋଗ ଆସେ। ନଟଭାଇ ଭାରି ସରଳ, ନିଷ୍କପଟ ଓ ନିଃସ୍ୱାର୍ଥପର ବ୍ୟକ୍ତି, ତେଣୁ ତାଙ୍କ ସହିତ ମୋର ଭାରି ବନ୍ଧୁତା ଥିଲା। ସେତେବେଳର ସତ୍ୟାଗ୍ରହ ଦାୟିତ୍ୱରେ ଥିବା ପୁରୀଜିଲ୍ଲାର ନବମ ଡିକ୍ଟେଟର ସ୍ୱର୍ଗୀୟ କଳିଯୁଗ ବାମଦେବ ପରିଚାଳୀ ଥାଆନ୍ତି। ସେ ବଡ଼ ସ୍ନେହୀଲୋକ, ସେ ଆମମାନଙ୍କୁ ଦେଖି ବିଶେଷ ଆନନ୍ଦିତ ହେଲେ ଏବଂ ଖାଦ୍ୟପେୟର ବ୍ୟବସ୍ଥା କରିବା ସାଙ୍ଗେ ସାଙ୍ଗେ ରହିବାର ମଧ୍ୟ ବ୍ୟବସ୍ଥା କରିଦେ କାରଣ ସେତେବେଳେ ସତ୍ୟାଗ୍ରହୀମାନଙ୍କର ମୁକ୍ତଭାବରେ ପ୍ରକାଶ୍ୟ ସ୍ଥାନରେ ରହିବାର ସୁଯୋଗ ନଥାଏ। ତା ପ ଏପ୍ରିଲ ୫ ତାରିଖ। ବହୁ ଦିନରୁ ଅପରିଷ୍କାର ଥିବା ଲୁଗା ଧୁ ସଫାକରି ସନ୍ଧ୍ୟା ବେଳକୁ ମହାପ୍ରସାଦ ଖାଇ ମୁକ୍ତ ଭାବରେ ପରିଚାଳକଙ୍କ ସହିତ ଦେଖା କଲି। ସେତେବେଳକୁ ସେ ଗମ୍ଭୀର ଦେଖା ଯାଉଥିଲେ। ମୋତେ ପଚାରିଲେ ମୁଁ ଜାଣେ, ତୁମେ ବଡ଼ ସାହସୀ ପିଲା। ତୁମକୁ ଗୋଟିଏ ଦିଆଯିବ କରିପାରିବ ? ତାଙ୍କର ହାବଭାବ ଓ କଥା ଜାଣିପାରିଲି, ଯେଉଁ କାମ କଥା କହୁଛନ୍ତି ତାହା ବଡ଼ ଗୁରୁ କାମ ନିଶ୍ଚୟ ହୋଇଥିବ। ମୁଁ କହିଲି ତାହା ଯଦି ସେ ସମ୍ଭବ ହେବ, ତାହା ମୁଁ ନିଶ୍ଚୟ କରିବି। ଏପ୍ରିଲ୍ ୬ ତାରିଖ ତାରିଖ ପର୍ଯ୍ୟନ୍ତ ଜାତୀୟ ସପ୍ତାହ ପାଳନ କରାଯିବାକୁ ହେଉଥାଏ। କାରଣ ୧୯୧୯ ମସିହା ଏପ୍ରିଲ୍ ୬ ତା ପଞ୍ଜାବର ଜାଲିଆନାବାଗ୍‌ଠାରେ ହତ୍ୟାକାଣ୍ଡ ହୋଇ ସେହିଦିନ ପୁରୀରେ ସେଥିପାଇଁ ସଭା ଓ ଶୋଭାଯା ହେବ। ତା ସହିତ ବିଭିନ୍ନ ସରକାରୀ କୋଠା ଗା ବିଶେଷକରି କଟକ ଜିଲ୍ଲା କଲେକ୍ଟରଙ୍କ ପତାକା ପୋ ବ୍ରିଟିଶ୍ ପତାକା ଉଡ଼ିବାଛଲେ ଆମ ଜାତୀୟ ପତାକା ପୁରୀଜିଲ୍ଲା କଲେକ୍ଟରଙ୍କ ଅଫିସ୍ ଉପରେ ଉଡୁଥିବା "ୟୁ ଜ୍ୟାକ୍" ପୋଡ଼ି ଆମ ଜାତୀୟ ପତାକା ଦିଆଯିବ ହୋଇଛି। ଗତବର୍ଷ ଏହିପରି କରିବାକୁ ଉଦ୍ୟମ ହୋଇ ମୁଁ ଏଥି ପାଇଁ ସ୍ୱୀକୃତି ଦେଲାରୁ ଗୋଟିଏ ଜାତୀୟ ଗୋଟିଏ ସ୍ପିରିଟ୍ ଶିଶି ଓ ଗୋଟିଏ ଦିଆସିଲ୍ ମୋତେ ଦିଆଗଲା।

ତା ପରଦିନ ସକାଳେ ସୂର୍ଯ୍ୟୋଦୟ ପୂର୍ବରୁ କଲେକ୍ଟ ପାଖରେ ପହଞ୍ଚି ଦେଖେତ କଲେକ୍ଟରୀଏଟ୍‌ରେ ବନ୍ଧୁ ସିପାହୀମାନେ ପ୍ରହରା ଦେଉଛନ୍ତି। କୋଠାଉପରକୁ ଏକମାତ୍ର କାଠସିଡ଼ି। କିନ୍ତୁ କାଠସିଡ଼ିକୁ ତଳକୁ ଦିଆଯାଇଛି। ତେଣୁ କୌଣସିମତେ ଉପରକୁ ଉଠିବା ନଦେଖି ସୁଯୋଗ ଅପେକ୍ଷାରେ ଦୂରରେ ରହି ଅପେକ୍ଷା

ଏଥି ମଧ୍ୟରେ ଶ୍ରମିକମାନେ ଆସି ଘର ଚୁନ ଦେବା କାମ ଆରମ୍ଭ କରିଥାନ୍ତି । ବାଉଁଶ ଘର ସାହାଯ୍ୟରେ ଚଢ଼ି ଚୁନ ଦେଉଛନ୍ତି । କଚେରୀ ଘଣ୍ଟାରେ ଠନ୍ ଠନ୍ ହୋଇ ତିନିଟା ବାଜିଲା । ସେତେବେଳକୁ କଚେରୀରେ ଗହଳି ଲାଗିଥାଏ । ପ୍ରହରା ଦେଉଥିବା ପୋଲିସମାନେ ଅନ୍ୟ ଦିଗକୁ ମୁଁହ କଲାବେଳେ ମୁଁ ବହୁ କଷ୍ଟରେ ଗୋଟିଏ ବାଉଁଶ ସାହାଯ୍ୟରେ ଚାଳ ଉପରକୁ ଉଠିଲି । କଲେକ୍ଟରଙ୍କ ଘରର ପିଣ୍ଡି ଉପର ପତାକା ସ୍ତମ୍ଭରେ ଉଡୁଥିବା "ୟୁନିଅନ ଜ୍ୟାକ୍" କାଢ଼ି ଆମ ଜାତୀୟ ପତାକା ଉଡ଼ାଇଲି, ଓ ୟୁନିଅନ ଜ୍ୟାକରେ ସିରିଟ୍ ଢ଼ାଳି ନିଆଁ ଲଗାଇଲା ବେଳକୁ ସମୁଦ୍ରର ଉତାଳ ପବନରେ ତାହା ଲିଭିଯାଉଥାଏ । ଏହି ସମୟରେ ମୁଁ ଆନନ୍ଦରେ "ଜାତୀୟ ପତାକା କି ଜୟ" ଭାରତମାତା କି ଜୟ ସ୍ଲୋଗାନ୍ ଦେଲି । ବାହାରେ ଥିବା ଶହ ଶହ ଲୋକ ମଧ୍ୟ ସେହିପରି ସ୍ଲୋଗାନ୍ ଦେଲେ । ତତ୍‌କ୍ଷଣାତ ପୋଲିସର ହୁଇସିଲ ବାଜିଲା । ପୋଲିସ ଇନିସ୍‌ପେକ୍ଟର ଗୌରୀକୃଷ୍ଣ ମହାନ୍ତି ବିହାରୀ ସିପାହୀଙ୍କ ସହିତ ପହଞ୍ଚି ମୋତେ ଧକ୍କାମାରି ପିଣ୍ଡି ଉପରୁ ତଳକୁ ଘୋଷାରି ଆଣି ନିର୍ମମଭାବରେ ପ୍ରହାର କଲେ ଓ ଘୋଷାରି ଘୋଷାରି ତଳକୁ ଓହ୍ଲାଇ ଆଣିଲେ ।

ପୁରୀ ସଦର ଏସ୍.ଡ଼ି.ଓ. ଶ୍ରୀ ମନ୍ମଥ ନାଥ ବୋଷଙ୍କ କୋର୍ଟରେ ପକାଇଦେଲେ । ସେତେବେଳକୁ କୋର୍ଟ ସାମ୍ନାରେ ଲୋକାରଣ୍ୟ ବଢ଼ି ଗଲାଣି । କୋର୍ଟରେ ମୋର ବିଚାର ଆରମ୍ଭ ହେଲା । ମୋର ନାମ ଧାମ ପଚାରିବାରୁ ମୁଁ କହିଲି ନାହିଁ । ସତ୍ୟାଗ୍ରହୀ ବୋଲି କହିଲି ଘର ଭାରତବର୍ଷ କହିବାରୁ ସି.ଆଇ.ଡ଼ି. ରିପୋର୍ଟର ବିନୋଦ ଜେନା ମୋର ନାମ କରଣ କଲେ ନଟବର ଚୋଟରାୟ, ଘର ଖୋର୍ଦ୍ଧା, ସଙ୍ଗେ ସଙ୍ଗେ ବିଚାର ହୋଇ ୩ ମାସ ସଶ୍ରମ କରାଦଣ୍ଡ ହୁକୁମ ହେଲା । ଠିକ୍ ଏହି ସମୟରେ ପୁରୀ ମୁନସିଫ୍ କୋର୍ଟରେ ନଟଭାଇ (ନଟବର ମହାନ୍ତି) ପତାକା ମାରି ଗିରଫ ହେଲେ, ତାଙ୍କୁ ମଧ୍ୟ କାରାଦଣ୍ଡ ଦିଆଗଲା । ଏତିକିବେଳେ ପୁରୀ ଟାଉନ୍‌ରେ ଶୋଭାଯାତ୍ରା ବାହାରକରି ସ୍ୱର୍ଗୀୟ କଳିଯୁଗ ବାମଦେବ ପଡ଼ିଆରୀ ପୂର୍ବତନ ଏମ.ଏଲ.ଏ ବିଶ୍ୱନାଥ ପରିଡ଼ା, ବୈକୁଣ୍ଠ ନାଥ ପଡ଼ିଆରୀ ପୂର୍ବତନ ଏମ.ଏଲ୍.ଏ. ଶ୍ରୀଯୁକ୍ତ ଗତିକୃଷ୍ଣ ସ୍ୱାଇଁ ଗିରଫ ହୋଇ ଆସିଲେ ଓ ତାଙ୍କ ସହ ଅନ୍ୟ କେତେ ଜଣ ଗିରଫ ହୋଇ ଆସିଲେ । କୋର୍ଟରେ ହାଜର କଲାପରେ ସମସ୍ତଙ୍କୁ ହାତକଡ଼ି ଦେଇ ଏକାଠି ଛନ୍ଦି ପୁରୀ ଜେଲକୁ ପଠାଗଲା ।

ଜାତୀୟ ସପ୍ତାହ ଉଦ୍‌ଯାପନ ଦିବସ ଏହି ଏପ୍ରିଲ ୧୩ ତାରିଖ ଦିନ ସକାଳୁ ଜେଲଭିତରେ ୱାର୍ଡ଼ ଖୋଲିବା ସଙ୍ଗେ ସଙ୍ଗେ ପୂର୍ବରୁ ଯୋଜନା ଅନୁଯାୟୀ ଭାଇ ବନ ବିହାରୀ ସଂଗ୍ରହ କରିଥିବା ପତାକାକୁ ବିଲାତି କନିଅର ଡ଼ାଳରେ ପୋତି ଜେଲ୍‌ରେ ଥିବା ବୟୋଜ୍ୟେଷ୍ଠ ବନ୍ଦୀମାନଙ୍କ କଥା ନମାନି ଆମେ ବନବିହାରୀ ପଟନାୟକ, ଆଉ, ଦୁଃଖିଶ୍ୟାମ, ପ୍ରଭୃତି ୭ ଜଣ ପତାକା ଉତ୍ତୋଳନ କଲୁ । "ବନ୍ଦେ ମାତ୍‌ରମ୍" ବୋଲିସାରିବା ପରେ "ଝଣ୍ଡା ଉଚ୍ଚା ରହେ" ପତାକା ଉତ୍ତୋଳନ ସଙ୍ଗୀତ ଗାଇଲା ବେଳକୁ ଜେଲ୍‌ରେ ଆଲାର୍ମ ଘଣ୍ଟି ବାଜିଲା ଓ ବହୁ ସଂଖ୍ୟକ ଲାଠିଧାରୀ ପୋଲିସ୍ ମାଡ଼ିଆସି ନିର୍ମମ ଭାବରେ ପ୍ରହାର କରିବା ସଙ୍ଗେ ସଙ୍ଗେ ପତାକା ଛଡ଼ାଇବାକୁ ଚେଷ୍ଟା କଲେ । ତାପରେ ଆମେଥିବା ୱାର୍ଡରୁ ଆମକୁ ପୃଥକ୍ କରିନେଇ ଅନ୍ୟ ଗୋଟିଏ ଛୋଟ ଘରେ ଭର୍ତ୍ତିକରି ହାତରେ ହାତକଡ଼ି, ଗୋଡ଼ରେ ଦଣ୍ଡା ବେଡ଼ି ଝଣ୍ଡାବେଡ଼ି ପକାଇ ଦେଲେ । ଉପରବେଳାକୁ ଜେଲ୍ ସୁପରିଟେଣ୍ଡେଣ୍ଟ ଆସି ବିଚାର କରି ୭ ପ୍ରହାର ଲେଖାଏଁ ବେତ୍ରାଘାତ କରିବାର ହୁକୁମ ହେଲା, ଆମ୍ଭେମାନେ ଅନଶନକରି ପଡ଼ିରହିଲୁ । ତା ପରଦିନ ସକାଳୁ ଆମ ରୁମ୍ ସାମ୍ନାରେ ନିର୍ଦ୍ଦିଷ୍ଟ ଗୋଟିଏ ସ୍ଥାନରେ କିପରି ବେତ୍ରାଘାତ ଦିଆଯିବ ତାହା ବୁଢ଼ା ଜମାଦାର ରିହିର୍ସରସାଲ କରୁଥାଏ । ମାତ୍ର ଆମ୍ଭେମାନେ ଅନଶନ କରିଥିବାର ଡ଼ାକ୍ତରଙ୍କ ପରାମର୍ଶରେ ଉକ୍ତ କାର୍ଯ୍ୟକ୍ରମ ବନ୍ଦଥାଏ । ଡାକ୍ତର ମଧ୍ୟ ଆମ୍ଭକୁ ଖାଦ୍ୟ ଗ୍ରହଣ କରିବାକୁ ବାରମ୍ବାର ବୁଝାଉଥାନ୍ତି ଓ ଜେଲର ମଧ୍ୟ ଧମକ ଦେଉଥାନ୍ତି । ୪ର୍ଥ ଦିନକୁ ଆମ୍ଭେମାନେ ପ୍ରାୟ ଅବଶ ହୋଇ ପଡ଼ିଥାଉ । ୪ର୍ଥ ଦିନ ସକାଳୁ ଦେଖାଗଲା ଜଣେ ଦୁଇଜଣ ମୂର୍ଚ୍ଛା ହୋଇଗଲେ, ସେଦିନ ଜେଲ୍ କର୍ତ୍ତୃପକ୍ଷଙ୍କ ନିର୍ଦ୍ଦେଶରେ ନେତୃସ୍ଥାନୀୟ ସହବନ୍ଦୀ ଶ୍ରୀଯୁକ୍ତ ଗତିକୃଷ୍ଣ ସ୍ୱାଇଁ, ବିଶ୍ୱନାଥ ପରିଡ଼ା ଓ କଳିଯୁଗ ବାମଦେବ ପଢ଼ିଆରୀ ଆମ ପାଖକୁ ଆସି ଖାଦ୍ୟଗ୍ରହଣ କରିବାକୁ ବୁଝାଇ ଅନଶନ ଭଙ୍ଗ କଲେ, ସେହିଦିନ ସନ୍ଧ୍ୟାକୁ ପାଟ୍‌ନା ଜେଲକୁ ପଠାଇବାକୁ ଜେଲ କର୍ତ୍ତୃପକ୍ଷ ଜବାବ ଦେଲେ । ସନ୍ଧ୍ୟାକୁ ପୁରୀ କଲିକତା ପାସେଞ୍ଜରରେ ପାଟ୍‌ନା ଜେଲକୁ ଅନ୍ୟ ୨୫ ଜଣଙ୍କ ସହ ଯାତ୍ରୀକଲୁ ।

୧୯୩୩ ମସିହା ଜାନୁୟାରୀ ୨୬ ତାରିଖ (ସେତେବେଳେ ଏହି ଦିନକୁ ସ୍ୱାଧୀନତା ଦିବସ କୁହାଯାଉଥିଲା)ରେ ପୁରୀ ଦିଗିବାରିଣୀ ସ୍ତମ୍ଭରେ ପୁରୀ ସଦର ଥାନା ବିଶ୍ୱନାଥ ମହାପାତ୍ର (ଢ଼େଙ୍କାବିଶି) ଓ ମୁଁ ପତାକା ଦେବାକୁ ଯାଇ ଜେଲ୍ ଭୋଗିଥିଲୁ ! ୧୯୪୩ ମସିହାରେ ବ୍ରହ୍ମପୁର ଜେଲରେ ପତାକା ଉତ୍ତୋଳନ କରି ବହୁ ନିର୍ଯ୍ୟାତନା ସହି ଥିଲୁ । ଆଜି ସେହି ଦିବସରେ ବିଭିନ୍ନ ସ୍ଥାନରେ ପତାକା ଉତ୍ତୋଳନ କଲାବେଳେ ସେହି ଅତୀତର ଦିନଗୁଡ଼ିକ ମନେ ପଡ଼ିଯାଉଛି ।

ଲୋକନାଥ ରାୟ,
ସ୍ୱାଧୀନତା ସଂଗ୍ରାମୀ
ସା: ଛେଳିଆ ଗଡ଼, ପୋ: ସିଦ୍ଧଳ
ଥା: ଜଗତସିଂପୁର, ଜି: କଟକ ।

# ମୁଁ ଭାରତ ଅଖଣ୍ଡ ପ୍ରେମର ସତ୍ତା, ବିଶ୍ୱର ହୃଦୟ

ପ୍ରହରାଜ ସତ୍ୟନାରାୟଣ ନନ୍ଦ

ତୋତେ ଦେଇଥିଲେ ଚିକେ ଆଲୋକ ଓ
ଆଲୋକ ବର୍ତ୍ତିକା
ସକାଳ ସଞ୍ଜରେ ଜଳେ ତଉରା ମୂଳରେ
ପ୍ରଥମେ ଆସିଲା ଚାଲି ବୃଷଭ ରୂପରେ
ତା' ଚାରି ପାଦରେ ଚାରି ପୁରୁଷାର୍ଥ,
ତେଣୁ ତୋ ମାଟିରେ ପାଚିଲା ଧାନର ବାସ୍ନା
ବଗିଚାରେ ଫୁଲ ଗନ୍ଧ ମନ୍ତ୍ରଛନ୍ଦ ପରି
ରହି ରହି ଖେଳୁଥାଏ
ଝରଣାରେ ପ୍ରେମର ଲହଡ଼ି,
ଦିଗ୍‌ରୁ ଦିଗ୍ ମହାଯେ ଚେତନା
ଭରିଦିଏ ଜୀବନରେ ଲକ୍ଷ ସମ୍ଭାବନା ।

ଆଲୋକ ରହିଲେ ରହେ ଅନ୍ଧକାର
ହୃଦୟରେ ତେଣୁ ଆଲୁଅର
ବେଦୀ ମୁଁ ଆସିଚି ମାଆ,
ଗଢିବ ପ୍ରତ୍ୟୟ
ପୁଣି ଡାକିଆଣେ ନୂଆ ଜାତି ଓ ମଣିଷ
ପାରିହେବା ବେଳେ ପଥ ଭୁଲାଏ ସାହସ
ହିରଣ୍ମୟ ଦୀପ୍ତିରେ ତୋର ସୀମାରେଖା
ଦିଶେ ଜ୍ୟୋତିର୍ମୟ,
ଯେତେବେଳେ ମନେହୁଏ ମୁଁ ଭାରତ
ଅଖଣ୍ଡ ପ୍ରେମର ସତ୍ତା,
ବିଶ୍ୱର ହୃଦୟ ॥

ସହକାରୀ ସମ୍ପାଦକ,
ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଭୁବନେଶ୍ୱର–୭୫୧୦୦୧ ।

# ଶିଳ୍ପାନୁଷ୍ଠାନରେ ତାଲା ବନ୍ଦର କୁପ୍ରଭାବ

ଶ୍ରୀ ନରେଶଚନ୍ଦ୍ର ମହାପାତ୍ର

ଦେଶର ଅର୍ଥନୈତିକ, ସାମାଜିକ ସାଂସ୍କୃତିକ ବିକାଶରେ ପ୍ରତ୍ୟେକ ଶିଳ୍ପର କିଛିନା କିଛି ଭୂମିକା ରହିଛି, ଏହାକୁ କେବେହେଲେ ଅସ୍ୱୀକାର କରାଯାଇ ନପାରେ । ବୃହତ୍, ମଧ୍ୟମ ଓ କ୍ଷୁଦ୍ର ଶିଳ୍ପର ଆକାର ପ୍ରକାର ଭେଦରେ ଏଭଳି ଶିଳ୍ପ କ୍ଷେତ୍ରରେ ଏଇ ଭୂମିକାର ମାତ୍ରା କମ୍‌ବେଶୀ ହୋଇଥାଏ । ଯେତେବେଳେ କୌଣସି ଶିଳ୍ପ ପ୍ରତିଷ୍ଠାନ ଅଚଳ ହୋଇପଡ଼େ ଏବଂ ତାକୁ ତାଲାବନ୍ଦ ବା ଲକଆଉଟ କରାଯାଏ ସେତେବେଳେ ଏହାର ଭୂମିକା ବିଷୟରେ ବେଶ୍ ଅନୁଭୂତ ହୋଇଥାଏ ।

## ଲକଆଉଟ ବା ତାଲାବନ୍ଦ କ'ଣ ?

ରାଷ୍ଟ୍ରାୟତ୍ତ ଶିଳ୍ପ ହେଉ ବା ଘରୋଇ ଶିଳ୍ପ ହେଉ, ପ୍ରତ୍ୟେକ ଶିଳ୍ପାନୁଷ୍ଠାନରେ ମାଲିକ ବା ମେନେଜମେଣ୍ଟ ଏବଂ ଶ୍ରମିକମାନଙ୍କ ମଧ୍ୟରେ କୌଣସିନା କୌଣସି କାରଣରୁ ବିବାଦ ଲାଗି ରହିଥାଏ । ଶ୍ରମିକମାନେ ତାଙ୍କର ବିଭିନ୍ନ ଦାବୀ ପୂରଣ ପାଇଁ ସଂଘବଦ୍ଧ ଭାବରେ ଇଉନିୟନ କରିଥାନ୍ତି ମାଲିକ, ପରିଚାଳନା କର୍ତ୍ତୃପକ୍ଷ କିମ୍ବା ସମ୍ପୃକ୍ତ ସରକାରୀ ସଂସ୍ଥା ସହିତ ଆଲୋଚନା କରନ୍ତି । ପରସ୍ପର ଆଲୋଚନା ମାଧ୍ୟମରେ ଏହାର ସମାଧାନ ହୋଇ ନପାରିଲେ ସେମାନେ ଧର୍ମଘଟ, କାର୍ଯ୍ୟ ଶୀଥିଳତା ଆଦିର ଆଶ୍ରୟ ନେଇ ଥାନ୍ତି କିମ୍ବା କାର୍ଯ୍ୟ ବନ୍ଦ ଆହ୍ୱାନ ଦିଅନ୍ତି । ଧର୍ମଘଟ ହେଉଛି ଶ୍ରମିକମାନଙ୍କ ହାତର ଏକ ଅମୋଘ ଅସ୍ତ୍ର । ଏହି ଉପାୟ ଅବଲମ୍ବନ କରି ସେମାନେ ସେମାନଙ୍କର ଦାବୀ ପୂରଣ ପାଇଁ ମାଲିକ ବା ମେନେଜମେଣ୍ଟ ଉପରେ ଚାପ ପକାଇଥାନ୍ତି । ଠିକ୍ ସେହିଭଳି ଭାବରେ ଲକ୍‌ଆଉଟ ବା ତାଲାବନ୍ଦ ମାଲିକ ହାତର ଏକ ଅମୋଘ ଅସ୍ତ୍ର । ମାଲିକର ସର୍ତ୍ତାବଳୀକୁ ମାନୀନେବା ପାଇଁ ଶ୍ରମିକମାନଙ୍କ ଉପରେ ଚାପ ପକାଇବା ସକାଶେ ଲକ୍‌ଆଉଟ ଗୋଟିଏ ବଳିଷ୍ଠ ପଦକ୍ଷେପ ।

ତାଲାବନ୍ଦର ଅର୍ଥହେଲା, ଗୋଟିଏ ଶିଳ୍ପାନୁଷ୍ଠାର କୌଣସି ଏକ କାର୍ଯ୍ୟକ୍ଷେତ୍ରକୁ ଅସ୍ଥାୟୀ ଭାବରେ କିଛିଦିନ ପାଇଁ ବନ୍ଦ ରଖିବା ଓ ଶିଳ୍ପାନୁଷ୍ଠାନରେ କାର୍ଯ୍ୟକରୁଥିବା ସମସ୍ତ କିମ୍ବା ନିର୍ଦ୍ଦିଷ୍ଟ ଗୋଷ୍ଠୀର ଶ୍ରମିକଙ୍କୁ କାର୍ଯ୍ୟକରିବାରୁ ବଞ୍ଚିତ କରିବା । ତାଲାବନ୍ଦର ପ୍ରଭାବ ପ୍ରତ୍ୟକ୍ଷ ଭାବରେ କେତେକ ଶ୍ରମିକମାନଙ୍କର ମଜୁରି ଉପରେ ପଡ଼ିଥାଏ । ଫଳରେ ସେମାନେ ମାଲିକ ବା ପରିଚାଳନା କର୍ତ୍ତୃପକ୍ଷଙ୍କ କେତେକ ସର୍ତ୍ତାବଳୀ ମାନିନେଇଥାନ୍ତି । ଧର୍ମଘଟ ମାଧ୍ୟମରେ ଶ୍ରମିକମାନେ ନିଜର ଦାବୀ ହାସଲ କରିବା ପରି ମାଲିକ ବା ପରିଚାଳନା କର୍ତ୍ତୃପକ୍ଷ 'ତାଲାବନ୍ଦ' ମାଧ୍ୟମରେ ନିଜର କେତେକ ପ୍ରସ୍ତାବକୁ ଗୃହୀତ କରାଇ ନେଇ ପାରନ୍ତି । ଏଣୁ ଇଂରେଜୀରୁ କୁହାଯାଏ "Lock out is an antithesis counterpart of a strike".

ଇଂଲିସ୍ ଶିଳ୍ପ ବିବାଦ ଏବଂ ଶ୍ରମିକ ସଙ୍ଗଠନ ଅଧିନିୟମ, ୧୯୨୭ ଅନୁସାରେ 'ତାଲାବନ୍ଦର' ଅର୍ଥହେଲା :– Closing of a place of employment or suspension of work or the refusal by an employer to continue to employ any number of persons employed by him to accept terms or conditions of or affecting employment.

ଯୁକ୍ତରାଷ୍ଟ୍ର (ଆମେରିକାରେ) ମଧ୍ୟ ଏହି ତାଲାବନ୍ଦ ବ୍ୟବସ୍ଥା ରହିଛି । ମାଲିକର କେତେକ ସର୍ତ୍ତକୁ ମାନିନେବା ପାଇଁ ଶିଳ୍ପ ଶ୍ରମିକମାନଙ୍କ ଉପରେ ଚାପ ପକାଇବା ପାଇଁ ଏହି ବ୍ୟବସ୍ଥାର ଆଶ୍ରୟ ନିଆଯାଇଥାଏ । ଆମେରିକାର ନିୟମ ଅନୁସାରେ ତାଲାବନ୍ଦର ଅର୍ଥହେଲା : "Lock out is a cessation of the functioning of work to employees in an effort to get for the employers more desirable terms" ତାଲାବନ୍ଦ ଅର୍ଥ ସମସ୍ତ ବ୍ୟବସାୟିକ କାରବାର ବନ୍ଦ ରଖିବା ନୁହେଁ । ମାଲିକ ତାଙ୍କର ସର୍ତ୍ତ ଗ୍ରହଣ କରାଇନେବା ଉଦ୍ଦେଶ୍ୟରେ କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ଷେତ୍ରରେ କାମ ବନ୍ଦକରି ପାରନ୍ତି । ଚାକିରିରେ ଥିବା ଶ୍ରମିକମାନଙ୍କୁ କାମ କରିବାକୁ ମନାକରି ପାରନ୍ତି । କୌଣସି ଶିଳ୍ପ ସଂସ୍ଥାକୁ ବନ୍ଦ କରିଦେବା କିମ୍ବା ଶ୍ରମିକକୁ ଚାକିରିରୁ ବହିଷ୍କାର କରିବା ତାଲାବନ୍ଦର ଅନ୍ତର୍ଗତ ନୁହେଁ ।

୧୯୭୬ ମସିହା ସଂଶୋଧିତ ଶିଳ୍ପବିବାଦ ଅଧିନିୟମରେ 'ଲକ୍‌ଆଉଟ' ବା ତାଲାବନ୍ଦର ସଂଜ୍ଞା ଦିଆଯାଇ କୁହାଯାଇଛି ଯେ

'Lock out means the closing of a place of employment or the suspension of work, or the refusal by an employer to continue to employ any number of persons employed by him''

ଏହି ସଂଜ୍ଞା ଅନୁସାରେ, କୌଣସି ମାଲିକ କୌଣସି ଏକ କାର୍ଯ୍ୟକ୍ଷେତ୍ରକୁ ବନ୍ଦ ରଖିଲେ କିମ୍ବା କେତେ ସଂଖ୍ୟକ ଶ୍ରମିକଙ୍କୁ କାମ କରିବାକୁ ମନା କରିଦେଲେ ତାଲାବନ୍ଦ କରାଯାଇଛି ବୋଲି ଧରାଯିବ । ଏଥିରୁ ସ୍ପଷ୍ଟ ହେଉଛି ଯେ ତାଲାବନ୍ଦ ଅର୍ଥ ଶିଳ୍ପ କାରଖାନାକୁ ବନ୍ଦ ରଖିବା ବା ସମସ୍ତ କାରବାର ବନ୍ଦ କରିଦେବା ସହିତ କୌଣସି ସମ୍ପର୍କ ନାହିଁ ? ଶ୍ରମିକମାନଙ୍କର କାମ ବନ୍ଦ କରିବା କିମ୍ବା ସେମାନଙ୍କୁ କାମ କରିବା ପାଇଁ ମନାକରିବାକୁ ତାଲାବନ୍ଦ କୁହାଯାଏ । କିନ୍ତୁ କୌଣସି ଜଣେ ଶ୍ରମିକଙ୍କୁ କାମକରିବା ପାଇଁ ମନା କରିଦେବା କିମ୍ବା କୌଣସି ଜଣେ ବା ଏକାଧିକ ଶ୍ରମିକଙ୍କୁ ଚାକିରିରୁ ଅନ୍ତର କରିଦେବା କିମ୍ବା ଶ୍ରମିକମାନେ କାମ କରିବାକୁ ମନା କରିଦେବା ଫଳରେ ଶିଳ୍ପ ଅଚଳ ହୋଇଯିବା ଘଟଣାକୁ 'ତାଲାବନ୍ଦ' କୁହାଯାଏ ନାହିଁ ।

ଧର୍ମଘଟ ଘୋଷଣା କରିବା ପୂର୍ବରୁ ଶ୍ରମିକମାନଙ୍କୁ କେତେକ ନିୟମ ଓ ଶୃଙ୍ଖଳା ମାନିବାକୁ ପଡ଼ିଥାଏ । ନିୟମ ବହିର୍ଭୂତ ଭାବରେ ଧର୍ମଘଟ, ଧାରଣା ବା ଅନଶନ କଲେ ଏହାକୁ ବେଆଇନ୍ ଘୋଷଣା କରାଯାଇଥାଏ ଏବଂ ଧର୍ମଘଟକାରୀଙ୍କ ଉପରେ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇଥାଏ । ତାଲାବନ୍ଦ ପାଇଁ ମଧ୍ୟ କେତେକ ନିର୍ଦ୍ଦିଷ୍ଟ ନିୟମ ଓ ଶୃଙ୍ଖଳା ରହିଛି । ନିୟମାନୁମୋଦିତ ପରିସ୍ଥିତି ସୃଷ୍ଟି ନହେବା ପର୍ଯ୍ୟନ୍ତ କୌଣସି ମାଲିକ ବା ମେନେଜମେଣ୍ଟ ତାଲାବନ୍ଦ ଘୋଷଣା କରି ପାରିବେ ନାହିଁ । ଶିଳ୍ପବିବାଦ ଅଧିନିୟମର ଧାରା ୨୨ରେ ବ୍ୟବସ୍ଥା ରହିଛି ଯେ 'ତାଲାବନ୍ଦ' ଘୋଷଣା କରିବା ପୂର୍ବରୁ ମାଲିକ/ପରିଚାଳନା କର୍ତ୍ତୃପକ୍ଷଙ୍କୁ ନିମ୍ନୋକ୍ତ ନିୟମମାନ ମାନିବାକୁ ପଡ଼ିବ:–

(କ) ତାଲାବନ୍ଦର ୬ ସପ୍ତାହ ପୂର୍ବରୁ କର୍ମଚାରୀ ମାନଙ୍କୁ ନୋଟିସ୍ ଦେବାକୁ ପଡ଼ିବ ।

(ଖ) ଏଭଳି ନୋଟିସ ଜାରିକରିବାର ୧୪ ଦିନ ମଧ୍ୟରେ କୌଣସି ପ୍ରକାର ତାଲାବନ୍ଦ କରାଯାଇ ପାରିବ ନାହିଁ ।

(ଗ) ତାଲାବନ୍ଦ ପାଇଁ ଦିଆଯାଇଥିବା ନୋଟିସକାଳ ସମାପ୍ତ ନହେବା ପର୍ଯ୍ୟନ୍ତ ତାଲାବନ୍ଦ କରାଯାଇ ପାରିବ ନାହିଁ ।

(ଘ) କୌଣସି କର୍ତ୍ତୃପକ୍ଷଙ୍କ ମାଧ୍ୟମରେ ମିଳାମିଶା ପାଇଁ ଆଲୋଚନା ଚାଲୁଥିବାବେଳେ କିମ୍ବା ଏଭଳି ଆଲୋଚନା ସମାପ୍ତିର ସାତଦିନ ମଧ୍ୟରେ ତାଲାବନ୍ଦ କରାଯାଇ ପାରିବ ନାହିଁ ।

ଧର୍ମଘଟ କାରଣରୁ ହେଉ ବା ତାଲାବନ୍ଦ କାରଣରୁ ଶି ଶିଳ୍ପକ୍ଷେତ୍ରରେ କାର୍ଯ୍ୟବନ୍ଦ ଦେଶର ଉତ୍ପାଦନ ଏବଂ ଅର୍ଥନୈ ଅଗ୍ରଗତି ଉପରେ ଗୁରୁତର ଭାବରେ ବାଧା ପକାଇଥା ବାରମ୍ବାର ଏଭଳି ଘଟଣା ପୁନରାବୃତ୍ତି ହେଲେ ଦେଶର ଅର୍ଥନୈ ମାନଦଣ୍ଡ ଭୁଶୁଡ଼ି ପଡ଼ିବାର ସମ୍ଭାବନା ଥାଏ । ଏଣୁ ପର ବୁଝାମଣା ମାଧ୍ୟମରେ ସମସ୍ତ ଶିଳ୍ପ ବିବାଦ ଫଇସଲା କରାଯି ପାଇଁ ସମସ୍ତେ ଚେଷ୍ଟିତ ହେବା ଉଚିତ, ଯାହା ଦ୍ୱାରାକି ଶ୍ରମି ଟ୍ରେଡ୍ ଇଉନିୟନ, ମାଲିକ, ସରକାର ସର୍ବୋପରି ସମାଜ ଦେଶର ଉନ୍ନତି ସାଧିତ ହେବ ।

ବର୍ତ୍ତମାନ ଆଲୋଚ୍ୟ ବିଷୟ ହେଉଛି ଶିଳ୍ପାନୁଷ୍ଠାନରେ ତାଲା ହୁଏ କାହିଁକି ? ଏଥିପାଇଁ କେତୋଟି ବିଶେଷ କାରଣ ରହି ସେଗୁଡ଼ିକ ହେଲା :–

– ଉତ୍ପାଦିତ ମାଲ ବିକ୍ରୟ ନହୋଇ ପଡ଼ିରହିଲେ ଶି କାରବାର ମାନ୍ଦା ହୋଇଯାଏ ଓ ଏହା ଫଳ ମାଲିକ/ପରିଚାଳନା କର୍ତ୍ତୃପକ୍ଷ ତାଲାବନ୍ଦ ଘୋ କରିଥାନ୍ତି ।

– ଶ୍ରମିକ ମାନଙ୍କ ଦ୍ୱାରା କ୍ରମାନ୍ୱୟରେ ଉତ୍ପାଦନ ଧର୍ମଘଟ, ବିକ୍ଷୋଭ ଫଳରେ ମଧ୍ୟ ଶିଳ୍ପରେ ମାନ୍ଦା ଅ ଉପୁଜି ଥାଏ । ଏଭଳି କ୍ଷେତ୍ରରେ ମାଲିକ ତାର ସମ୍ପ ସୁରକ୍ଷା ପାଇଁ ତାଲାବନ୍ଦ ଘୋଷଣା କରିଥାଏ ।

– ଉପଯୁକ୍ତ ପ୍ରାଥମିକ ଯୋଜନାର ଅଭାବ, ତ୍ରୁଟି ପରିଚାଳନା ଇତ୍ୟାଦି ପାଇଁ ମଧ୍ୟ ଶିଳ୍ପରେ ଏଭଳି ହୋଇଥାଏ, ଯାହା ଫଳରେ ତାଲାବନ୍ଦ ଘୋଷଣା କ ପାଇଁ ମାଲିକ ବା ମେନେଜମେଣ୍ଟ ବାଧ୍ୟ ହୋଇଥାଏ ।

– ଶିଳ୍ପ ସଂସ୍ଥାରେ ତାଲାବନ୍ଦ ଘୋଷଣା କରାଗ ସାଧାରଣତଃ ନିମ୍ନୋକ୍ତ ସମସ୍ୟା ଗୁଡ଼ିକ ଉ ଥାଏ :–

ପାରିବାରିକ୍, ଆର୍ଥିକ, ସାମାଜିକ ଓ ରାଜନୈତିକ ।

## ପାରିବାରିକ :

କୌଣସି ଶିଳ୍ପ, କାରଖାନା ବା ବ୍ୟବସାୟ ସଂସ୍ଥାରେ ତାଲା ଘୋଷିତ ହେଲେ ସେଠାରେ କାର୍ଯ୍ୟ କରୁଥିବା ବହୁ ଶ୍ର କର୍ମଚାରୀ କାମ ହରାଇ ବସିବେ । "କାମ ନହେଲେ ଦ ନାହିଁ" ନୀତି ଅନୁସାରେ ମଜୁରିରୁ ବଞ୍ଚିତ ହେବେ । ଦୀର୍ଘ ମଜୁରି ନପାଇଲେ ଶ୍ରମିକର ପରିବାର ଉପରେ ଏହାର କୁପ୍ର ପଡ଼ିବ ।

## ଆର୍ଥିକ :

ରାଷ୍ଟ୍ରାୟତ୍ତ ହେଉ ବା ବ୍ୟକ୍ତିଗତ ମାଲିକାନା ଦ୍ୱାରା ପ୍ରତି ହେଉ ପ୍ରତ୍ୟେକ ଶିଳ୍ପ ବ୍ୟାଙ୍କ ସୂତ୍ରରୁ ଋଣ ଆଣିଥାନ୍ତି । ଏଥି

ବ୍ୟାଙ୍କ ସୁଧ ପାଏ ଏବଂ ଶିଳ୍ପର କାରବାର ଯୋଗୁଁ ଶ୍ରମିକ ଓ କର୍ମଚାରୀମାନେ ଦରମା ପାଆନ୍ତି ଏବଂ ସରକାର ମଧ୍ୟ ଟିକସ ପାଇଥାନ୍ତି । ତାଲାବନ୍ଦ ଫଳରେ ବ୍ୟାଙ୍କ ଋଣ ଅବରୋଧ ହୋଇ ପଡ଼ିବ, କର୍ମଚାରୀ ଦରମା ହରାଇବେ, ମାଲିକ ବା ପରିଚାଳକ ପୁଞ୍ଜି ପାଇବାରୁ ବଞ୍ଚିତ ହେବେ ଏବଂ ସରକାର ମଧ୍ୟ ଟିକସ ହରାଇବେ । ଏଭଳି ଭାବରେ ଏକ ବିରାଟ ଆର୍ଥିକ ପରିସ୍ଥିତି ସୃଷ୍ଟି ହେବ ।

## ସାମାଜିକ :

ପ୍ରତ୍ୟେକ ଶିଳ୍ପକୁ କେନ୍ଦ୍ରକରି କେତେକ ସହାୟକ ଶିଳ୍ପ, ବ୍ୟବସାୟ ବାଣିଜ୍ୟ ପ୍ରତିଷ୍ଠାନ, ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନ, ଦୋକାନ ବଜାର ମଧ୍ୟ ଗଢ଼ି ଉଠିଥାଏ । ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ସମ୍ପୃକ୍ତ ଶିଳ୍ପ ଦ୍ୱାରା ଏହି ଅନୁଷ୍ଠାନଗୁଡ଼ିକ ଉପକୃତ ହୋଇଥାନ୍ତି । ଶ୍ରମିକମାନେ ନିଜର ପରିବାର ଭରଣ ପୋଷଣ କରିବା ସଙ୍ଗେ ସଙ୍ଗେ ନିଜନିଜର ସ୍ଥାୟୀ ବାସ ସ୍ଥାନକୁ ମଧ୍ୟ ମଜୁରିର କିଛି ଅଂଶ ପଠାଇଥାନ୍ତି । ଏତଦ୍ ବ୍ୟତୀତ କିଛି ଅଂଶ ସଞ୍ଚୟ କରିଥାନ୍ତି । ଶିଳ୍ପ ସଚଳ ଥିଲେ ତାର ପରିବେଷ୍ଟନୀ କର୍ମ ମୁଖର ହୋଇ ଉଠିଥାଏ, ମାତ୍ର ଶିଳ୍ପ ଅଚଳ ହେଲେ ସବୁକିଛି ନିର୍ଜୀବ ହୋଇପଡ଼େ ଏବଂ ଏକ ବିରାଟ ସାମାଜିକ ସମସ୍ୟା ସୃଷ୍ଟି ହୋଇଥାଏ ।

## ରାଜନୈତିକ :

କ୍ରମଶଃ ଏହି ଆର୍ଥିକ ଓ ସାମାଜିକ ସମସ୍ୟା ରାଜନୈତିକ ସମସ୍ୟାରେ ପରିଣତ ହୁଏ । ଶିଳ୍ପକୁ ଚାଲୁ କରିବା ନିମନ୍ତେ, ଶ୍ରମିକ ଓ କର୍ମଚାରୀମାନଙ୍କର ଥଇଥାନ ତଥା ଅନ୍ୟାନ୍ୟ ଆନୁଷଙ୍ଗିକ ବ୍ୟବସ୍ଥାକୁ ଠିକଣା ମାର୍ଗକୁ ଆଣିବା ପାଇଁ ସ୍ଥାନୀୟ ସ୍ତରରୁ ଆରମ୍ଭ କରି ରାଜ୍ୟ ବିଧାନ ସଭା ଓ କେନ୍ଦ୍ର ପାର୍ଲାମେଣ୍ଟ ପର୍ଯ୍ୟନ୍ତ ରାଜନୈତିକ ଝଡ଼ ସୃଷ୍ଟି ହୋଇ ଥାଏ । ଅନେକ ସ୍ଥଳରେ ଏଥିପାଇଁ ଦୀର୍ଘଦିନ ଧରି ହାଇକୋର୍ଟ – ସୁପ୍ରିମକୋର୍ଟରେ ଲଢ଼େଇ କରି ଉଭୟ ମାଲିକ ଓ ଶ୍ରମିକଙ୍କୁ ସର୍ବସ୍ୱାନ୍ତ ହେବାକୁ ପଡ଼ିଥାଏ ।

ଶରୀରରେ ରୋଗ ଲକ୍ଷଣ ଦେଖାଯିବା ମାତ୍ରେ ତାର ନିଦାନ ବ୍ୟବସ୍ଥା କରାଯିବା ନିତାନ୍ତ ଆବଶ୍ୟକ। ନହେଲେ, ଏହା କ୍ରମଶଃ ବଢ଼ିବଢ଼ି ଜୀବନପ୍ରତି ବିପଦର କାରଣ ହୋଇଥାଏ । ସେହିଭଳି ଶିଳ୍ପ କ୍ଷେତ୍ରରେ ମଧ୍ୟ ଏହା ପ୍ରଯୁଜ୍ୟ । ତ୍ରୁଟିଶୂନ୍ୟ ପ୍ରାଥମିକ ଯୋଜନା, ଆନୁଷଙ୍ଗୀକ ଯନ୍ତ୍ରପାତି, କଞ୍ଚାମାଲ, ଉପଯୁକ୍ତ ପରିଚାଳନା, ଉତ୍ପାଦିତ ପଦାର୍ଥ ବିକ୍ରୟର ଉପଯୁକ୍ତ ମାର୍କେଟିଂ ବ୍ୟବସ୍ଥା ଓ ସର୍ବୋପରି ପରିଚାଳନାରେ ମାଲିକ ଓ ଶ୍ରମିକଙ୍କର ସହଯୋଗିତା ସମ୍ବନ୍ଧରେ ଯେଉଁ ଶିଳ୍ପ ଯେତେ ସତର୍କତା ଅବଲମ୍ବନ କରିଥାଏ, ସେଠାରେ 'ତାଲାବନ୍ଦ' ହେବାର କୌଣସି ଆଶଙ୍କା ଦେଖାଦେଇ ନଥାଏ ।

ଦେଶର ପ୍ରଗତି ଅଭିମୁଖୀ ଶିଳ୍ପ କାରଖାନାକୁ ଦୃଷ୍ଟିରେ ରଖି ଆମର ବ୍ୟବସ୍ଥାପକ, ଯୋଜନା ବିଶେଷଜ୍ଞ, ମାଲିକ, ପରିଚାଳକ, ଶ୍ରମିକ ତଥା ଶ୍ରମିକ ସଙ୍ଗଠନଗୁଡ଼ିକ ଉପରୋକ୍ତ ବିଷୟକୁ ହୃଦୟଙ୍ଗମ କରି ପରସ୍ପର ମଧ୍ୟରେ ସହଯୋଗ ରକ୍ଷା କରିପାରିଲେ ଧର୍ମଘଟ, ଶ୍ରମିକ ଅଶାନ୍ତି, ତାଲାବନ୍ଦ ଭଳି କ୍ଷତିକାରକ ଘଟଣାକୁ ଏଡ଼ାଇ ଦିଆଯାଇ ପାରନ୍ତା ।

ମୁଖ୍ୟ ପର୍ସନାଲ୍ ପରିଚାଳକ,
ଷ୍ଟିଲ୍ ଅଥରିଟି ଅଫ୍ ଇଣ୍ଡିଆ,
ରାଉରକେଲା ଇସ୍ପାତ୍ କାରଖାନା,
ରାଉରକେଲା ଓ ଫେଲୋ, ଏନ୍ଃ ଆରଃ ପିଃ ଏମ୍ଃ ।



ବରୁଣାଇଠାରେ ଅନୁଷ୍ଠିତ ପାରାଗ୍ଲାଇଡିଙ୍ଗ୍ ପ୍ରଦର୍ଶନ ତାଲିମକୁ ପର୍ଯ୍ୟଟନ ମନ୍ତ୍ରୀ, ଶ୍ରୀ ଅନଙ୍ଗ ଉଦୟ ସିଂହଦେଓ, ସଂସ୍କୃତି ମନ୍ତ୍ରୀ, ଶ୍ରୀ ଶରତ କୁମାର କର, ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ବିଭାଗ ମନ୍ତ୍ରୀ ଶ୍ରୀ ପ୍ରସନ୍ନ ପାଟଶାଣୀ ଦେଖୁଛନ୍ତି ।

# ଆଧୁନିକ ସମାଜରେ ଧର୍ମ ଓ ନୈତିକତାର ସ୍ଥାନ

ଶ୍ରୀମତୀ ସୌଦାମିନୀ ପଟ୍ଟନାୟକ

ଆମ ଭାରତବର୍ଷ ଏକ ଧର୍ମ ନିରପେକ୍ଷ ରାଷ୍ଟ୍ର । ଏଠାରେ ସବୁ ଧର୍ମର ସମାନ ଅଧିକାର ରହିଛି । ଧର୍ମ ଉପରେ କୌଣସି କଟକଣା ନଥିବାର ଯିଏ ଯେ କୌଣସି ଧର୍ମକୁ ଗ୍ରହଣ କରିବା କୌଣସି ଆପତ୍ତି ନାହିଁ ମଧ୍ୟ । ଧର୍ମକୁ ନେଇ ମାନବର ସ୍ଥିତି । ତେଣୁ କେଉଁ ରାମାୟଣ ଓ ମହାଭାରତ ଯୁଗରୁ ଆମେ ଏହାର ରକ୍ଷା ଓ ପାଳନ ଦେଖି ଆସୁଛୁ, ଏହା ଉପରେ ପ୍ରାଧାନ୍ୟ ଦେବାର କାରଣ ହେଲା ଏହା ଏକ ସୁସ୍ଥ ସାମାଜିକ, ନୀତିବାନ ଓ ନିରାପଦ ଜୀବନ ଯାପନ କରିବାରେ ସହାୟକ ହୋଇଥାଏ । ପୁନଶ୍ଚ ଜାତୀୟ ଏକତା ଓ ସଂହତି ରକ୍ଷା କରିବାରେ ଏହାର ଅବଦାନ କିଛି କମ୍ ନୁହେଁ । ଏହି ପରମ୍ପରାକୁ ରକ୍ଷା କରିବା ପାଇଁ ସାର୍ବଜନୀନ ପୂଜା ଉତ୍ସବମାନଙ୍କରେ ଆମେ ସମୂହ ଛୁଟି ପାଇ ଏହାକୁ ମିଳିମିଶି ଉପଭୋଗ କରିଥାଉ । କିନ୍ତୁ ଧୀରେ ଧୀରେ ଧର୍ମ ନାମରେ ମନୁଷ୍ୟ ଅନେକ ଅସାମାଜିକ ଓ ନୀତିହୀନ କାର୍ଯ୍ୟରେ ଲିପ୍ତ ହୋଇ ପଡ଼ିବାରୁ ଆଜି ଏଥିରେ ସଙ୍କଟ ଦେଖା ଦେଇଛି । ମନୁଷ୍ୟ ବିଂଶ ଶତାବ୍ଦୀର ଶେଷ ପର୍ଯ୍ୟାୟରେ ପହଞ୍ଚି ସାରିଲାଣି । ବିଜ୍ଞାନର ଉଦ୍ଭାବନ ତାକୁ ଏକ ନୂଆ ଦୁନିଆରେ ଠିଆ ହେବା ଲାଗି ସୁଯୋଗ ଦେଇଛି ବିଜ୍ଞାନର ଏହି ନୂତନ ଅନୁଦାନରେ ଜଡିତ ହୋଇ ମାନବ ସମାଜ ସାଧାରଣ ମୌଳିକ ଧର୍ମଗୁଡ଼ିକ ପ୍ରତି ଉପେକ୍ଷା ପ୍ରଦର୍ଶନ କରି ସାଧାରଣ ଜୀବନ ଯାପନ ପ୍ରଣାଳୀକୁ ବିପଦଗ୍ରସ୍ତ କରି ଦେଉଛି । ଭାରତ ଏକ ଧର୍ମ ନିରପେକ୍ଷ ରାଷ୍ଟ୍ର ହେଲେହେଁ ଏହାର ସବୁଠାରୁ ବଡ ଦୋଷ ହେଲା ଧର୍ମ ସମ୍ବନ୍ଧରେ ଅଜ୍ଞାନତା । ବେଦ, ଉପନିଷଦ୍, ବାଇବେଲ୍, କୋରାନ୍, ଭଗବଦ୍ ଗୀତା ଓ ଗ୍ରନ୍ଥ ସାହେବ ପ୍ରଭୃତିର ସାରତତ୍ତ୍ୱ ଯଦି ଆଲୋଚନା କରାଯାଏ ତେବେ ଦେଖାଯିବ ଯେ ସବୁ ଧର୍ମର ମୂଳତତ୍ତ୍ୱ ଓ ସାରତତ୍ତ୍ୱ ସମାନ । ଭଗବାନ ଏକ ଓ ମଙ୍ଗଳମୟ । ମାନବକୁ ଭଗବାନଙ୍କର ନିକଟବର୍ତ୍ତୀ କରାଇବା ପାଇଁ ପ୍ରତ୍ୟେକ ଧର୍ମର ସୃଷ୍ଟି ଉଦ୍ଦେଶ୍ୟ । ସବୁ ଧର୍ମର ମୂଳଲକ୍ଷ୍ୟ ଜାତୀୟ ସଂହତି ରକ୍ଷା କରିବା । ନୈତିକତାର ମୂଲ୍ୟବୋଧ ବୃଦ୍ଧି କରିବା । ହିଂସା, ଈର୍ଷା, ଗର୍ବ ଓ ଅହଙ୍କାରକୁ ପରିତ୍ୟାଗ କରି ଦୟାଳୁ, କୋମଳ ଓ ଉଦାର ଭାବ ଧାରଣ କରିବା କିନ୍ତୁ ଭ୍ରାନ୍ତ ମାନବ ଏହି ମୂଳତତ୍ତ୍ୱକୁ ନ ବୁଝି ଧର୍ମ ନାମରେ ନିଜର ନୈତିକତାକୁ ବଳି ଦେଇ ସଦାସର୍ବଦା ନିଜର ସ୍ୱାର୍ଥସିଦ୍ଧି କରିବାରେ ତତ୍ପର । ସମାଜ ଆମକୁ ନେଇ ଗଢ଼ା ଓ ଆମେ ସମସ୍ତେ ସମାଜର ଗୋଟିଏ ଅଙ୍ଗ । ବିନ୍ଦୁଏ ପ... ଆବଶ୍ୟକତା ଯେପରି ସମୁଦ୍ରର ଅସୀମ ଜଳରାଶିରେ ... ସେହିପରି ପ୍ରତ୍ୟେକ ମନୁଷ୍ୟର ଆବଶ୍ୟକତା ସାରାପୃଥି... ସ୍ଥିତିରେ ଅଛି । ତେଣୁ ପ୍ରତ୍ୟେକ ବ୍ୟକ୍ତି ନିଜକୁ ଏକ ଅ... ବ୍ୟକ୍ତିରେ ଚିହ୍ନିତ କରିବାକୁ ହେଲେ ତାହାର ନୈତିକତା ... ପ୍ରଥମେ ଆବଶ୍ୟକ । ଯାହାକୁ ଆମେ sense ... morality କହୁଁ । କୌଣସି ଧର୍ମ ଉପରେ ବିଶ୍ୱାସ ବା ... ରହିଲେ ନୈତିକତାର ମୂଲ୍ୟ ବୃଦ୍ଧି ହୋଇଥାଏ । ସବୁ ଧ... ପ୍ରକୃତି ସର୍ବଦା ନିଃସ୍ୱାର୍ଥପର କର୍ମ । ମାନବର ଚାରି ପୁ... ମଧ୍ୟରେ ଧର୍ମ ହେଉଛି ସର୍ବଶ୍ରେଷ୍ଠ ଓ ଏହା ଅର୍ଥ କାମ ଓ ମୋ... ଆଧାର ସ୍ୱରୂପ । ତେଣୁ ଏହା ଉପଯୁକ୍ତ ଭାବରେ ପାଳନ ... ଭ୍ରାତୃତ୍ୱ, ଐକ୍ୟ, ଶାନ୍ତି ଓ ସଦ୍ଭାବ ପ୍ରତିଷ୍ଠା ହୋଇଥାଏ ।

ହିନ୍ଦୁଧର୍ମର ଅନ୍ୟନାମ ସନାତନ ଧର୍ମ । ଏହି ଧର୍ମ ଅନୁ... ଆମେ ସମସ୍ତେ ସେହି ବିଶ୍ୱପିତାଙ୍କର ସନ୍ତାନ । ତାଙ୍କର ... ପ୍ରକାର ସୃଷ୍ଟି ମଧ୍ୟରୁ ଆମେ ଅନ୍ୟତମ । ସୃଷ୍ଟିକୁ ଭଲ ପା... ଆମର ଧର୍ମ ଏବଂ ସୃଷ୍ଟିସ୍ଥିତ ସମସ୍ତ ଜୀବ ଓ ପ୍ରାଣୀ ଜ... ସମ୍ମାନ ଦେବା ଏକାନ୍ତ କାମ୍ୟ । ସ୍ନେହ, ପ୍ରେମ ଓ ମୈତ୍ରୀ ... ଅନ୍ୟକୁ ଜୟ କରି ହୁଏ ମାତ୍ର ଅସ୍ତ୍ରଶସ୍ତ୍ର ଦ୍ୱାରା ନୁହେଁ । ମ... ଜୀବନର ସବୁ ନୀତି ଓ ନିୟମ ବାନ୍ଧି ବ୍ୟାଖ୍ୟାକରାଯାଇ ... ମାତ୍ର ଗୋଟିଏ ବାକ୍ୟରେ "ନିଜେ ଭଲ ହୁଅ ଓ ସର୍ବଦା ଭଲ କର । (Be good, and do good) ମହାପୁ... ଯୀଶୁଖ୍ରୀଷ୍ଟଙ୍କର ବାଣୀ ଉପରୋକ୍ତ ମହତ୍ ବାଣୀ ଉ... ପର୍ଯ୍ୟବସିତ । ସେ କ୍ରୁଶବିଦ୍ଧ ହୋଇ ମଧ୍ୟ ତାଙ୍କ ଶତ୍ରୁମା... ମଙ୍ଗଳକାମନା କରିଥିଲେ ଏବଂ ସେମାନେ ଅଜ୍ଞାନତା ବ... ଏପରି କୁକର୍ମ କରୁଥିବାରୁ ବିଶ୍ୱପିତାଙ୍କ ନିକଟରେ ସେମାନଙ୍କ... କ୍ଷମା ମାଗିଥିଲେ । ଭଗବାନ ବୁଦ୍ଧ ସୁରମ୍ୟ ରାଜପ୍ରାସାଦ, ଅ... ଧନ, ଅନନ୍ୟା ସୁନ୍ଦରୀ ପତ୍ନୀ ଓ ନିଷ୍ପାପ ଶିଶୁକୁ ଛାଡ଼ି ଅହିଂ... ସତ୍ୟବାଣୀ ପ୍ରଚାର କରିଥିଲେ କେବଳ ମାନବ ସମାଜରେ ... ବଞ୍ଚାଇ ରଖିବା ପାଇଁ ସେହିଭଳି ଶଙ୍କରାଚାର୍ଯ୍ୟ, ଗୁରୁନାନକ... ତୁଳସୀ, ମହାପୁରୁଷ ମହମ୍ମଦ ଶ୍ରୀଚୈତନ୍ୟଦେବ ... ମହାମନିଷୀମାନେ ଯୁଗେ ଯୁଗେ ପ୍ରେମ ଓ ମୈତ୍ରୀର ବାଣୀ

କରି ଯାଇଛନ୍ତି । ରାମକୃଷ୍ଣ ପରମହଂସ ଓ ସ୍ୱାମୀ ବିବେକାନନ୍ଦ ଏହି ଚିରନ୍ତନ ସତ୍ୟକୁ ଆଗେଇ ନେବାରେ ପ୍ରଚେଷ୍ଟା ଆଜୀବନ କରିଥିଲେ । ସବୁ ମହାପୁରୁଷମାନେ କାୟ ମନୋବାକ୍ୟରେ ଶୁଦ୍ଧ ହେବା ପାଇଁ ଉପଦେଶ ମାନବ ସମାଜକୁ ଦେଇଛନ୍ତି । ବିଶ୍ୱ ଦିବ୍ୟ ଜୀବନ ସଂଘର ଅଧ୍ୟକ୍ଷ ସ୍ୱାମୀ ଶ୍ରୀ ଚିଦାନନ୍ଦ ସରସ୍ୱତୀ ଆଧ୍ୟାତ୍ମିକ କ୍ଷେତ୍ରରେ ଉନ୍ନତି କରିବା ପାଇଁ ଓ ନୈତିକତାର ମୂଲ୍ୟ ବୃଦ୍ଧି କରିବା ପାଇଁ ସଭା ସମିତି ମାଧ୍ୟମରେ ନିରନ୍ତର ଚେଷ୍ଟା କରୁଚନ୍ତି ।

ଉପରୋକ୍ତ ବିଷୟକୁ ଆଲୋଚନା କଲେ ସ୍ୱତଃ ମନରେ ପ୍ରଶ୍ନଉଠେ ଯେ ଯେଉଁ ବିଶ୍ୱରେ ଏହିଭଳି ସନ୍ତାନମାନେ ଜନ୍ମ ଗ୍ରହଣ କରି ଶାନ୍ତି, ମୈତ୍ରୀ ଓ ପ୍ରେମର ବାଣୀ ପ୍ରଚାର କରି ଆସିଛନ୍ତି, ସେଠାରେ ଆଜି କାହିଁକି ଏ ଅରାଜକତା ? ସାରା ପୃଥିବୀ ଆଜି କାହିଁକି ସ୍ୱାର୍ଥପରତା, ପ୍ରବଞ୍ଚନା, ହିଂସା ଓ ନୀତିହୀନତା ଭଳି ମାରାତ୍ମକ ରୋଗରେ ପ୍ରପୀଡ଼ିତ ?

ବୁଦ୍ଧଙ୍କର ସେହି ମହାନ୍ ବାଣୀ ଓ ଭଗବତ୍‌ଗୀତାର ନିଷ୍କାମ କର୍ମ କେହି ମାନିବାକୁ ପ୍ରସ୍ତୁତ ନୁହଁନ୍ତି ? ଗୋଟିଏ ହାତରେ କାହାପାଇଁ ଆମେ ପାଞ୍ଚପଇସାର କାମ କଲେ ଦଶପଇସାର ଫଳ ଆର ହାତରେ ନେବା ପାଇଁ ବ୍ୟଗ୍ର ? ରାମାୟଣ ଓ ମହାଭାରତର ମହତ୍ ବାଣୀ କେବଳ ପୁରାଣରେ ହିଁ ରହିଯାଉଛି ? ଏହାର ମୂଲ୍ୟ ନିରୂପଣ କରିବା ପାଇଁ ଆମର ସାମାନ୍ୟତମ ଇଚ୍ଛା ମଧ୍ୟ ନାହିଁ, ଅତି ଛୋଟ ଛୋଟ କାରଣ ନେଇ ନିଜ ନିଜ ମଧ୍ୟରେ ଉତ୍ତେଜନା, ମାନବ ସମାଜ ଆଜି ପରଶ୍ରୀକାତରତା ହିଂସା ଓ ଦ୍ୱେଷର କୀଟାଣୁ ଦ୍ୱାରା ସଂକ୍ରମିତ । କେହି ନିଜର ବ୍ୟକ୍ତିଗତ ସ୍ୱାର୍ଥକୁ ସମୂହ ସ୍ୱାର୍ଥ ଆଗରେ ବଳି ଦେବାପାଇଁ ପ୍ରସ୍ତୁତ ନୁହଁନ୍ତି । ସ୍ୱାର୍ଥପରତା ମାନବସମାଜକୁ ପଙ୍ଗୁ କରି ଦେଇଛି । ସେ କାନ ଥାଇ ଶୁଣି ପାରୁନି ଓ ଆଖି ଥାଇ ମଧ୍ୟ ଦେଖି ପାରୁନି । ହାତ ଗୋଡ଼ ଥାଇ ଆଜି ସେ ଅଥର୍ବ । ଅନ୍ତଃଦୃଷ୍ଟି କେବଳ ନିଜ ମଧ୍ୟରେ ସୀମିତ । ସେ ଯେ ଏକ ବିବେକଶୀଳ (rational animal) ଜୀବ ତାହା ଭୁଲି ଯାଉଛି । ସେ ଯାହା କରୁଛି ତାହା ପ୍ରଥମେ କରଣୀୟ କି ନୁହେଁ ତାହା ଚିନ୍ତା କରିବାର ଆବଶ୍ୟକତା ଉପଲବ୍ଧି କରି ପାରୁନାହିଁ । ନିଜର ବ୍ୟକ୍ତିଗତ ସ୍ୱାର୍ଥ ପ୍ରାପ୍ତିରେ ସାଧାରଣ ବା ସମୂହ ସ୍ୱାର୍ଥ ବାଧାପ୍ରାପ୍ତ ହେବ କି ନାହିଁ ଏବଂ ତାହା ସାମାଜିକ କି ଅସାମାଜିକ ତାହା ବିଶ୍ଳେଷଣ କରି ପାରୁନାହିଁ । ତେଣୁ ସମଗ୍ର ମାନବ ସମାଜରେ ଓ ନୈତିକତା ସଂକଟରେ ପଡ଼ିଛି । ଏଥିରେ ସାମାଜିକ ଅବ୍ୟବସ୍ଥା ଓ ଅଧର୍ମର ରୁଦ୍ରମୂର୍ତ୍ତି ଖେଳେଇ ହୋଇ ପଡ଼ିଛି । ମନୁଷ୍ୟ ଯେକୌଣସି ପାରଦର୍ଶିତା ଲାଭ କରିବା ପାଇଁ ହେଲେ ସେ ସର୍ବପ୍ରଥମେ ନୈତିକତା ମୂଲ୍ୟ ବୋଧ ପ୍ରତି ସଚେତନ ହେବା ଆବଶ୍ୟକ । ସେ ବୈଜ୍ଞାନିକ ହେଉ ଅଥବା ରାଜନୀତିଜ୍ଞ ହେଉ, ଅବା ଜଣେ ସାଧାରଣ କୃଷକ ବା ଦିନ ମଜୁରିଆ ହେଉ । ସେ ସର୍ବ ପ୍ରଥମେ ଚିନ୍ତା କରିବାକୁ ପଡ଼ିବ ଯେ ପ୍ରଥମେ ସେ ଜଣେ ବିଶ୍ୱର ସନ୍ତାନ, ତା ପରେ ସେ ଜଣେ ଭାରତୀୟ ଓ ତପରେ ସେ ଓଡ଼ିଆ, ବଙ୍ଗାଳୀ ବା ପଞ୍ଜାବୀ ହୋଇ ପାରେ । ତେଣୁ ଆମେ ବିଜ୍ଞାନକୁ ଯେତେ ଆଗେଇ ନେଇ ଦେଶକୁ ଉନ୍ନତି କରିବା ପାଇଁ ଚେଷ୍ଟା କଲେ ମଧ୍ୟ ନିଜ ଭିତରର ଚେତନା ଶକ୍ତି ଜାଗ୍ରତ ନ ହେଲା ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ସଫଳତା ପାଇ ପାରିବା ନାହିଁ । ଏହା କେବଳ ଆଧ୍ୟାତ୍ମିକତା ଓ ନୈତିକତାର ବିକାଶରେ ସମ୍ଭବ । ବିଜ୍ଞାନର ଅଗ୍ରଗତି ମାନବର ଏହି ମୌଳିକ ଧର୍ମ ଉପରେ ପର୍ଯ୍ୟବଶିତ । ଏଇ ଧରି ନିଆଯାଉ ଏକ ସାଧାରଣ ସମସ୍ୟା । ଜଙ୍ଗଲ କାଟିବା ଓ ଗଛକାଟିବାକୁ ବନ୍ଦ କରିବାକୁ ସରକାର ଯେତେ ଆଇନ ପ୍ରଣୟନ କଲେ ମଧ୍ୟ ପ୍ରତ୍ୟେକ ମନୁଷ୍ୟ ମାନସିକ ସ୍ତରରେ ଏହାର ଅପକାରିତା ଉପଲବ୍ଧି ନ କଲେ ଏହା ସମ୍ପୂର୍ଣ୍ଣ ରୂପେ ବନ୍ଦ କରାଯାଇ ପାରିବ ନାହିଁ । ସେହିପରି ଆଧୁନିକ ସମାଜରେ ଡ୍ରଗ୍‌ର ବ୍ୟବହାର ବଢ଼ି ଚାଲିଛି । ସରକାର ଏହାକୁ ବନ୍ଦ କରିବା ପାଇଁ ବିଭିନ୍ନ ପ୍ରକାରର ପଦକ୍ଷେପ ନେଲେ ମଧ୍ୟ ସେ କ୍ଷେତ୍ରରେ ଆଶା ଜନକ ସଫଳ ମିଳିପାରୁ ନାହିଁ । ତେଣୁ ଏହାକୁ ବ୍ୟବହାର କରିଥିବା ବ୍ୟକ୍ତି ଏବଂ ଯୋଗାଉଥିବା ବ୍ୟକ୍ତି ଯେତେଦିନ ପର୍ଯ୍ୟନ୍ତ ଏହାର ମାରାତ୍ମକତା ବିଷୟରେ ମାନସିକ ସ୍ତରରେ ସଚେତନ ହୋଇ ନଥିବେ ସେତେଦିନ ପର୍ଯ୍ୟନ୍ତ ଏହାକୁ ବନ୍ଦକରିବା ସମ୍ଭବ ନୁହେଁ । ଏହି ସବୁ ନୈତିକତା ବିହୀନ ଓ ଅସାମାଜିକ କାର୍ଯ୍ୟର ମୂଳୋତ୍ପାଟନ ନିମନ୍ତେ ଦେଶର ପ୍ରତ୍ୟେକ ନାଗରିକଙ୍କ ମଧ୍ୟରେ ଆତ୍ମଚେତନାର (Self consiousness) ଆବଶ୍ୟକ ।

ତେଣୁ ବର୍ତ୍ତମାନର ସର୍ବପ୍ରଥମ ଆବଶ୍ୟକତା ହେଲା ଆଜିର ଆଧୁନିକ ମାନବକୁ ଧର୍ମ ପ୍ରତି ସଚେତନ କରାଇବା । ଅଧିକନ୍ତୁ ଅଧିକତର ଆଧ୍ୟାତ୍ମିକ ଅନୁଷ୍ଠାନମାନ ଖୋଲି ସେଥିରେ ଧର୍ମଶାସ୍ତ୍ର ଓ ନୀତିଶାସ୍ତ୍ର ପ୍ରଭୃତିର ଆଲୋଚନା କରି ଅନ୍ତଃଚେତନାର ବିକାଶ କରାଇବା ଦରକାର । ଶିଶୁ, କିଶୋର ପ୍ରୌଢ଼ ଓ ବୃଦ୍ଧ ସମସ୍ତଙ୍କର ମନରେ ଏହାର ଉପସ୍ଥିତ ଅତ୍ୟନ୍ତ ଆବଶ୍ୟକ । କିନ୍ତୁ ଆଜିକାଲି ଆମର ସମାଜରେ ଏସବୁ ଦିଗ ପ୍ରତି ଶିଶୁ ଓ କିଶୋର ମାନଙ୍କର ଦୃଷ୍ଟି ଆକର୍ଷଣ କରିବା ଭଳି କୌଣସି ପ୍ରଥା ନାହିଁ କହିଲେ ଚଳେ । କାରଣ ଦୁଃଖର ସହିତ କହିବାକୁ ପଡୁଛି ଯେ ସ୍କୁଲ ଓ କଲେଜମାନଙ୍କରେ ଦିଆଯାଉଥିବା ଶିକ୍ଷା ପ୍ରଣାଳୀରେ ଏହାର ଆଦୌ ସ୍ଥାନ ନାହିଁ । ବିଜ୍ଞାନ, ଗଣିତ, ଇତିହାସ, ନଗର ବିଜ୍ଞାନ ଭୂଗୋଳ ଓ ଅର୍ଥନୀତି ପ୍ରଭୃତି ବିଦ୍ୟାଳୟମାନଙ୍କରେ ପାଠ୍ୟକ୍ରମରେ ପ୍ରଚଳିତ ହେଉଛି । ମାତ୍ର ଏସବୁ କାର୍ଯ୍ୟକାରୀ କରିବା ପାଇଁ ଗୋଟିଏ ଛାତ୍ରକୁ ମାନସିକ ସ୍ତରରେ ପ୍ରସ୍ତୁତ ହେବା ପାଇଁ କୌଣସି ଶିକ୍ଷା ନାହିଁ । ସେଥିପାଇଁ ପିଲାମାନେ ଶିକ୍ଷା ସମାପ୍ତ କରି ପ୍ରଥମେ ଚାକିରି ଅନ୍ୱେଷଣରେ ଲାଗିପଡୁଛନ୍ତି ଏବଂ ତାହା ପୂର୍ଣ୍ଣ ହୋଇ ନ ପାରିଲେ ନାନା ପ୍ରକାରର ଅସାମାଜିକ କର୍ମରେ ଲିପ୍ତ ହୋଇ ସମାଜକୁ ଦୂଷିତ କରିବାରେ ବ୍ୟସ୍ତ ରହୁଛନ୍ତି । ତେଣୁ ଛାତ୍ର ସମାଜକୁ ବିଶେଷ ଭାବରେ ଏ ଦିଗରେ ସଚେତନ କରିବା ପାଇଁ ସ୍କୁଲ ଓ କଲେଜ୍‌ରେ ଏହା ଏକ ବାଧ୍ୟତାମୂଳକ ପାଠ୍ୟକ୍ରମ ଭାବରେ ପ୍ରଚଳିତ ହେବା ଆବଶ୍ୟକ । ଏହାଛଡା ସବୁଠାରୁ ବେଶୀ ଜରୁରୀ ହେଲା ସାର୍ବଜନୀନ ପୂଜା ଓ ଉତ୍ସବ ଦିବସମାନଙ୍କରେ ପିତାମାତାମାନେ ଧର୍ମାନୁଷ୍ଠାନ ଯିବା ସମୟରେ ପିଲାମାନଙ୍କୁ ସାଙ୍ଗରେ ନେବା ଉଚିତ । ଏହା ଦ୍ୱାରା ଜୀବନର ପ୍ରଥମ ସୋପାନରେ ସେମାନଙ୍କ ଉପରେ ଧାର୍ମିକ ଓ ନୈତିକତାର ପ୍ରଭାବ କିଛି ପରିମାଣରେ ପଡିବ ଏବଂ ସେମାନେ ଭବିଷ୍ୟତରେ ଏକ ସଂଯତ ଓ ଶୃଙ୍ଖଳିତ ଜୀବନ ଯାପନ କରିବାରେ ସକ୍ଷମ ହେବେ । କାରଣ ଶୈଶବ ଅବସ୍ଥାରେ ପଡ଼ିଥିବା ପ୍ରଭାବ ମାନବ ଜୀବନରେ ଦୀର୍ଘସ୍ଥାୟୀ ହୋଇଥାଏ । ଉପରୋକ୍ତ କେତୋଟି ବିଷୟ ପ୍ରତି ସଚେତନ ହେଲେ ଆଜିର ମାନବ ସମାଜ ତଥା ପୃଥିବୀ ଯେଉଁ ଘୋର ସଙ୍କଟର ସମ୍ମୁଖୀନ ହୋଇଛି ତାହା କିଞ୍ଚିତ ପରିମାଣରେ ସମାଧାନ ହୋଇପାରିବ ବୋଲି ଆଶା । ଏଥିପାଇଁ ପ୍ରତ୍ୟେକ ମନୁଷ୍ୟର ଆନ୍ତରିକ ନିଷ୍ଠା ଓ ସହଯୋଗ ଆବଶ୍ୟକ ।

ଅଧ୍ୟାପିକା, ଡ଼ି:ଏ:ଭି କଲେଜ
ଟିଟିଲାଗଡ଼, ବଲାଙ୍ଗୀର ।

# ସୋନପୁର ପ୍ରଜାମଣ୍ଡଳ ଆନ୍ଦୋଳନ

ଶ୍ରୀ ଅମୀୟ କୁମାର ଶତପ

ଶ୍ରୀ ରାମଚନ୍ଦ୍ର ଶତପଥୀ ସୋନପୁର ରାଜ୍ୟର ପ୍ରଜାମଣ୍ଡଳ ସହ ପ୍ରତ୍ୟକ୍ଷ ଭାବେ ସମ୍ପୃକ୍ତ ରହି ରାଜ ଶାସନ ଓ ଇଂରେଜ ସରକାରଙ୍କ ବିରୁଦ୍ଧରେ ଆନ୍ଦୋଳନ ଚଳାଇ ଆସିଥିଲେ। ସ୍ୱାଧୀନ ଭାରତ ସରକାର ତାଙ୍କୁ ଏ ଉପଲକ୍ଷେ ତାମ୍ରପତ୍ର ପ୍ରଦାନ ପୂର୍ବକ ସମ୍ବର୍ଦ୍ଧିତ କରିଛନ୍ତି। ଗତ ତା ୧୭-୫-୧୯୯୧ ରିଖ ଦିନ ସେ ଇହଲୀଳା ସମ୍ବରଣ କରିଛନ୍ତି। ତାଙ୍କ ରଚିତ "ସୋନପୁର ପ୍ରଜାମଣ୍ଡଳ ଇତିହାସ" ନାମକ ଏକ ବୃହତ୍ ପାଣ୍ଡୁଲିପିରୁ ଏହି ଲେଖାଟି ସଂଗୃହୀତ।

ଭାରତର ସ୍ୱାଧୀନତା ସଂଗ୍ରାମରେ କଂଗ୍ରେସ ପଛକୁ ପ୍ରଜାମଣ୍ଡଳର ନାମ ଶୁଣି ଅନେକ ଆଶ୍ଚର୍ଯ୍ୟ ଓ ସନ୍ଦେହୀ ହେବା ସ୍ୱାଭାବିକ। କଂଗ୍ରେସ ଆନ୍ଦୋଳନ ଦେଶକୁ ସ୍ୱାଧୀନ କରିବା ନେଇ ଉଦ୍ଦିଷ୍ଟ ଥିଲା। କଂଗ୍ରେସ ଭାବିଥିଲା ଭାରତ ସ୍ୱାଧୀନ ହେଲେ ଛାଏଁ ଛାଏଁ ଗଡ଼ଜାତର ପ୍ରଜାମାନେ ମଧ୍ୟ ସ୍ୱାଧୀନ ହୋଇଯିବେ, କିନ୍ତୁ ଇଂରେଜ ସରକାର ରାଜା ମହାରାଜାମାନଙ୍କୁ ଚିରଦିନ ନିମନ୍ତେ ଘଣ୍ଟ ଯୋଡ଼ାଇ ରଖିବା ପାଇଁ ଶାସନକୁ ଦୁଇଭାଗରେ ବିଭକ୍ତ କରି ଜଣେ ସହକାରୀ ଗଭର୍ଣ୍ଣର ଜେନେରାଲ୍‌ଙ୍କ ଅଧୀନରେ ରଖିଲେ। ଫଳରେ କଂଗ୍ରେସ କର୍ତ୍ତୃକ ସ୍ୱାଧୀନତା ସଂଗ୍ରାମର କୌଣସି ପ୍ରଭାବ ଗଡ଼ଜାତର ରାଜା ମହାରାଜାମାନଙ୍କ ଉପରେ ପଡ଼ିଲା ନାହିଁ। ରାଜାମାନେ ନିଜ ଇଚ୍ଛା ଅନୁସାରେ ଏକଛତ୍ର ଅଧିକାରି ଶାସନ ଚଳାଇ ପ୍ରଜାମାନଙ୍କୁ ଲହୁଲୁହାଣ କରୁଥାନ୍ତି। ରାଜସ୍ୱ ବାହାରେ ବେଠି, ଭେଟି, ରସଦ ଆଦି ନାନାବିଧ ପାଉଣା ଆଦାୟ କରି ଓ ନାନା ପ୍ରକାର ଆଇନ ଗଢ଼ି ପ୍ରଜାର ରକ୍ତ ଶୋଷଣ କରୁଥାନ୍ତି। ହାରି ଗୁହାରୀ ଶୁଣିବାକୁ ଆଉ କେହି ନଥିଲେ। ଭାରତବର୍ଷରେ ସାନବଡ଼ ହୋଇ ୨୬୦ଟି ଗଡ଼ଜାତ ଥିଲା।

ଆମ ଓଡ଼ିଶାରେ ୨୬ଟି ଗଡ଼ଜାତ ଥିଲା। ତନ୍ମଧ୍ୟରୁ ସୋନପୁର ଗୋଟିଏ। ଖାସ ଭାରତ ଅର୍ଥାତ୍ ଯେଉଁ ଅଞ୍ଚଳମାନଙ୍କରେ ଖୋଦ ଇଂରେଜ ଶାସନ ଥିଲା ସେଠାକାର ପ୍ରଜାମାନେ ନାଗରିକ ଅଧିକାର ଭୋଗକରି, ରାଜନୈତିକ ଅନୁଷ୍ଠାନମାନ ଗଢ଼ି, ସଭା ସମିତି ଦ୍ୱାରା ଅଭାବ ଅସୁବିଧା ପ୍ରକାଶ କରୁଥିଲେ, କିନ୍ତୁ ଗଡ଼ଜାତ ପ୍ରଜାମାନେ ପଶୁପରି ଠେଙ୍ଗା ପାହାର ସହି ଭାଗ୍ୟକୁ ଆଦରି ରହୁଥିଲେ। କେଉଁଠି କିଏ ଯଦେ ଶାସନଗତ ତ୍ରୁଟି ଓ ତଦ୍‌ଜନିତ ଦୁଃଖ ଦୁର୍ଦ୍ଦଶା ଯେବେ ପ୍ରକାଶ କରୁଥିଲା, ସଙ୍ଗେ ସଙ୍ଗେ ରାଜଦ୍ରୋହ

ଅପରାଧରେ ଜେଲ୍ ଦଣ୍ଡ ଓ ରାଜ୍ୟାନ୍ତର ହେଉଥିଲା, ନତୁବା
ସଂଖ୍ୟାରେ ଅର୍ଥ ଦଣ୍ଡ ବା ସଲାମି ଲାଞ୍ଚ ଦେବାକୁ
ହେଉଥିଲା। ଗଡ଼ଜାତର ପ୍ରଜାମାନେ ଅଶିକ୍ଷିତ ଓ ନି
ଥିଲେ। ତଥାପି ୧୯୩୭-୩୮ ଆଡ଼କୁ ବଡ଼ ବଡ଼ ଗଡ଼ଜା
ଶିକ୍ଷିତ ଲୋକେ କଂଗ୍ରେସର ପୂର୍ଣ୍ଣ ସହାୟତାରେ ନିଖିଳ
ଗଡ଼ଜାତ ପ୍ରଜା ସମ୍ମିଳନୀ (All India States Pe
Conference) ନାମରେ ଏକ ରାଜନୈତିକ ଅ
ଗଢ଼ିଲେ ଓ ପ୍ରତି ଗଡ଼ଜାତରେ ଏହାର ଶାଖା ଅ
"ପ୍ରଜାମଣ୍ଡଳ"ମାନ ଗଢ଼ିବାକୁ ନିବେଦନ କଲେ। ଏତି
ପ୍ରଦେଶମାନଙ୍କରେ "୧୯୩୫ ମସିହା ଭାରତ ଶାସନ ଅ
ଅନୁସାରେ ପ୍ରତିନିଧିତ୍ୱ ଶାସନ ଚାଲୁ ହେଲା। ଓ
କଂଗ୍ରେସ ଶାସନ ଶ୍ରୀ ବିଶ୍ୱନାଥ ଦାଶଙ୍କ ପ୍ରଧାନମନ୍ତ୍ରୀତ୍ୱରେ
ହେଲା।

ପୁଣି କଂଗ୍ରେସ ତରଫରୁ ଶ୍ରୀଯୁକ୍ତ ବଳବନ୍ତ ରାୟ ମେ
ସଭାପତିତ୍ୱରେ ଓଡ଼ିଶା ଗଡ଼ଜାତ ଇନକ୍ୱାରୀ କମିଟି
ହେଲା। ଷାଠିଏରୁ ଅଧିକ ପ୍ରଶ୍ନ ଥାଇ ପ୍ରଶ୍ନର କରା
ଗଡ଼ଜାତର ପ୍ରଜାସାଧାରଣ ଏହାର ଉତ୍ତର ସାକ୍ଷ୍ୟ ରୂପେ
ଆଗରେ ଉପସ୍ଥାପିତ କଲେ। କମିଟି କୌଣସି ଗଡ଼ଜା
ନକରି ଗଡ଼ଜାତମାନଙ୍କୁ ଲାଗି ରହିଥିବା ଖାସ ଭାରତ
ଯାଇ ତଥ୍ୟ ସଂଗ୍ରହ କଲେ। ସୋନପୁର ପାଇଁ ସମ୍ବଲପୁ
ନିର୍ଦ୍ଦିଷ୍ଟ ହୋଇଥିଲା। ଏ କମିଟିର ସଭ୍ୟ
ସର୍ବଶ୍ରୀ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ,
ବୋଷ, ସାରଙ୍ଗଧର ଦାସ ଆଦି ଥିଲେ।

ଉକ୍ତ କମିଟିର ଗସ୍ତ କାର୍ଯ୍ୟକ୍ରମ ଫଳରେ ସୋନପୁର ଶ
କଳାପଥର ଗ୍ରାମରେ ପ୍ରଥମେ ରାଜନୈତିକ

ସୃଷ୍ଟି ହେଲା ଏବଂ ସର୍ବଶ୍ରୀ ଯୁଧିଷ୍ଠିର ମହାକୁର, କଷ୍ଟ ପ୍ରଧାନ, ଗରୁଡ଼ଧ୍ୱଜ ପ୍ରଧାନ, ମେଘୁ କର୍ଣ୍ଣ, ନିତ୍ୟାନନ୍ଦ ବାରିକ, କେଶବ କର୍ମୀ ଓ ରାମଚନ୍ଦ୍ର ଶତପଥୀଙ୍କ ପ୍ରଚେଷ୍ଟାରେ ରାଜାଙ୍କ ଅତ୍ୟାଚାର ସମ୍ବନ୍ଧୀୟ ଦଲିଲ ପତ୍ର ସଂଗୃହୀତ ହେଲା । ସର୍ବତ୍ର ଯୋଗାଯୋଗ ସ୍ଥାପନ ପାଇଁ ସର୍ବଶ୍ରୀ ଲକ୍ଷ୍ମଣ ଶତପଥୀ, ମୋହନ ମିଶ୍ର, କ୍ଷମାନିଧି ପୂଜାହାରୀ ଇତ୍ୟାଦି ଅକ୍ଳାନ୍ତ ପରିଶ୍ରମ କଲେ । ମାତ୍ର ଜଣେ ରାଜଭକ୍ତଙ୍କ ଷଡ଼ଯନ୍ତ୍ର ଫଳରେ ଉପରୋକ୍ତ ସମସ୍ତ ବ୍ୟକ୍ତିମାନଙ୍କ ବିରୁଦ୍ଧରେ ବିଭିନ୍ନ ପ୍ରକାର ଅଭିଯୋଗ ଆଣି ରାଜା ସେମାନଙ୍କୁ ଦଣ୍ଡ ଦେଲେ । ରାମଚନ୍ଦ୍ର ଶତପଥୀ ଓ ଲକ୍ଷ୍ମଣ ଶତପଥୀଙ୍କ ବିରୁଦ୍ଧରେ ୪୬୭ ଦଫାରେ ମିଥ୍ୟା ମୋକଦ୍ଦମା ଓ ପରେ ଗିରଫ, ବଡ଼ ନୁଆଁପାଲିର ଦାମୋଦର ରଥଙ୍କୁ ଘଣ୍ଟା ଚୋରୀ ଓ ଗୁଖାର ଦୁର୍ଗାଚରଣ ସାହୁ, ଗଙ୍ଗାରାମ ଅଗ୍ରୱାଲାଙ୍କୁ ସୁନାମାଳି ଚୋରୀ ପ୍ରଭୃତି ବୃଥା ଅଭିଯୋଗରେ ଜେଲ୍‌ରେ ଭରିଦେଲେ । ଫଳରେ ସୋନପୁର ରାଜ୍ୟ ଭିତରେ ରହି ରାଜ ଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ଏକ ପ୍ରକାର ଅସମ୍ଭବ ହୋଇପଡ଼ିଲା ।

ଏ ସମୟରେ ସମ୍ବଲପୁର ଜିଲ୍ଲା ଗଣ୍ଡତୁରୁମ ନିବାସୀ ଶ୍ରୀ ଦୋଳାମଣି ଦାସ ଗୌନ୍ତିଆ ସୋନପୁର ଗଡ଼ଜାତରେ ପ୍ରଜା ଆନ୍ଦୋଳନକୁ ପ୍ରୋତ୍ସାହନ ଦେବା ସକାଶେ, ସୋନପୁର ରାଜ୍ୟର ସଚେତନ ପ୍ରଜାମାନେ ରାଜ୍ୟ ଛାଡ଼ି ତାଙ୍କ ଗ୍ରାମକୁ ଚାଲିଯାଇ ଆନ୍ଦୋଳନ ଚଳାଇ ରଖିବାକୁ ଆହ୍ୱାନ ଦେଲେ । ଏ ଗ୍ରାମ ଖାସ୍ ଇଂରେଜ ଶାସନରେ ଥିବାରୁ ଏଠାରୁ ସୋନପୁର ରାଜା ଆନ୍ଦୋଳନକାରୀଙ୍କୁ ଗିରଫ କରିବା ସମ୍ଭାବନା ନଥିଲା । ଫଳରେ ଶ୍ରୀ ଦୋଳାମଣି ଦାସ ଗୌନ୍ତିଆଙ୍କ ଆହ୍ୱାନକ୍ରମେ ଶତାଧିକ ପ୍ରଜା ସୋନପୁର ରାଜ୍ୟ ଛାଡ଼ି ଗଣ୍ଡତୁରୁମରେ ଏକ ସାଧାରଣ ସଭାରେ ସମ୍ମିଳିତ ହେଲେ ଏବଂ ତା ୧୨–୧୨–୧୯୩୮ ରିଖରେ ବୈଧାନିକ ଭାବେ ସେଠାରେ "ସୋନପୁର ପ୍ରଜାମଣ୍ଡଳ" ଗଠିତ ହେଲା । ପୂର୍ବରୁ ସୋନପୁର ରାଜ୍ୟରୁ ବିତାଡ଼ିତ ହୋଇଥିବା ଶ୍ରୀ ଗୌରୀଶଙ୍କର ରାୟଗୁରୁ ଏ ସଭାରେ ସଭାପତିତ୍ୱ କରିଥିଲେ । "ପ୍ରଜାମଣ୍ଡଳ"ର କର୍ମକର୍ତ୍ତାମାନେ ସର୍ବସମ୍ମତିକ୍ରମେ ମନୋନୀତ ହେଲେ । ଶ୍ରୀ ଭୀମସେନ ଭୋଇ–ସଭାପତି, ଶ୍ରୀ ଚତୁର୍ଭୁଜ ମିଶ୍ର ଓ ଶ୍ରୀ ରାମଚନ୍ଦ୍ର ଶତପଥୀ–ଯୁଗ୍ମ ସମ୍ପାଦକ, ଶ୍ରୀ ଦୋଳାମଣି ଦାସ ଗୌନ୍ତିଆ–କୋଷାଧ୍ୟକ୍ଷ ଓ ପରିଚାଳକ, ସର୍ବଶ୍ରୀ ଲକ୍ଷ୍ମଣ ଶତପଥୀ, ମୋହନ ମିଶ୍ର, ମକରଧ୍ୱଜ ପୁରୋହିତ, ପିତାମ୍ବର ଭୋଇ ସଭ୍ୟ ରହିଲେ । ଏହି ସଭାରେ ସୋନପୁର ରାଜାଙ୍କ ନିକଟରେ ଅନେକ ଦାବି ଉତ୍ଥାପନ କରାଗଲା, ଯେଉଁଥିରେ ରାଜାଙ୍କ ଅତ୍ୟାଚାର ଓ ଅନ୍ୟାୟ ପାଉଣା ଆଦାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରାଯାଇଥିଲା ।

ସୋନପୁରରେ ପ୍ରଜାମଣ୍ଡଳ ଆନ୍ଦୋଳନ ପୂର୍ବରୁ ମଧ୍ୟ କେତେଜଣ ଦେଶପ୍ରେମୀ ରାଜ ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ନିର୍ଯ୍ୟାତିତ ହୋଇଥିଲେ ଏବଂ ପରିଶେଷରେ ରାଜ୍ୟରୁ ବିତାଡ଼ିତ ହୋଇଥିଲେ । ସେମାନଙ୍କ ମଧ୍ୟରେ ସ୍ୱନାମଧନ୍ୟ ଶ୍ରୀ ଗୌରିଶଙ୍କର ରାୟଗୁରୁ, ଶ୍ରୀ ଜଗନ୍ନାଥ ପଣ୍ଡା, ଶ୍ରୀ ଦେବେନ୍ଦ୍ର ଭଞ୍ଜ, ଶ୍ରୀ ଶ୍ୟାମସୁନ୍ଦର ବରାଇ ଅନ୍ୟତମ । ୧୯୩୮ ମସିହାରେ ସୋନପୁର ରାଜା "Sonepur State Special Criminal Act" ନାମରେ ଏକ ଆଇନ ତିଆରି କରି ଜନ ଚେତନାକୁ ଦବାଇବାକୁ ଚେଷ୍ଟା କରିଥିଲେ । ଏ ଆଇନ କେତେଜଣ ନିର୍ଦ୍ଦିଷ୍ଟ ସାହସୀ ବ୍ୟକ୍ତିମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ଉକ୍ତ ଆଇନକୁ ଆଶ୍ରୟ କରି ସର୍ବଶ୍ରୀ ଲକ୍ଷ୍ମଣ ଶତପଥୀ, ମୋହନ ମିଶ୍ର, ଭୀମସେନ ଭୋଇ, ବାଞ୍ଛାବଟ ପୂଜାହାରୀ ପ୍ରମୁଖ ଜେଲ୍ ଦଣ୍ଡ ଭୋଗିଲେ । ମାତ୍ର ପରବର୍ତ୍ତୀ କାଳରେ ଇଂରେଜ ସରକାର ଏ ଅନ୍ଧ ଆଇନକୁ ସ୍ୱୀକୃତି ନଦେବା ଫଳରେ ସୋନପୁର ରାଜା ଖୁବ୍ ଅଡୁଆ ପରିସ୍ଥିତିରେ ଉପରୋକ୍ତ ଆନ୍ଦୋଳନକାରୀମାନଙ୍କୁ ମୁକ୍ତ କରିବାକୁ ବାଧ୍ୟ ହେଲେ । ଏହା ପୂର୍ବରୁ ୧୯୨୧ରେ ବନ୍ଦଲି ଗ୍ରାମର ଏକ ହରିମେଳାରେ ଜଣେ ସାଧୁ ତିରଙ୍ଗା ପତାକା ଉତ୍ତୋଳନ କରି କଂଗ୍ରେସ ଓ ମହାତ୍ମା ଗାନ୍ଧୀଙ୍କ ଜୟଧ୍ୱନୀ ଦେବା ଘଟଣା ଚାରିଆଡ଼େ ଚହଳ ସୃଷ୍ଟି କଲା ଏବଂ ସୋନପୁରର ତଦାନୀନ୍ତନ ମହାରାଜା ବୀରମିତ୍ର ସିଂହଦେଓ ଏ ମେଳା ସହ ସଂଶ୍ଳିଷ୍ଟ ଶତାଧିକ ଭକ୍ତଙ୍କୁ ଗିରଫ କରି ଅତ୍ୟାଚାର କରିଥିଲେ ଏବଂ ଭବିଷ୍ୟତରେ ରାଜାଙ୍କ ବିନାନୁମତିରେ କୌଣସି ମେଳା/ଜନ ସମାଗମ ଅନୁଷ୍ଠିତ ହେବା ନିଷିଦ୍ଧ ହେଲା । ଏ ସବୁ ଅତ୍ୟାଚାର ଓ ନିଷେଧ ପ୍ରଜାମାନଙ୍କ ମନରେ ଅଶାନ୍ତି ସୃଷ୍ଟି କଲା ଏବଂ ରାଜାଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ ପାଇଁ ସେମାନେ ଆଗେଇ ଆସିଲେ ।

୧୯୩୮ ଡିସେମ୍ବର ୧୨ ତାରିଖ ସାଧାରଣ ସଭାରେ ଗୃହୀତ ପ୍ରସ୍ତାବମତେ ସୋନପୁର ଦରବାରକୁ ପ୍ରଜାମାନଙ୍କ ଦାବିପତ୍ର ତା ୨୨–୩–୧୯୩୯ ରିଖରେ ତିନିଜଣ ଦୂତ ସର୍ବଶ୍ରୀ ଲକ୍ଷ୍ମଣ ଶତପଥୀ, ମୋହନ ମିଶ୍ର ଓ ପିତାମ୍ବର ଭୋଇଙ୍କ ହାତରେ ପଠାଗଲା । ଏହି ଦାବିପତ୍ରରେ ବିଶେଷ ଭାବେ ପ୍ରଜାସାଧାରଣଙ୍କୁ ନାଗରିକ ଅଧିକାର ପ୍ରଦାନ, ଦାୟିତ୍ୱପୂର୍ଣ୍ଣ ସ୍ୱାୟତ୍ତ ଶାସନ ପ୍ରତିଷ୍ଠା, ବେଆଇନ ପାଉଣା ଆଦାୟ ବନ୍ଦ, ପ୍ରଜାମାନଙ୍କୁ ସ୍ୱାଧୀନ ଅନୁଷ୍ଠାନ ଗଠନର ଅଧିକାର ଦେବା, ଅଯଥା କୁଟନୀତି ପ୍ରୟୋଗ ନକରିବା ଇତ୍ୟାଦି ଦର୍ଶାଯାଇଥିଲା । ମାତ୍ର ଗଣ୍ଡତୁରୁମରୁ ବାହାରି ସୋନପୁର ଅଭିମୁଖେ ଯାଉଥିବା ଏ ଦୂତ ତ୍ରୟଙ୍କୁ ବିନିକା ପୋଲିସ୍ ରିଜର୍ଭ ପୋଲିସ୍‌ଙ୍କ ସହାୟତାରେ ୨୪ ତାରିଖରେ ସୋନପୁରର ଟାଉନ ଥାନାରେ ଛାଡ଼ିଲେ । ସୋନପୁର ଟାଉନ ଥାନା ତାଙ୍କ ପାଖରୁ ଦାବିପତ୍ର ଛଡ଼ାଇ ନେଇ ସେମାନେ କ୍ଷମା ମାଗିବାକୁ ପ୍ରବର୍ତ୍ତାଇଲେ । ଏଥିରେ ସେମାନେ ରାଜି ନହେବାରୁ ତାଙ୍କୁ ହାଜତରେ ରଖାଗଲା ।

ଏହା ବିରୁଦ୍ଧରେ ଜନ ଆନ୍ଦୋଳନ ବ୍ୟାପକ ହେଲା ଏବଂ ରାମପୁର, ଯାଲୋଏ, ବିନିକା, ରାଣୀବନ୍ଧ, ପ୍ରତାପପୁର ପ୍ରଭୃତି ସ୍ଥାନରେ ଅନେକ ବ୍ୟକ୍ତି ଗିରଫ ହୋଇ ହାଜତରେ ରହିଲେ । କେବଳ ପ୍ରଜାମଣ୍ଡଳ କର୍ମକର୍ତ୍ତା ଓ କର୍ମୀ ସତ୍ୟାଗ୍ରହୀମାନଙ୍କ ପ୍ରତି ନୁହେଁ ଏମାନଙ୍କ ପରିବାରବର୍ଗଙ୍କ ପ୍ରତି ମଧ୍ୟ କଠୋର ଓ ଦୁଃଖଦାୟକ ଦଣ୍ଡ ପ୍ରଦାନ କରାଗଲା । ଅତ୍ୟାଚାରରେ ଶ୍ରୀ ରାମଚନ୍ଦ୍ର ଶତପଥୀଙ୍କ ପ୍ରଥମ ଶିଶୁ ପୁତ୍ରର ମୃତ୍ୟୁ ଏକ ଉଦାହରଣ ମାତ୍ର ।

ଏ ସବୁ ଅତ୍ୟାଚାରର ଖବର ପାଇ ଜନଗଣ ଉଦ୍‌ବୁଦ୍ଧ ହୋଇପଡ଼ିଲେ ଏବଂ ନାଗରିକତ୍ୱର ପୂର୍ଣ୍ଣ କଟକଣା ଥିବା ସତ୍ତ୍ୱେ

ତା.୩୦-୪-୧୯୩୯ ରିଖରେ ରାଜ୍ୟ ମଧ୍ୟରେ ପ୍ରଥମ ଥର ପାଇଁ ସିନ୍ଧୁରପୁର ଗ୍ରାମରେ ଶ୍ରୀ ବାଳମୁକୁନ୍ଦ ନାଏକଙ୍କ ସଭାପତିତ୍ୱରେ ଏକ ସାଧାରଣ ସଭା ଅନୁଷ୍ଠିତ ହେଲା । ଏହାର ଆବାହକ ଥିଲେ ଶ୍ରୀ ମୋହନ ପଣ୍ଡା ଏବଂ ଶ୍ରୀ ବ୍ରଜସୁନ୍ଦର ପଣ୍ଡା । ଏ ସଭାରେ ବିଭିନ୍ନ ଦାବି ସବୁ ଗୃହୀତ ହେଲା । ଦାବିଗୁଡ଼ିକ ମଧ୍ୟରେ ୨ ଜଣରୁ ଅଧିକ ଲୋକ କଥାବାର୍ତ୍ତା ହୋଇନପାରିବା, ବିନା ଏତାଲାରେ କେହି କୌଣସି ଗ୍ରାମକୁ ଯାଇନପାରିବା, ଘରକୁ କୁଣିଆ ଆସିଲେ ପୋଲିସ୍‌କୁ ଏତାଲା ଦେବା, ଖବର କାଗଜ ପଢ଼ିନପାରିବା ପ୍ରଭୃତି ଅନ୍ଧ ଆଇନର ପ୍ରତ୍ୟାହାର ଅନ୍ୟତମ ଥିଲା ।

ଏହି ସଭା ଚାଲିଥିଲାବେଳେ ଡେପୁଟି ସେକ୍ରେଟାରୀ, ପୋଲିସ୍ ଇନିସ୍‌ପେକ୍ଟର୍, ବିନିକା ଥାନା ସବ୍‌ଇନିସ୍‌ପେକ୍ଟର୍, ୪୦ ଜଣ ପର୍ଯ୍ୟନ୍ତ ରିଜର୍ଭ ପୋଲିସ୍ ଆସି ସଭାସ୍ଥ ଲୋକଙ୍କୁ ଲାଠି, ବନ୍ଧୁକ ଟିହ, ବିଧା, ଚପୁଡ଼ା, ଗୋଇଠା ମାରି ଛିନ୍ନଛତ୍ର କରିଦେଲେ । ମୋହନ ଓ ବ୍ରଜଙ୍କର ଗୋଡହାତ ବାନ୍ଧି ଟ୍ରକ୍‌ରେ ପକାଇ ସୋନପୁର ନେଇଗଲେ । ଲୋକଙ୍କ ପାଇଁ ରନ୍ଧା ହୋଇଥିବା ଖାଦ୍ୟକୁ ନଷ୍ଟଭ୍ରଷ୍ଟ କରିଦେଲେ । ଫଳରେ ରାଜ୍ୟରେ ଅସନ୍ତୋଷର ବାତ୍ୟା ଦେଖାଗଲା ଓ ଆନ୍ଦୋଳନ ଭାବକୁ ଦୃଢ଼ୀଭୂତ କଲା । ଏତିକିବେଳେ ଗିରଫ ହୋଇଥିବା ଲୋକମାନଙ୍କୁ ଛାଡ଼ିଦେଇ କେବଳ ଗୋପନରେ ସର୍ବଶ୍ରୀ ଲକ୍ଷ୍ମଣ ଶତପଥୀ, ମୋହନ ମିଶ୍ର, ଭୀମସେନ ଭୋଇ, ବାଞ୍ଛାବଟ ପୂଜାହାରୀ, ହରି ସାହୁ, ମୋହନ ପଣ୍ଡା, ବ୍ରଜସୁନ୍ଦର ପଣ୍ଡାଙ୍କର ବିଚାର କରି ସେମାନଙ୍କୁ ଜେଲ୍ ଦଣ୍ଡରେ ଦଣ୍ଡିତ କରାଗଲା ।

ଏହାପରେ ପ୍ରଜାମଣ୍ଡଳ ସିଦ୍ଧାନ୍ତ ଗ୍ରହଣ କରିଥିଲା ଯେ ବନ୍ଦୀ କର୍ମୀମାନଙ୍କ ମୁକ୍ତି ଓ ପ୍ରଜାମାନଙ୍କ ଦାବି ଗ୍ରହଣ ନହେବା ଯାଏଁ ଦଳଦଳ କର୍ମୀ ସତ୍ୟାଗ୍ରହ କରୁଥିବେ ଓ ଜେଲ୍ ଦଣ୍ଡ ବରଣ କରୁଥିବେ । ଠିକ୍ ସେତିକିବେଳେ ରାଜପୁର ରାଜ୍ୟର ପ୍ରଜାମଣ୍ଡଳ ସଭାରେ ଇଂରେଜ ସରକାର ଓ ଷ୍ଟେଟ୍ ପୋଲିସ୍‌ଙ୍କ ନିର୍ମମ ଗୁଳିକାଣ୍ଡ ଫଳରେ ୬୫ ଜଣ କର୍ମୀ ମୃତ୍ୟୁବରଣ କଲେ । ଏଭଳି ଘଟଣା ଅନ୍ୟ କେତେକ ରାଜ୍ୟରେ ମଧ୍ୟ ଘଟିଲା, ଫଳରେ ମହାତ୍ମା ଗାନ୍ଧୀଙ୍କ ନିର୍ଦ୍ଦେଶକ୍ରମେ ଗଡ଼ଜାତମାନଙ୍କରେ ଏପରି ଆନ୍ଦୋଳନକୁ ବନ୍ଦ କରିଦିଆଗଲା ।

ଜେଲ୍ ଦଣ୍ଡ ବରଣ କରୁଥିବା କର୍ମୀମାନେ ଏ ଭିତରେ ୧୯୪୦ରେ ଅପିଲ୍ ଦ୍ୱାରା ଜେଲରୁ ମୁକ୍ତ ହେଲେ ଏବଂ ତତ୍‌ପରେ ଆନ୍ଦୋଳନ ଏକ ନୂତନ ମୋଡ଼ ନେଲା । ଆନ୍ଦୋଳନର ପ୍ରତ୍ୟାବର୍ତ୍ତନରେ ସୋନପୁର ମହାରାଜା ବ୍ୟସ୍ତ ହୋଇପଡ଼ିଲେ ଏବଂ ଆନ୍ଦୋଳନକୁ ଯେନତେନ ପ୍ରକାରେଣ ଦବାଇବାକୁ ଚେଷ୍ଟା କଲେ । ମହାରାଜାଙ୍କ ମୁଖ୍ୟ କାରସାଦି ଥିଲା ପ୍ରଜାମଣ୍ଡଳର ପରବର୍ତ୍ତୀ କାଳର ସଭାପତି ଶ୍ରୀ ଚତୁର୍ଭୁଜ ମିଶ୍ର ଓ ସମ୍ପାଦକ ଶ୍ରୀ ରାମଚନ୍ଦ୍ର ଶତପଥୀଙ୍କୁ ଆନ୍ଦୋଳନରେ ସଂଶ୍ଳିଷ୍ଟ ନହେଲେ କୋଡ଼ିଏ ହଜାର ଟଙ୍କା ଲେଖାଏଁ ଏବଂ ଇଚ୍ଛାନୁଯାୟୀ ଯେ କୌଣସି ଗ୍ରାମ ଉକ୍ରୋଚ ଦେବା ଲୋଭ ଦେଖାଇବା । ଯେଉଁଥିରେ ସେ ବିଫଳ ହେଲେ । ସୋନପୁର ସହରରେ କେତେକ ଚେତନଶୀଳ ବ୍ୟକ୍ତି ସର୍ବଶ୍ରୀ ସତ୍ୟାନନ୍ଦ ହୋତା, ଧନବନ୍ତ ମଲିକ ଓ ଦୈତ... ସାହୁ ପ୍ରଜାମଣ୍ଡଳ ଆନ୍ଦୋଳନ ସହ ଗୁପ୍ତ ଭାବେ ସଂଶ୍ଳିଷ୍ଟ ... ଅଭିଯୋଗରେ ଗିରଫ ହେବା ପରେ ସହରରେ ସାଧାର... ଆନ୍ଦୋଳନ ସଜୋର ହୋଇପାରୁନଥିଲା । ପ୍ରଜା... ଆନ୍ଦୋଳନକାରୀ ବା କର୍ମୀ ସୋନପୁର ସହରକୁ କୌ... କାର୍ଯ୍ୟରେ ଗଲେ ସେଠାରେ ପରିଚିତ ଲୋକେ ମଧ୍ୟ ରା... ଭୟରେ ମୁହଁ ବୁଲେଇ ଦେଉଥିଲେ । ବନ୍ଧୁ ବିଶ୍ୱା... ଅସମୟରେ ନିଜ ଘରେ ସ୍ଥାନ ଦେବାକୁ ଭୟ କରୁଥି... ଶେଷରେ ଶ୍ରୀ ରାମଚନ୍ଦ୍ର ଶତପଥୀଙ୍କ ପ୍ରଚେଷ୍ଟାରେ ସୋ... ସହରରେ ଲୁପ୍ତ ପ୍ରାୟ ପ୍ରଜାମଣ୍ଡଳ ଆନ୍ଦୋଳନକୁ ନୂତନ ... ଦିଆଯାଇ ଶ୍ରୀ ଧନବନ୍ତ ମଲିକଙ୍କ ଘରକୁ ଏକ ପ୍ର... ପ୍ରଜାମଣ୍ଡଳର ଶାଖା କାର୍ଯ୍ୟାଳୟ କରାଗଲା । ମଫ... ସୋନପୁର ସହରକୁ ଆସୁଥିବା କର୍ମୀମାନେ ଶ୍ରୀ ମଲିକଙ୍କ ... ଆଶ୍ରୟ ନେଉଥିଲେ ।

କ୍ରମେ ସୋନପୁରର ପ୍ରଜାମଣ୍ଡଳ ଶାଖା ଅଫିସରେ ସ... ଶ୍ରୀ ରାମଚନ୍ଦ୍ର ଶତପଥୀ ରହି କାର୍ଯ୍ୟାରମ୍ଭ କଲେ ଏବଂ ଧୀ... ଧୀରେ ରାଜ୍ୟର କର୍ମୀମାନଙ୍କ ସହିତ ଯୋଗସୂତ୍ର ସ୍ଥା... ହେଲା । ଲୋକଙ୍କ ମନରୁ ସାମାନ୍ୟ ଭୟ ଦୂର ହେଲା ।

ଶ୍ରୀ ଲକ୍ଷ୍ମଣ ଶତପଥୀଙ୍କୁ ଭାରତ ରକ୍ଷା ଆଇନ ... ବାରମ୍ବାର ଗିରଫ ତଥା ସୋନପୁରରେ ପ୍ରଜାମଣ୍ଡଳ କା... ଗତିବିଧି ନିରୀକ୍ଷଣ କରିବା ପାଇଁ ଭାରତ ଗଡ଼ଜାତ ପ୍ରଜା ସମ୍ମି... ଷ୍ଟାଣ୍ଡିଂ କମିଟୀର ସଭ୍ୟ ଓ ଓଡ଼ିଶା ଗଡ଼ଜାତ ପ୍ରଜା ସମ୍ମିଳ... ସଭାପତି ଶ୍ରୀ ସାରଙ୍ଗଧର ଦାସ ସୋନପୁର ପରିଦର୍ଶନ କା... ତା ୮-୧୧-୧୯୪୧ ରିଖ ପାଇଁ ନିରୂପିତ ଥିଲା । ... ସମ୍ବର୍ଦ୍ଧନା ଦେବା ପାଇଁ ସୋନପୁର ସହରରେ କର୍ମୀମା... ମଧ୍ୟରେ ଆଲୋଚନା ଚାଲିଥିବା ସମୟରେ ପୋଲିସ୍ ... ଶ୍ରୀ ଧନବନ୍ତ ମଲିକଙ୍କୁ ଗିରଫ କରିନେଲେ । ସାରଙ୍ଗଧର ... ସମ୍ବଲପୁରରୁ ସମ୍ବଲପୁର ଜିଲ୍ଲା କଂଗ୍ରେସ କମିଟୀର ସ... ଶ୍ରୀ ଦୟାନନ୍ଦ ଶତପଥୀ ତଥା ଶ୍ରୀ ଜଗନ୍ନାଥ ମିଶ୍ରଙ୍କ ସହ ... ଯୋଗେ ଆସି ବ୍ରାହ୍ମଣତୁଣ୍ଡ଼ିମାଳ ପ୍ରଜାମଣ୍ଡଳ ଅଫିସ ପରିଦର୍ଶନ... ୮ ତାରିଖ ଭୋରରୁ ସୋନପୁର ଅଭିମୁଖେ ଯାଗ ... ଅତ୍ୟାଗ୍ରହୀ ସୋନପୁର ରାଜ ଶାସନ ଶ୍ରୀ ସାରଙ୍ଗଧର ... ସୋନପୁର ଆଗମନକୁ ପ୍ରମାଦ ଗଣି ମହାନଦୀ ... ସୋନପୁର ସୀମାରେ ତାଙ୍କୁ ସୋନପୁର ଆସିବାକୁ ବାଧା... କଲେ ଏବଂ ଏଥିପାଇଁ ୧୪୪ ଧାରା ଜାରି କରିଦେଲେ । ... ସାରଙ୍ଗଧର ବାବୁ ବାଧ୍ୟ ହୋଇ ସେଠାରୁ ସମ୍ବ... ଫେରିଗଲେ । ନଦୀ କୂଳରେ ଦୂର ଦୂରାନ୍ତରୁ ଆସି ସମ... ହୋଇଥିବା ଜନତା, ଯେଉଁମାନେ ସାରଙ୍ଗଧରଙ୍କୁ ସମ୍ବର୍ଦ୍ଧନା ଦେ... ଲୁଚି ହୋଇଥିଲେ, ନିରାଶ ହୋଇ ଫେରିଗଲେ ।

ଇତି ମଧ୍ୟରେ ଶ୍ରୀ ଲକ୍ଷ୍ମଣ ଶତପଥୀ ଓ ଶ୍ରୀ ଧନବନ୍ତ ମ... ବିରୁଦ୍ଧରେ ଚାଲିଥିବା ମୋକଦ୍ଦମା ସବୁ ଷଡ଼ଯନ୍ତ୍ର ମୂଳକ ... ଚାଲିଥିବାରୁ ଓକିଲ ଦେଇ ମୋକଦ୍ଦମା ଲଢ଼ିବାକୁ ପ୍ରଜାମଣ୍ଡଳ... କଲା । ଏଥିପାଇଁ ସମ୍ବଲପୁରରେ ଆଇନଜ୍ଞ ଶ୍ରୀ ଅନନ୍ତ ନା... ସାହୁ, ଶ୍ରୀ ପ୍ରଭାକର ସୂପକାର ଓ ଶ୍ରୀ ଈଶ୍ୱରଚନ୍ଦ୍ର

ମୋକଦ୍ଦମା ଚଳାଇଲେ । ଶୁଣାଣି ଶେଷ ହେଲା, ମାତ୍ର ରାୟ ପ୍ରକାଶ କରାଗଲା ନାହିଁ । ବିଚାରକୁ ଜନସାଧାରଣ ଅପେକ୍ଷା କରି ରହିଲେ, ମାତ୍ର ଦିନ ଗଡ଼ି ଗଡ଼ି ଯାଉଥାଏ ।

୧୯୪୨ ଅଗଷ୍ଟ ୯ ତାରିଖ । ସାରା ଦେଶରେ ଭାରତ ଛାଡ଼ ଆନ୍ଦୋଳନର ପ୍ରବଳ ସୁଅ ଛୁଟିଲା । ଏଣୁ ସୋନପୁର ସରକାର ଛାନିଆ ହୋଇ ଭାରତ ରକ୍ଷା ଆଇନ ବଳରେ ପ୍ରଜାମଣ୍ଡଳର କର୍ମୀମାନଙ୍କ ମଧ୍ୟରୁ ସର୍ବଶ୍ରୀ ରାମଚନ୍ଦ୍ର ଶତପଥୀ, ଚତୁର୍ଭୁଜ ମିଶ୍ର, ଦାଶରଥି ପ୍ରସାଦ ରଥ, ଦାମୋଦର ରଥ, ନନ୍ଦଲାଲ ସେଠୀ, ଲକ୍ଷ୍ମଣ ଶତପଥୀ, ମୋହନ ମିଶ୍ର, ସତ୍ୟାନନ୍ଦ ହୋତା, ଧନବନ୍ତ ମଲିକଙ୍କୁ ଅଗଷ୍ଟ ୧୫ ତାରିଖରେ ଗିରଫ କରି ଦୀର୍ଘ ଦୁଇବର୍ଷ ଅଟକ ବନ୍ଦୀ ରୂପେ ରଖି ତା ୧୫-୮-୧୯୪୪ ରିଖରେ ଛାଡ଼ିଲେ, କିନ୍ତୁ ତାଙ୍କ ଉପରେ ଅନେକ କଟକଣା ଜାରି କଲେ । ଅର୍ଜୁନପୁର, ଦିଲ୍‌ବିହାରପୁର ଓ ଶେଷରେ ସୋନପୁର ଜେଲ୍‌ରେ ଦୀର୍ଘ ଦୁଇବର୍ଷ ବନ୍ଦୀ ଜୀବନର କରୁଣ କାହାଣୀ "ସୋନପୁର ପ୍ରଜାମଣ୍ଡଳ ଇତିହାସ" (ଲେଖକ : ରାମଚନ୍ଦ୍ର ଶତପଥୀ) ନାମକ ପାଣ୍ଡୁଲିପିରେ ଲିପିବଦ୍ଧ କରାଯାଇଛି ।

ବନ୍ଦୀ ଜୀବନରୁ ମୁକୁଳିଲା ପରେ ତାଙ୍କ ବିରୁଦ୍ଧରେ ଥିବା କଟକଣାକୁ ସେମାନେ ବିଭିନ୍ନ ଆଳ ଦେଖାଇ ଅବମାନନା କରୁଥିଲେ । କ୍ରମଶଃ ସର୍ବଭାରତୀୟ ସ୍ତରରେ ଆନ୍ଦୋଳନର ତୀବ୍ରତା ଯୋଗୁଁ ତା ୧୩-୬-୧୯୪୬ ରିଖରେ ସୋନପୁର ଦରବାର ପୂର୍ବରୁ ଥିବା କଟକଣା ସବୁକୁ ପ୍ରତ୍ୟାହାର କରିନେଲେ । କିନ୍ତୁ ପ୍ରଜାମଣ୍ଡଳ କାର୍ଯ୍ୟ ନିର୍ଭୟରେ ଚାଲିଥିଲା । ଗଣ୍ଡତ୍ରୁମରୁ କଳାପଥର ଗ୍ରାମକୁ ପୂର୍ବରୁ ପ୍ରଜାମଣ୍ଡଳ ଅଫିସ ଉଠାଇ ଅଣାଗଲା । ତା ୧୯-୪-୧୯୪୬ ରିଖରେ କଳାପଥର ଗ୍ରାମରେ ଏକ ସାଧାରଣ ସଭା ଅନୁଷ୍ଠିତ ହେଲା । ହଜାର ହଜାର ଜନସାଧାରଣ ସଭାରେ ଯୋଗ ଦେବା ସଙ୍ଗେ ସଙ୍ଗେ ସୋନପୁର, ବୌଦ, ରେଢ଼ାଖୋଲ, ଆଠମଲ୍ଲିକ ଓ ବଲାଙ୍ଗୀରରୁ ପୋଲିସ୍ ଅଫିସରମାନେ ଆସି କାର୍ଯ୍ୟବିଧି ନିରୀକ୍ଷଣ କରୁଥାନ୍ତି । ଏହି ଦିନଠାରୁ ପ୍ରଜାମାନଙ୍କ ମନରୁ ରାଜ ଶାସନର ଭୟ କମିଗଲା ଏବଂ ରାଜ୍ୟର ପ୍ରତି ଅଞ୍ଚଳରେ ସଭା ସମିତିମାନ ହେବାକୁ ବସିଲା । ପ୍ରକାଶଯୋଗ୍ୟ ଯେ ପ୍ରଜାମଣ୍ଡଳର ସମସ୍ତ ସକ୍ରିୟ ସଦସ୍ୟ କଂଗ୍ରେସ କର୍ମୀ ଏବଂ ମହାତ୍ମା ଗାନ୍ଧୀଙ୍କ ନିର୍ଦ୍ଦେଶାନୁଯାୟୀ ଆନ୍ଦୋଳନ ଚଳାଉଥିଲେ । ରାଜ୍ୟ ମଧ୍ୟରେ ୫୭ଟି ପ୍ରାଇମେରୀ ପ୍ରଜାମଣ୍ଡଳ ଓ ବିନିକା, ସୁବଲୟା, ତରଭାରେ ଆଞ୍ଚଳିକ ପ୍ରଜାମଣ୍ଡଳ ଗଢ଼ାଗଲା ।

ସୋନପୁର ରାଜ୍ୟର ଶାସକଙ୍କ ଉପରେ ଅତ୍ୟାଚାର ଓ ତଥାକଥିତ ବିନିକା ମ୍ୟୁନିସିପାଲିଟିର ପ୍ରଜାମାନଙ୍କ ଉପରୁ ଅଯଥା ଟିକସ ଆଦାୟରେ ପ୍ରଜାମଣ୍ଡଳ ହସ୍ତକ୍ଷେପ କରିବା ଫଳରେ ଆନ୍ଦୋଳନ ବ୍ୟାପକ ହେଲା । ରାଜ ଶାସନ ଏ ଆନ୍ଦୋଳନକୁ ଦୃଢ଼ ହସ୍ତରେ ଦମନ କରିବାକୁ ବାହାରିଲା । ବିନିକା ଆନ୍ଦୋଳନକୁ ଦବାଇବାକୁ ଶହ ଶହ ଗୁଣ୍ଡା ଓ ପୋଲିସ୍ ନେଇ ଦମନଲୀଳା ଆରମ୍ଭ ହେଲା । ତା ୩୦-୧-୧୯୪୭ ରିଖ ସକାଳୁ ଗିରଫଦାରୀ ଚାଲିଲା । ଖବର ପାଇ ସୋନପୁରର ବିଭିନ୍ନ ଅଞ୍ଚଳରୁ ହଜାର ହଜାର ନରନାରୀ ରୁଣ୍ଡ ହୋଇ ଗିରଫଦାରୀର ବିରୋଧ କଲେ । ପୋଲିସ୍ ଲାଠି ଚାର୍ଯ୍ୟ କଲେ, ବିଧା ଗୋଇଠା ସାଙ୍ଗକୁ ବନ୍ଧୁକ ବୟୋନେଟ୍ ବ୍ୟବହାର ଫଳରେ ଶ୍ରୀ ଗୁରୁବାରୀ ମେହେର ଘଟଣାସ୍ଥଳରେ ମୃତ୍ୟୁବରଣ କଲେ ଏବଂ ୨୦ ଜଣରୁ ଊର୍ଦ୍ଧ୍ୱ ଗୁରୁତର ଭାବେ ଆହତ ହେଲେ । ରୁଷ୍ଟ ହୋଇଥିବା ଜନସାଧାରଣଙ୍କ ଜିଦ୍ ଯୋଗୁଁ ପୋଲିସ୍ ଅନନ୍ୟୋପାୟ ହୋଇ ଗିରଫ ହୋଇଥିବା ସମସ୍ତଙ୍କୁ ଛାଡ଼ିଦେବାକୁ ବାଧ୍ୟ ହୋଇଥିଲେ । ସୋନପୁର ରାଜା ଏ ଘଟଣାରେ ଅପମାନିତ ହୋଇ ମିଥ୍ୟା ପ୍ରଚାର କଲେ ଯେ, ବିନିକାରେ ପ୍ରଜାମଣ୍ଡଳ ହିଂସାତ୍ମକ ପନ୍ଥା ଗ୍ରହଣ କରିଛି । ଏହାକୁ ଆଳ କରି ପୂର୍ବରୁ ଗଠିତ ହୋଇଥିବା "Eastern State Agency Force"ରୁ ତିନିଶହ ଫୋର୍ସ ମଗାଇ ବିନିକାରେ ମୁତୟନ କଲେ । ପ୍ରଜାମଣ୍ଡଳ କାର୍ଯ୍ୟକଳାପକୁ ଅକାମୀ କରିବାକୁ ରାଜା ଗଠନ କରିଥିବା ପ୍ରଜା ସଙ୍ଘ ଓ ସରକାରୀ କର୍ମଚାରୀମାନେ ପ୍ରଚାର କଲେ ଯେ ଫୋର୍ସ ଆସି ବିନିକା ଓ ବିନିକା ଅଞ୍ଚଳର ଲୋକଙ୍କୁ ମାରିଦେବେ । ଫଳରେ ଅନେକ ଲୋକ ଭୟଭୀତ ହୋଇ ରାଜ୍ୟ ଛାଡ଼ି ଚାଲିଯିବାକୁ ମନସ୍ଥ କଲେ । ମାତ୍ର ପ୍ରଜାମଣ୍ଡଳ ସମ୍ପାଦକ ମହାରାଜାଙ୍କୁ ଓ ଫୋର୍ସ କମାଣ୍ଡରଙ୍କୁ ସାକ୍ଷାତ କରି ପ୍ରଜାମାନଙ୍କ ଆତଙ୍କକୁ ପ୍ରତିଫଳିତ କରାଇଲେ ଏବଂ ବିନିକା ଅଞ୍ଚଳର ଲୋକଙ୍କୁ ବୁଝାଇଲେ । ବିନିକାରୁ ତଥାକଥିତ ମ୍ୟୁନିସିପାଲିଟି ଉଠିଯିବା ସହ ପ୍ରଜାମଣ୍ଡଳ ଆନ୍ଦୋଳନ ଦ୍ୱିଗୁଣିତ ହେଲା । ବିନିକା ଛଡ଼ା ମେଣ୍ଡା, ବଲେନ୍‌ପାଲି, ସାଗରପାଲି, ତରଭା, ଗୋବିନ୍ଦପୁର, ଭବାନୀପାଲି, ଦିଗ୍‌ସିରା, କୁମାରକେଲି ପ୍ରଭୃତି ଗ୍ରାମରେ ରାଜ ସରକାରଙ୍କ ଉତ୍କଟ ଦମନଲୀଳାର କାହାଣୀ ଏ କ୍ଷୁଦ୍ର ପ୍ରବନ୍ଧରେ ଦେବା ସମ୍ଭବ ନୁହେଁ ।

ପ୍ରଜାମଣ୍ଡଳର କ୍ରମବର୍ଦ୍ଧିଷ୍ଣୁ କାର୍ଯ୍ୟ ଓ ଲୋକପ୍ରିୟତାରେ ରାଜା ବ୍ୟସ୍ତ ହୋଇପଡ଼ି ରାଜଭକ୍ତ ତଥା ଧନୀକ ସମ୍ପ୍ରଦାୟଙ୍କୁ ନେଇ ପ୍ରଜାସଙ୍ଘ ଗଠନ କଲେ ଏବଂ ପ୍ରଜାମଣ୍ଡଳ ବିରୁଦ୍ଧରେ ସଭା ସମିତି କଲେ, ମାତ୍ର ପ୍ରଜା ଏଥିରେ ଭୁଲିବା ପରିସ୍ଥିତିରେ ନଥିଲେ ।

ତା ୧୧-୧୧-୧୯୪୭ ରିଖରେ ସାରଙ୍ଗଧର ଦାସଙ୍କ ନେତୃତ୍ୱରେ କଳାପଥର ଗ୍ରାମରେ ପ୍ରଜାମଣ୍ଡଳର କର୍ମୀ ସମ୍ମିଳନୀ ଓ ଏକ ବିରାଟ ସାଧାରଣ ସଭା ହେଲା । ତତ୍‌ପରେ ୧୨ ତାରିଖରେ ସୋନପୁର ଓ ୧୪ ତାରିଖରେ ତରଭାରେ ସାଧାରଣ ସଭାମାନ ଅନୁଷ୍ଠିତ ହେଲା । ମାତ୍ର ପ୍ରଜାସଙ୍ଘ, ଏ ସବୁ ସଭାକୁ ଭଣ୍ଡୁର କରିବାକୁ ତା' ନିକଟରେ ସଭାମାନ କରୁଥିଲେ ଓ କଳା ପତାକା ତଥା ପ୍ଲାକାର୍ଡ଼ମାନ ଦେଖାଉଥିଲେ । ସାରଙ୍ଗଧର ଫେରିଯାଅ, ମହମ୍ମଦ ଘୋରୀ ସାରଙ୍ଗଧର ବୋଲି ସ୍ଲୋଗାନ୍ ଦେଉଥିଲେ । ଏ ସବୁ ସଭାଗୁଡ଼ିକରେ ବୌଦ, ଆଠମଲ୍ଲିକ, ରେଢ଼ାଖୋଲର ପ୍ରଜା ପ୍ରତିନିଧିଗଣ ଓ ସମ୍ବଲପୁର କଂଗ୍ରେସର ସର୍ବଶ୍ରୀ ଶିବ ନାରାୟଣ ପାଢ଼ୀ, ଘନଶ୍ୟାମ ପାଣିଗ୍ରାହୀ, ମିତ୍ରଭାନୁ ପାଣିଗ୍ରାହୀ, ଶ୍ରୀମତୀ ପ୍ରଭାବତୀ ଦେବୀ ଯୋଗଦାନ କରିଥିଲେ । ନାନା ବାଧାବିଘ୍ନ ସତ୍ତ୍ୱେ ସଭାଗୁଡ଼ିକ ସଫଳ ହେଉଥିଲା ।

ତା ୧୨-୦୨-୧୯୩୮ ରିଖରୁ ପ୍ରଜାମଣ୍ଡଳ ଗଠିତ ହୋଇଥିଲେ ହେଁ ନାନା ପ୍ରକାର ପ୍ରତିବନ୍ଧକ ଓ ବାଧାବିଘ୍ନ ହେତୁ ସୋନପୁର ପ୍ରଜାଙ୍କ ଏକତ୍ର ମିଳନ ତଥା ପ୍ରଜାମଣ୍ଡଳର ଅଧିବେଶନ ହୋଇପାରିନଥିଲା । ଏଣୁ ସାରା ରାଜ୍ୟର ପ୍ରଜାଙ୍କ ସହଯୋଗ ଓ ଉପସ୍ଥିତିରେ ୧୯୪୬ ଅପ୍ରେଲ୍ ୨, ୩ ଓ ୪ ତାରିଖରେ ବର୍ଲାପଥର ନିକଟ ପଲ୍ଲୀଗ୍ରାମ ବଗଛେଗାର "ନେହେରୁ ନଗର"ଠାରେ ଅନୁଷ୍ଠିତ ହେଲା । ପ୍ରତ୍ୟହ ହଜାର ହଜାର ନରନାରୀଙ୍କ ସମାଗମ ହେଉଥିଲା । ଓଡ଼ିଶାର ୨୬ ଗଡ଼ଜାତର ପ୍ରଜା ପ୍ରତିନିଧି, ଉତ୍କଳ ପ୍ରଦେଶ କଂଗ୍ରେସର ସଭାନେତ୍ରୀ ଶ୍ରୀମତୀ ମାଳତୀ ଚୌଧୁରୀ, ସମ୍ପାଦକ ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ, ସଦସ୍ୟ ଶ୍ରୀ ବିଶ୍ୱନାଥ ପଣ୍ଡିତ, ଶ୍ରୀ ରବି ରାୟ, ସମ୍ବଲପୁର ଜିଲ୍ଲା କଂଗ୍ରେସ ପକ୍ଷରୁ ଶ୍ରୀ ମିତ୍ରଭାନୁ ପାଣିଗ୍ରାହୀ, ଶ୍ରୀମତୀ ପ୍ରଭାବତୀ ଦେବୀ, ଶ୍ରୀମତୀ ପାର୍ବତୀ ଗିରି ଆଦିଙ୍କ ଏକତ୍ର ମିଳନ ନେହେରୁନଗରକୁ ଶୋଭାବନ୍ତ ଓ ହର୍ଷମୁଖର କରୁଥାଏ । ଏ ଅଧିବେଶନର ସଭାପତି ଥିଲେ ଶ୍ରୀ ସାରଙ୍ଗଧର ଦାସ । ପ୍ରଜାମଣ୍ଡଳର ନୀତି, ଲକ୍ଷ୍ୟ, କାର୍ଯ୍ୟକ୍ରମ ଓ ଦାବିଗୁଡ଼ିକୁ ରାଜ୍ୟବାସୀ ପୂର୍ଣ୍ଣ ପ୍ରାଣରେ ସମର୍ଥନ କରିଥିଲେ ।

ପ୍ରଜାସଙ୍ଘର କାର୍ଯ୍ୟକଳାପରୁ ରାଜା ସୁଫଳ ପାଇବା ପରିବର୍ତ୍ତେ ହିନସ୍ତା ହେଲେ । ସ୍ୱାପରେ ପ୍ରଜାମଣ୍ଡଳ ଆନ୍ଦୋଳନକୁ ଆଗେଇ ନଦେବାକୁ "ଆରଣ୍ୟକ ବ୍ରାହ୍ମଣ ସମାଜ", "ସୋନପୁର ଷ୍ଟେଟ୍ କଂଗ୍ରେସ", "ପଲ୍ଲୀ ସଙ୍ଗଠନ ପ୍ରଜା ପରିଷଦ" ଗଠନ କରାଇଥିଲେ । ଗଡ଼ଜାତଗୁଡ଼ିକର ମିଶ୍ରଣ ଓଡ଼ିଶା ସହ କରିବାକୁ ପ୍ରସ୍ତାବ ପ୍ରଜାମଣ୍ଡଳ କରୁଥିବା ବେଳେ ରାଜ ସରକାର ଦ୍ୱାରା ଗଠିତ ସଙ୍ଘ ସବୁ ହିରାଖଣ୍ଡ କୋଶଳ ସାମ୍ରାଜ୍ୟ ଗଠନ କରିବାକୁ ଦାବି କରୁଥାଏ ଏବଂ ପରେ ଦରବାରଗୁଡ଼ିକର ରାଷ୍ଟ୍ର ସଙ୍ଘ ଗଠନକୁ ମଧ୍ୟ ସ୍ୱାଗତ ଜଣାଉଥାଏ । ରାଜ କର୍ତ୍ତୃକ କୌଣସି ସଙ୍ଗଠନ ସଠିକ୍ ଲକ୍ଷ୍ୟ ହାସଲ କରିନପାରିବାରୁ ଖୋଦ୍ ମହାରାଜା ସୋନପୁର ରାଜ୍ୟର ସମସ୍ତ ସରକାରୀ ଅଫିସରମାନଙ୍କୁ ନେଇ ସୋନ
ଏକ ସଭା ଡକାଇଲେ ଏବଂ ଏ ସଭାରେ ପ୍ରଜାମଣ୍ଡଳ ବି
ଏବଂ ରାଷ୍ଟ୍ର ସଙ୍ଘ ସପକ୍ଷରେ ପ୍ରସ୍ତାବ ଓ ଭାଷଣ ଦିଆଇଲେ
ଏଥିରେ ପ୍ରଜାମାନେ ଅଂଶ ଗ୍ରହଣ କଲେ ନାହିଁ ।
ସୋନପୁର, ବୀରମହାରାଜପୁର, ବିନିକାର ଏସ୍: ଡି: ଓ
ଏବଂ ଅନ୍ୟାନ୍ୟ ଅଫିସର ଓ କର୍ମଚାରୀମାନେ
ଦେଇଥିଲେ ।

ଭାରତ ୧୯୪୭ ଅଗଷ୍ଟ ୧୫ ତାରିଖରେ ସ୍ୱାଧୀନ ହେ
ପରେ ରାଷ୍ଟ୍ରସଙ୍ଘ ଓ ଏଜେନ୍‌ସି ଫୋର୍ସକୁ ସ୍ୱାଧୀନ ଭାରତ ପ
ବେଆଇନ ଘୋଷଣା କଲେ । ମାତ୍ର ଗଡ଼ଜାତ
ପ୍ରଜାମାନେ ନାଗରିକତ୍ୱ ଓ ସାର୍ବଭୌମତ୍ୱ ପାଇଲେ ନାହିଁ
ରାଜାମାନେ ମନମୁଖୀ ଶାସନ ଚଳାଇବାକୁ ପଛାଇଲେ ।
ପ୍ରଜାମାନେ ମଧ୍ୟ ପ୍ରଜାମଣ୍ଡଳ ମାଧ୍ୟମରେ ଏ ସ୍ୱା
ଘମାଘୋଟ ଆନ୍ଦୋଳନ ଚଳାଇଲେ । ଫଳରେ ଭାରତ ସ
ସ୍ଥିରକଲେ ଯେ ଗଡ଼ଜାତଗୁଡ଼ିକୁ ପଡ଼ୋଶୀ ପ୍ରଦେଶମାନ
ମିଶାଇ ଦିଆଯିବ । ଏଣୁ ପ୍ରଥମେ ଓଡ଼ିଶା ଓ ମଧ୍ୟପ୍ର
ଛତିଶଗଡ଼ ଗଡ଼ଜାତ ରାଜାମାନେ ଗଢ଼ିଥିବା ରାଷ୍ଟ୍ରସଙ୍ଘ ଓ
ସମ୍ମିଳିତ ସୈନ୍ୟ ସମାବେଶକୁ ବେଆଇନ କରିଦେଲେ ।
ସରକାରଙ୍କ ଉପ ପ୍ରଧାନମନ୍ତ୍ରୀ ତଥା ଗଡ଼ଜାତ ବିଭାଗ
ଲୌହ ମାନବ ସର୍ଦ୍ଦାର ବଲ୍ଲଭଭାଇ ପଟେଲ୍ କଟକ ଆସି ଡି
୧୪ ଓ ୧୫ ତାରିଖରେ ରାଜାମାନଙ୍କ ସହିତ ଚୁକ୍ତି କଲେ ।
ଜାନୁଆରୀ ୧ ତାରିଖରୁ ସମସ୍ତ ଗଡ଼ଜାତ ସହ ସୋନପୁ
ଓଡ଼ିଶା ପ୍ରଦେଶ ଶାସନାନ୍ତର୍ଗତ ହେଲା । ପ୍ରଜାମାନେ
ଶାସନ ଅତ୍ୟାଚାରରୁ ମୁକ୍ତି ପାଇଲେ ।

ସ୍କୁଲ ସମୂହର ଉପ ନିରୀକ୍ଷକ,
ବୀରମହାରାଜପୁର,
ଜିଲ୍ଲା : ବଲାଙ୍ଗୀର-୭୬୭୦୧୮ ।



ବାରବାଟୀ ଷ୍ଟାଡିୟମଠାରେ ପୁସ୍ତକ ମେଳା ଉଦ୍‌ଘାଟନ ଅବସରରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ପୁସ୍ତକ ପ୍ରଦର୍ଶନୀ ବୁଲି ଦେଖୁଛନ୍ତି ।



OGP—MP—PTS (I&PR) 37—10,000—18-1-199




ମୁଖ୍ୟମନ୍ତ୍ରୀ, ଶ୍ରୀ ବିଜୁ ପଟ୍ଟନାୟକ ଭୁବନେଶ୍ୱର କଳିଙ୍ଗ ଷ୍ଟାଡିୟମ୍‌ଠାରେ ଆୟୋଜିତ ଜାତୀୟ ସଂହତି ଶିବିର ଉଦ୍‌ଘାଟନ କରୁଛନ୍ତି ।





ବରମୁଣ୍ଡାଠାରେ ବି: ଡି: ଏ: ଦ୍ୱାରା ନିର୍ମିତ ନୂତନ ବସ୍‌ଷ୍ଟାଣ୍ଡ ଉଦ୍‌ଘାଟନ ଅବସରରେ ମୁଖ୍ୟମନ୍ତ୍ରୀ, ଶ୍ରୀ ବିଜୁ ପଟ୍ଟନାୟକ ଅଭିଭାଷଣ ଦେଉଛନ୍ତି । ଏଥିରେ ମନ୍ତ୍ରୀ, ଶ୍ରୀ ନଳିନୀକାନ୍ତ ମହାନ୍ତି, ଶ୍ରୀ ଭାଗବତ